ବୈକୁଣ୍ଠ ବୈକୁଣ୍ଠପୁର ଶୂନ୍ୟ ପୂର୍ଣ୍ଣମୂର୍ତ୍ତି ।
ବିଶେଷିତ ଶ୍ରୁତିଅଛି ଶ୍ରୁତି ଯେ ସ୍ମୃତି ଯେ ।୪୫।
ବାଞ୍ଛି ସେ ଅନୁସରଣ ଶରଣ ବିହିତ ।
ବୈବସ୍ୱତକୁଳେ ସ୍ୱତଃ ଆମ୍ଭେ ପୁରୋହିତ ଯେ ।୪୬।
ବେଳୁଁ ବେଳ ନୃପତି ଚିତ୍ତକୁ ଦ୍ରବାଇଲ
ବିଧୂଶିଳ ପରି ବିଧି ସେ ବାଣୀ ହୋଇଲ ଯେ ।୪୭।
ବିତ୍ତ ବିତରଣ ସେହ୍ନିବନୁଁ ସେ କାମରେ ।
ବିଡ଼ି ସର୍ଜିତ ପୂଜିତ ଅପୂଜ୍ୟ ଅମରେ ଯେ ।୪୮।

---

୪୫ଶ ପଦ—ବୈକୁଣ୍ଠ ( ନାରାୟଣ ) ବୈକୁଣ୍ଠ ପୁରକୁ ଶୂନ୍ୟକରି ପୂର୍ଣ୍ଣ ମୂର୍ତ୍ତି ହେବେ (ପୂର୍ଣ୍ଣାବତାର ହେବେ) ଏମନ୍ତ ୧ଶ୍ରୁତି (ବେଦ) ୨ସ୍ମୃତି (ଆଗମ) ଶାସ୍ତ୍ରରେ ବିଶେଷିତ (ବିଶେଷରେ) ଶ୍ରୁତି (ଶୁଣା)ଅଛି ୪୫।

୪୬ଶ ପଦ—ଯେଉଁ ନାରାୟଣ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହେବେ ତାହାଙ୍କ ଅନୁସରଣ କରିବା ଏମନ୍ତ ବାଞ୍ଛା କରି ( ଏ ସ୍ଥାନରେ ) ତାଙ୍କ ଶରଣ ( ଗୃହ ) ବିହିତ (ବିଧାନ କରିଅଛୁ), ଏଣୁ ୧ ବୈବସ୍ୱତ ମନୁଙ୍କ କୁଳେ (ବଂଶରେ) ଆମ୍ଭେ ୨ ପୁରୋହିତ ହୋଇଅଛୁ, ସେ ପ୍ରଭୁଙ୍କୁ ଦେଖିବା ଏ ସ୍ୱତଃ ( ସ୍ୱତଃସିଦ୍ଧ) ।୪୬।

୪୭ଶ ପଦ—ବିଧୁ ( ଚନ୍ଦ୍ର ) ଯେପରି ଚନ୍ଦ୍ରକାନ୍ତ ମଣିକୁ ଦ୍ରବାଏ ସେରୂପ ମୁନି କହିବା ବାଣୀ ବିଧୁ ହେଲା, ନୃପତି ଚିତ୍ତ ବିଧୂଶିଳ (ଚନ୍ଦ୍ରକାନ୍ତ ମଣିକୁ ) ବେଳକୁ ବେଳ ଦ୍ରବାଇଲା ।୪୭।

୪୮ଶ ପଦ—ସେହ୍ନିବନୁ ସେ କାମରେ (ନାରାୟଣ ପୁତ୍ରହେବା କାମନାରେ) ବିତ୍ତ ( ଦ୍ରବ୍ୟ ) ବିତରଣ କଲେ, ବିଡ଼ମାନ ସର୍ଜନା କଲେ, ଅପୂଜ୍ୟ ଅମରେ (ଅପୂଜିତ ଦେବତା ) ପୂଜା କଲେ ।୪୮।

---

୧ ଶ୍ରୁତିଃସ୍ତ୍ରୀ ବେଦ ଆମ୍ନାୟା ଇତ୍ୟମରଃ ।
୧—ବୈବସ୍ୱତୋ ମନୁର୍ନାମ ମାନନୀୟୋ ମନୀଷିଣାଂ ଅସୀଦିତ ରଘୁବଂଶେ
୨—ପୁରୋଧାସ୍ତୁ ପୁରୋହିତ ଇତ୍ୟମରଃ ।

ବୈଷ୍ଣବେ ଭୂସୁରେ ସୁରେ କରାଇ ମୋଦକୁ ।
ବ୍ରହ୍ମଚର୍ଯ୍ୟ କର୍ମ କୃତ କର୍ମଶୁଭଦକୁ ଯେ ।୪୯।
ବିବେଚନାମାନ ମାନସରେ କରେ ନିତ୍ୟ ।
ବ୍ୟବସ୍ଥିତେ ରଜନୀରେ ସୁସ୍ୱପ୍ନ ଜନିତ ଯେ ।୫୦।
ବିତପନ ତପନବଂଶୀ ସେ ନୃପୋତ୍ତମ ।
ବିନାଶଇ ଦିନକୁ ଦିନ ସେ ଚିନ୍ତାତମ ଯେ ।୫୧।
ବୋଲେ ଉପଇନ୍ଦ୍ର ଭଞ୍ଜ ଭଞ୍ଜନେ ଦୁରିତ ।
ବାନପଦରେ ଆଦରେ ରଚିତ ଚରିତ ଯେ ।୫୨।

---

୪୯ଶ ପଦ—ବୈଷ୍ଣବେ ( ବିଷ୍ଣୁଭକ୍ତ ) ଭୂସୁରେ (ବ୍ରାହ୍ମଣ ) ୧ସୁରେ (ଦେବତା ) ଏମାନଙ୍କ ୨ମୋଦକୁ ( ହର୍ଷକୁ ) ପଜାଦି କର୍ମଦ୍ୱାରା କରାଇଲେ ।,ପୁନରପି କର୍ମ ଶୁଭଦ ହେବା ନିମିତ୍ତ ୩ ବ୍ରହ୍ମଚର୍ଯ୍ୟ କର୍ମ କୃତ ( କଲେ ) ଅଥବା ବ୍ରହ୍ମଗୃହଙ୍କ ଦ୍ୱାରା କର୍ମ କରାଇଲେ ।୪୯।

୫୦ଶ ପଦ—ନିତ୍ୟ ମାନସରେ(ମନରେ) ବିବେଚନା (ବିଚାର)କଲେ ରଜନୀରେ ବ୍ୟବସ୍ଥିତ ହୋଇ ସୁସ୍ୱପ୍ନ (ଶୁଭସ୍ୱପ୍ନ) ଜନିତ (ଜାତହୁଏ) ।୫୦

୫୧ଶ ପଦ—ବିତପନ ( ସୂର୍ଯ୍ୟତୁଲ୍ୟ ) ତପନବଂଶ ( ସୂର୍ଯ୍ୟବଂଶୀ ) ନୃପୋତ୍ତମ (ଦଶରଥ) ଦିନକୁଦିନ ଚିନ୍ତାତମ ( ଚିନ୍ତାରୂପ ଅନ୍ଧକାରକୁ ) ବିନାଶ କଲେ । ୫୧।

୫୨ଶ ପଦ—ବାନ ପଦରେ ଆଦରେ ରଚି ଦୁରିତଭଞ୍ଜନେ (ପାତକନାଶ ଅର୍ଥରେ) ଏ ଚରିତକୁ ଉପେନ୍ଦ୍ର ଭଞ୍ଜନାମା କବି ବୋଇଲେ । ଏ ଗ୍ରନ୍ଥ ୧ମମଙ୍କ ବୃତ୍ତ୍ୟନୁପ୍ରାସ ।୫୨।

---

୧-ଏଠାରେ ଅଧିକରଣରେ କର୍ମ ହେଲା । ଅଧୀତବ୍ୟାକରଣେ ଗ୍ରନ୍ଥାଃ - ଇତିବତ୍ସଙ୍କ କାରକାଖ୍ୟାଂ

୨—ପ୍ରମୋଦାମୋଦସଂମଦାଃ ଇତ୍ୟମରଃ ।

୩—ଧର୍ମଚର୍ଯ୍ୟମଧଃ ସ୍ୱପ୍ନଃ ପଞ୍ଚଦଲ୍ୟାଂ ଚ ଭୋଜନଂ ।
ଚତୁର୍ଥକାଲେ ଭୁଞ୍ଜୀତ ପର୍ଣ୍ଣପୂର୍ଣ୍ଣବ୍ରତୀ ଭବେତ୍ ।ଇତି ପଦ୍ମପୁରାଣେ

# ତୃତୀୟ ଛାନ୍ଦ ।

(ଆଦ୍ୟଯମକ ।) ରାଗ ରାମକେରୀ ।

ବିବୁଧ ହେ ଶୁଣ ରଞ୍ଜନରସ ମନକୁ ଦେଇ ।
ବିଦୂଷଣ ରାଜସମାନେ ଧର୍ମସ୍ୱରୂପୀ ସେହି ।୧।
ବିଦିତ ମିଥିଳାନୃପତି ନାମ ଜନକ ତାର ।
ବିଦିଗଦିଗରେ ହୋଇଛି ଖ୍ୟାତ ଯଶ ଯାହାର ।୨।
ବିଦଗଧ ଯଜ୍ଞକର୍ମରେ ସର୍ବଦାରେ ସେ ଅତି ।
ବିଦଗଧଚିତ୍ତ ପ୍ରାପତ ନୋହିବାରେ ଦୁହିତା ।୩।
ବୃଷାଳ ମଖଶାଳ କୁତେ ଦିନେ ଚଷୁଁ ଅବନୀ ।
ବୃଷ ଶାପୁଁ ମୁକ୍ତପାଇଣ ମେନା ନାମେ କାମିନୀ ।୩।

---

ତତ୍ତ୍ୱପ୍ରଦ

୧ମ ପଦ—ବିବୁଧ (୧ହେ ପଣ୍ଡିତମାନେ) ରଞ୍ଜନ(ଅନୁରାଗଜନକ) ଯେଉଁ ରସ ଏହାକୁ ମନ ଦେଇ ଶୁଣ । ରାଜସମାନେ (କ୍ଷତ୍ରସମୂହରେ) ବିଦୂଷଣ (ଦୂଷଣ ରହିତ) ଧର୍ମସ୍ୱରୂପୀ ସେ (ଜନକ) ହି (ନିଶ୍ଚୟ) ।୧।

୨ୟ ପଦ—ମିଥିଳା (ଦେଶ) ନୃପତି (ରାଜା) ଜନକ ତାଙ୍କର ନାମ, ବିଦିଗ (ଚତୁଷ୍କୋଣ) ଦିଗ (ଚତୁର୍ଦ୍ଦିଗ) ତହିଁରେ ଯାହାର ୨ଯଶ (କୀର୍ତ୍ତି) ଖ୍ୟାତ ହୋଇଅଛି ।୨।

୩ୟ ପଦ—ସେ (ଜନକ) ସର୍ବଦା ଯଜ୍ଞକର୍ମରେ ଅତିବିଦଗ୍ଧ (ଚତୁର) ତାହାଙ୍କର ଦୁହିତା ପ୍ରାପ୍ତ ନୋହିବାରେ ଚିତ୍ତ ବିଦଗଧ (ଦହ୍ୟମାନ, ସନ୍ତପ୍ତ) ହେଉଥାଏ ।୩।

୪ ୫ ପଦ - ବୃଷାଳ (ବଡ଼) ମଖଶାଳା (ଯଜ୍ଞଶାଳା) କୁତେ (କରିବା ନିମିତ୍ତ) ଦିନେ ଅବନୀ (ଭୂମି) ଚଷୁଁ (ଚଷନ୍ତେ) ବୃଷାଶାପୁ

---

୧—ହେ ଶବ୍ଦେନ ବିନାପି ସ୍ୟାତ୍ କୃତବର୍ଣ୍ଣେଽପି ହେ ଭବେତ୍ । ଇତି ବୋଧଚନ୍ଦ୍ରିକାୟାଂ ଏଠାରେ ହେ ଶବ୍ଦ ଅନ୍ତରେ ପ୍ରୟୋଗ ହେଲା ।
୧—ଯଶଃ କୀର୍ତ୍ତି ସମଜ୍ଞା ଚ ଇତ୍ୟମର ।

ବସି ବିମାନରେ ଗଗନେ କରୁଅଛି ଗମନ ।
ବଶୀଭୂତ ଶୋଭାପ୍ରଭାରେ ହୁଏର ଜନନୟନ ।୫।
ବୁଧଜନକ କି କଳଙ୍କହୀନେ ପୂର୍ଣ୍ଣ ସମ୍ପଦେ ।
ବୁଧଜନ କହେ ପରତେ ନଭେ ଦିବସେ ଉଦେ ।୬।
ବୃଷଭସ୍ୟା ସେ ମଣ୍ଡିବାରେ ଚିତ୍ତ ଅତି ହୃଦ୍‌ବେଗ ।
ବୃଷଭାଷା ଏହି ତରଙ୍ଗେ ଡାକିବାରେ ଅପାଙ୍ଗ ।୭।
ବିହରିତ ପୁନଃପୁନ କି ସୁଧା ପିଇ ଚକୋର ।
ବିହରିତରେ ସେ ବହିଛି ନିଶ୍ଚେ ଏ ମନୋହର ।୮।

(ଇନ୍ଦ୍ରଙ୍କ ସ୍ୱର୍ଗପୁରୁ ) ମୁକ୍ତହୋଇ ମେନା ନାମେ ଭାମିନୀ (ମେନକା ଅପସରା) ବିମାନରେ ବସି ଗଗନରେ ଗମନ କରୁଅଛି । ସେ ଶୋଭା ପ୍ରଭାରେ ଜନ-ମାନଙ୍କ ନୟନକୁ ବଶୀଭୂତ କରି ହରୁଅଛି । ୪-୫ ।

୬ଷ୍ଠ ପଦ—କଳଙ୍କ ବିହୀନ ହୋଇ ୧ ବୁଧଜନ କ (ଚନ୍ଦ୍ର) ପୂର୍ଣ୍ଣ ସମ୍ପଦେ (ପଞ୍ଚଦଶକଳାରେ) ଦିବସରେ ନଭେ (ଆକାଶରେ) ଉଦେ ହୋଇଲେ କି ? ଏମନ୍ତ ବୁଧଜନମାନଙ୍କର ପ୍ରତୀତ ହେଲା । ପୂର୍ଣ୍ଣଚନ୍ଦ୍ର ଦିବ-ସରେ ଆକାଶେ ଉଦୟ ହେଲା ଏରୂପ ଉତପ୍ରେକ୍ଷା କଲେ ।୬।

୭।୮ମ ପଦ—ସେ (ମେନକା) ୧ ବୃଷଭସ୍ୟା (ସୁରପୁଷ୍ପ) ମଣ୍ଡି-ବାରେ ତାହାର ଚିତ୍ତ ଅତି ଉଦବେଗ ହୋଇଥିଲା, ଏଣୁ ତରଙ୍ଗେ (ଚଞ୍ଚଳେ) ୨ଅପାଙ୍ଗ (ନେତ୍ରପ୍ରାନ୍ତକୁ) ଡାକିବାରେ ବୃଷଭାଷା (୩ବୃଷ ଶ୍ରେଷ୍ଠ ଅଟେ) ଭାଷ (ପ୍ରଭା ଯାହାର) ଅଥବା ଯତ୍ନ କହିବେ ସେ ଶ୍ରେଷ୍ଠ ଭାଷା ହେଲା, ଚକୋର ପକ୍ଷୀ ସୁଧା (ଅମୃତ) ପିଇ ପୁନଃ ପୁନଃ (ବାରଂବାର) ବିହାର କରୁଅଛି କି ? ସେ (ଅପାଙ୍ଗ ଚାଳନ) ବିଶେଷରେ ହରିତ (ହରା)

୧—ବୁଧା ବୁଧେ ପଣ୍ଡିତେ ଚ ଇତି ମେଦିନୀ ।।
୧—ବୃଷଭସ୍ୟା ସୁରପୁଷ୍ପେ ଚ କାଣ୍ଡ ବିଶେଷଃ ।
୨ଙ୍ଗୀ ନେତ୍ରୟୋରନ୍ତାବପାଙ୍ଗମନ୍ତଃ ।
୩—ଶୁକଳେ ମୂଷିକେ ଶ୍ରେଷ୍ଠେ ସୁକୃତେ ବୃଷଭେ ବୃଷଃ ଇତ୍ୟମରଃ ।

ବଳାରାତିପୁରମଣ୍ଡନା ଶୋଭା ଜନକ ଝିଅଁ ।
ବଳାଇଲେ ଚିତ୍ତ ମୋ ସୁତା ପୁଣ ହୁଅନ୍ତା ଏହି ।୯।
ବାଳାରୁଣଧର୍ମା କହିଲ ଜାଣି ତାହାଙ୍କ ଚିତ୍ତ ।
ବାଳାଏ ଏକ୍ଷଣି ଅଭ୍ରୂତେ ହୋଏ ସିନା ପ୍ରାପତ ।୧୦।
ବଳାହକୁଁ ଜନ୍ମ ହୋଇଲା-ପରି ଈଶ୍ୱରଖିରୁଁ ।
ବଳାହକେ ବିଦ୍ୟୁତ ପ୍ରକାଶ ପ୍ରାୟେ, ଗନ୍ଧବତୀରୁ ।୧୧।
ବାଣୀ ଯେ ଏପରି ଲାଙ୍ଗଳ ଅଗ୍ରେ ଜାତ ମଞ୍ଜୁଷେ ।
ବାଣିଜେ ରତ୍ନସଂପୁଟକ ଲଭ୍ୟପରି ମଞ୍ଜୁଷେ ।୧୨।

---

ଚକ୍ଷିରେ ଏହି ମନୋହରଙ୍କୁ ନିରେଖି ବହିଅଛି ଅର୍ଥାତ ତା ମୁଖ ଚନ୍ଦ୍ରରୁ ନେତ୍ର ଚକୋର ନିରନ୍ତର ସୁଧା ପିଇ ସେ ଚକ୍ଷୁରେ ବାହାର କରୁଛି କି? ତାହାର ମୁଖ ଓ ଚକ୍ଷୁ ଏହିରୂପ ଶୋଭା ଧାରଣ କରିଅଛି । ୭-୮ ।

୯ ମ ପଦ—ବଳାରାତି (ଇନ୍ଦ୍ର) ତାହାଙ୍କର ପୁରି (ସ୍ୱର୍ଗ) ତାହାର ମଣ୍ଡନା (ମଣ୍ଡନକାରିଣୀ) ସେହି ମେନା ଶୋଭାକୁ ଜନକରାଜର୍ଷି ଝିଅ ଚିତ୍ତ ବଳାଇଲେ ଏ ପୁଣି ମୋହର ସୁତା ହୁଅନ୍ତା ହି (ନିଶ୍ଚୟ) ।୯।

୧୦ମ ପଦ—ବାଳାର୍କ ପରି ଅଧର ତାହାର ଏମନ୍ତ ଯେ ମେନା ସେ ଜନକରାଜର୍ଷିଙ୍କ ଚିତ୍ତ ଜାଣି କହିଲ ଏହିକ୍ଷଣି ବାଳାଏ (ବାଳିକା ଗୋଟିଏ) ଅଭ୍ରୂତେ (ଅକସ୍ମାତେ) ପ୍ରାପ୍ତ ହୋଏ ସିନା (ପ୍ରାପ୍ତହୋଇବ) ।୧୦।

୧୧ଶ ପଦ—ବଳାହକୁଁ (ପର୍ବତରୁ) ଈଶ୍ୱରଖିରୁ (ପାର୍ବତୀ) ଜନ୍ମ ହେଲପରି ୧ ବଳାହକେ (ମେଘରେ) ବିଦ୍ୟୁତ (ବିଜୁଳି) ପ୍ରକାଶ ହେଲ ପ୍ରାୟ ୨ ଗନ୍ଧବତୀରୁ (ପୃଥ୍ୱୀରୁ) ପ୍ରକାଶ ହେବ ।୧୧।

୧୨ଶ ପଦ—ବାଣୀ (ବଚନ) ଏରୂପ ଆକାଶରୁ ଶୁଭନ୍ତେ ଲାଙ୍ଗଳ ଅଗ୍ରରେ ମଞ୍ଜୁଷେ (ପେଡ଼ି) ଗୋଟିଏ ଜାତ ହେଲ ୧ ବାଣିଜେ (ବଣିକଙ୍କୁ)

---

୧—ବଳାହକୋ ଗିରୌ ମେଘେ ଦୈତ୍ୟନାଗ ବିଶେଷୟୋଃ । ଇତି ମେଦିନୀ ।

୨—ସର୍ବଂସହା ଗନ୍ଧବତୀ ରତ୍ନଗର୍ଭା । ଚେତି ଚ କାଣ୍ଡଶେଷଃ ।

୧—କୃଷ୍ୟାଦି କୃଷିଃ ପାଶୁପାଲ୍ୟଂ ବାଣିଜ୍ୟ ଚେତି ବୃତ୍ତୟଃ ।

ବଶ୍ୱମୋହ୍ନମାଏ ତା ମଧ୍ୟେ ଦେଖି ମହା ହରଷ ।
ବିଶ୍ୱକର୍ମାକୃତ କୃତ୍ରିମ ପୁତ୍ରୀ କି କଳବଶ ।୧୩।
ବସୁନ୍ଧରାଭବା ଜନକ କୋଳ କରି ସ୍ୱଭାବ ।
ବସୁ ଧରାଇଲା କୃପଣେ କି କୃପାଳୁ ଦଇବ ।୧୪।
ବିଶ୍ୱସୃକ ଏକ କରିଛି ଧରି ଶୋଭାଚୟକୁ ।
ବିଶ୍ୱକେତୁ କେତୁ ବାନ୍ଧିଲା ଜାଣି ଜଗଜ୍ଜୟକୁ ।୧୫।

---

୨ ରତ୍ନସମ୍ପୁଟକ (ରତ୍ନଫରୁଆ) ଲଭ୍ୟ (ପ୍ରାପ୍ତହେଲା ପ୍ରାୟେ) ସେ ୩ମଞ୍ଜୁ (ମନୋହର) ମଞ୍ଜୁଷ ପ୍ରାପ୍ତ ହେଲା * ।୧୨।

୧୩ଶ ପଦ—ସେ ମଞ୍ଜୁଷ ମଧ୍ୟରେ ବିଶ୍ୱମୋହନୀ ଅଟନ୍ତି ଏରୂପ କନ୍ୟା ଗୋଟିଏ ଦେଖି ଜନକ ମହା ହର୍ଷ ହେଲେ । ବିଶ୍ୱକର୍ମା (ସୁରଶିଳ୍ପୀ)ତାହା ଦ୍ୱାରା କୃତ (ନିର୍ମିତ) କୃତ୍ରିମ ପୁତ୍ରୀ (ପାଞ୍ଚାଳିକା ୧ ଅର୍ଥାତ୍ କଣ୍ଢେଇ) କଳବଶ (କଳଦ୍ୱାରା ଗଢ଼ିଛନ୍ତି) ଏମନ୍ତ ଉତ୍ପ୍ରେକ୍ଷା କଲେ ।୧୩।

୧୪ଶ ପଦ—୧ଜନକ (ପିତା) ଦୁହିତାଙ୍କୁ କୋଳେ ଧଇଲାପରି ଜନକ (ଋଷି) ବସୁନ୍ଧରାଜାତା (ପୃଥ୍ୱୀରୁ ଜାତ) କନ୍ୟାଙ୍କୁ ସ୍ୱଭାବରେ କୋଳ କଲେ । ୨କୃପାଳୁ ଦୈବ କୃପଣକୁ ୩ବସୁ (ଧନ) ଧରାଇଲା କି ଏରୂପ ମଣିଲେ ।୧୪

୧୫ଶ ପଦ—ବିଶ୍ୱସୃକ—(ବିଧାତା) ଶୋଭାଚୟ (ଶୋଭାରାଶି) ଧରି ଏକ କରିଛି କି ? ବିଶ୍ୱକେତୁ (କନ୍ଦର୍ପ) ଜଗଜ୍ଜୟକୁ ଜାଣି କେତୁ (ବାନା) ବାନ୍ଧିଲା । ଏହାକୁ ଘେନି ମୁଁ ଜଗଜ୍ଜୟ କରିବି ଏରୂପ ।୧୫।

---

୨—ସମୁଦ୍‌ଗକଃ ସମ୍ପୁଟକ ଇତ୍ୟମରଃ ।
୩—ମନୋଜ୍ଞଂ ମଞ୍ଜୁ ମଞ୍ଜୁଳ ଇତ୍ୟମରଃ ।
* କେହି୨ବାଣିଜ୍ୟେ ପଢ଼ନ୍ତି—ବାଣିଜ୍ୟେ—ବଣିକ୍‌କର୍ମଣି । ଏମନ୍ତ ଅର୍ଥରୁ କିନ୍ତୁ ଏଠାରେ ବାଣିଜଂ - ସ୍ୱାର୍ଥେ ଅଣ୍ ପ୍ରତ୍ୟୟ ।
୧—ପାଞ୍ଚାଳିକା ପୁତ୍ରିକା ସ୍ୟାଦ୍‌ବସ୍ତ୍ରଦନ୍ତାଦିଭିଃ କୃତା ଇତ୍ୟମରଃ ।
୧—ତାତସ୍ତୁ ଜନକଃ ପିତା ଇତ୍ୟମରଃ ।
୨—ସ୍ୟାଦ୍‌ଦୟାଳୁଃ କାରୁଣିକଃ କୃପାଳୁଃ ସୂରତଃ ସମା ଇତ୍ୟମରଃ ।
୩—ବଳଂ ବୃଦ୍ଧ ବସୁ ଦ୍ରବ୍ୟଂ ବସବୋଽଷ୍ଟୌ ଧନାଧିପଃ । ଇତି ଧନମଞ୍ଜରୀ

ବହୁ ଋଷି ତାଙ୍କ ସଙ୍ଗତେ ମେଳ ହୋଇ ଯେ ଥିଲେ ।
ବହୁ ସୀତାନାମ ଏ ସୀତା ଯୋଗେ ଜାତ ବୋଇଲେ ।୧୬।
ବୁଧ ସନମତ ପୃଥ୍ୱୀଭବା ପାର୍ଥିବୀ ଏହ୍ନ ।
ବୁଧରେ ମିଥିଳା ଉତ୍ସବକରୀ ମୈଥିଳୀ କହ୍ନ ।୧୭।
ବିଦେହଜାମ୍ନା କୋଟି ଏକ ହେଲେ ସମ କି ଆଉ ।
ବିଦେହଦେଶରେ ଉଦ୍ଭବ ବଇଦେହୀ ବୋଲାଉ ।୧୮।
ବିଦୁର୍ଷ ଜନକ ପାଳନେ ବୋଲାଇବ ଜାନକୀ ।
ବିଦୂଷଣ ଶୋଭା ଜେମାର ଆଉ ସମ ଆନ କି ? ।୧୯।

୧୬ଶ ପଦ—ଯେଉଁ ଜନକଙ୍କ ସଙ୍ଗତେ ବହୁତ ଋଷି ମେଳ ହୋଇ ଥିଲେ, ସେମାନେ ବୋଇଲେ ୧ସୀତା (ଲଙ୍ଗଳ ପଦ୍ଧତି) ଉତ୍ପତ୍ତିରୁ ଏ ଜାତ ହେଲା ଏଣୁ ଏ କନ୍ୟା ସୀତା ନାମକୁ ବହୁ (ପାଉ) ।୧୬।

୧୭ଶ ପଦ—୧ ବୁଧ ସନମତ (ବୁଧ ନରେ ସମ୍ମତ ) ପୃଥ୍ୱୀଭବା ଏଣୁ ଏହ୍ନ ପାର୍ଥିବୀ ( ଏହାର ନାମ ପାର୍ଥିବୀ ), ବୁଧରେ ( ବେଦରେ ) ମିଥିଳା ପୁର-ଉତ୍ସବକରୀ ଏ(ମିଥିଳା ନଗରର ଉତ୍ସବକାରିଣୀ ଏ) ଏଣୁ ଏ ମୈଥିଳୀ ବୋଲାଉ ଏମନ୍ତ କହିଲେ ।୧୭।

୧୮ଶ ପଦ—କୋଟି ସଂଖ୍ୟକ ବିଦେହ ସ୍ତ୍ରୀ ( ରତି ) ଏକ ହେଲେ ଏକମୂର୍ତ୍ତି ହେଲେ ଏହାକୁ ସମ ହେବ କି ? ବିଦେହ ଦେଶରେ ଏ ଉଦ୍ଭବ ହେଲା ଏଣୁ ବୈଦେହୀ ବୋଲାଉ ।୧୮।

୧୯ଶ ପଦ—ବିଦୁଷ (ପଣ୍ଡିତ) ଜନକ (ଋଷି) ଜନ ଯୋଗୁଁ ଏ ଜାନକୀ ବୋଲାଇବ,ବିଦୂଷଣ (ଦୂଷଣରହିତ) ଏମନ୍ତ ଜେମାର ଶୋଭାକୁ ଆନ ସମାନ ହେବ କି ? ।୧୯।

୧—ସୀତା ଲଙ୍ଗଳପଦ୍ଧତିଶ୍ଚାମରଃ ।
ସୀତା ଲାଙ୍ଗଳପଦ୍ଧାଂତ ସୀତା ମନ୍ଦାକିନୀ ମତା ଇତି ଧ୍ୱନିମଞ୍ଜରୀ ।
୧—ବୁଧ୍ୱର୍ବିଧାନେ ବେଦବେଦୀଶ୍ଚାମରଃ ।

ବାସରେ ଉତ୍ପଳ କି ଲକ୍ଷ ପାରିଜାତକ ଗୁଚ୍ଛ ।
ବାସରେ ଚନ୍ଦ୍ରଟେ ଯୋଜନାଗନ୍ଧା ନାମନ୍ତି ସ୍ୱଚ୍ଛ । ୨୦ ।
ବଡ଼ଭି ଉପରେ ଦୋଳରେ ରଖି ଧାତ୍ରୀ ପାଳିତ ।
ବଡ଼-ଖ୍ୟ ଉପମାମାନଙ୍କ ଅସମାନରୁ ଜାତ । ୨୧ ।
ବିନନ୍ଦ କି ହେମ ଶୟନେ ଦୁର୍ଗା ରୂପାପଲଙ୍କେ ।
ବିନର୍ଗତ ଆନ ଉପମା ସେହି କାଳେ ପଲକେ ।୨୨ ।
ବାଳକା ଲୀଳା କଉତୁକେ ଅନ୍ତଃପୁରସ୍ଥା ମୋହି ।
ବାଳ କି ଶୈବାଳ କମଳକୋଷ ଉପରେ ଶୋହି ।୨୩

---

୨୦ଶ ପଦ – ବାସରେ ( ଦିବସରେ ) ୧ ଉତ୍ପଳ ( କୁବଳୟ ) ସେ ଲକ୍ଷ କି ( ସନ୍ଦେହ ), ସେ ରଜନୀରେ ପ୍ରଫୁଲ୍ଲ । ପାରିଜାତ ପୁଷ୍ପ ଗୁଚ୍ଛ ଅଟେ ଏମନ୍ତ ବାସ ( ସୌରଭ ) ଅର୍ଥାତ୍ ଅନୁପ୍ରବାସ ତହିରେ ଚନ୍ଦ୍ରଟେ ଏଥୁ ଯୋଜନଗନ୍ଧା ନାମ ଏହାର ସ୍ୱଚ୍ଛ ହେଲା ହି (କସ୍ତୁରୀ) ।୨୦।

୨୧ଶ ପଦ—୧ବଡ଼ଭି (ଚନ୍ଦ୍ରଶାଳିକା) ତାହା ଉପରେ ଦୋଳରେ ରଖି ୨ ଧାତ୍ରୀ (ଉପମାତା) ଦ୍ୱାରା ପାଳିତ ହେଲେ, ଅସମାନ ( ସମାନ ନୋହିବାରୁ ) ଉପମାମାନଙ୍କର ବଡ଼ ଖ୍ୟ (ଭୟ) ଜାତ ହେଲା ।୨୧।

୨୨ଶ ପଦ—ହେମଶୟନ ଦୁର୍ଗା ରୂପାପଲଙ୍କରେ ବିନନ୍ଦ (ବିଶେଷରେ ନନ୍ଦିତ ) ହୋଇଅଛନ୍ତି କି ? "ଦୋଳରେ ଶୟନ କରିବାରେ କେମନ୍ତ ଶୋଭିଲେ ।" ସେହି କାଳ ପଲକେ ମାତ୍ରକେ ଆନ ଉପମା ବିଶେଷରେ ନର୍ଗତ ହେଲେ (ଆନ ଉପମା ସମାନ ନୋହିଲେ) ।୨୨।

୨୩ଶ ପଦ ବାଳକା ଲୀଳା । (ଶିଶୁଲୀଳା) କୌତୁକେ ଅନ୍ତଃପୁରସ୍ଥ (ନାରୀମାନଙ୍କୁ) ମୋହିଲେ । ବାଳ (କେଶ) ଶିରରେ ଶୋଭିତ ହେଲା ।

---

୧—କୁବଳୟ ମିନ୍ଦୀବରଂ ଚ ନାଳାବ୍ଜମିତ ରତ୍ନମାଳା ।
୨—ବଡ଼ଭି ସ୍ତ୍ରୀନ୍ଦ ଶାଳିକା କୂଟାଗାର ମିତ ନିକାଣ୍ଡଶେଷଃ ।
୨—ଧାତ୍ରୀ ଜନନ୍ୟାମଲକ୍ଷ ବସୁମତ୍ୟୁପମାତୃ ଶିବ ମେଦିନୀ ।

ବାଡ଼ବର ଚନ୍ଦ୍ରପ୍ରତିମା ପର ଧର ତା ଉଦ୍ଧ ।
ବାଡ଼ବର ମଧ୍ୟେ ପକାଅ ଆନସମାନ ଶୋଭ୍ର ।୨୪।
ବଡ଼ମ୍ବ ନୂତନ ମଞ୍ଜୁଷା ତଳିତ କି ପବନେ ।
ବଡ଼ମ୍ବଣ ଅନ୍ୟଦୃଷ୍ଟି ଯେ ଟଳ ଟଳ ଗମନେ ।୨୫।
ବଚକୁ ବାଚକେ ନ କହୁଁ ପୁଣି ଶୁଣି ଉତ୍ସାହୀ ।
ବଚକୁ ପିଇଲା ପଢ଼ିଲା ଶୁକ ମୂକରେ ରହି ।୨୬।

---

୧ଶୈବାଳ (ଶିଉଳୀ) କମଳ କୋଷ (ପଦ୍ମଫୁଟୁଳ) ଉପରେ ଶୋଭିତ ହେଲା କି ? ।୨୩।

୨୪ଶ ପଦ—ବାଡ଼ବର (ବାଡ଼ଶ୍ରେଷ୍ଠ) ତାଙ୍କୁ ଧରି ଆଉଜ ଉଦ୍ଧ ହେଲା ବେଳେ ସେ ବାଡ଼ର ଚନ୍ଦ୍ରପ୍ରତିମା ପଶ ଧରିଲେ । ଆନ (ଏହାବିନା) ସମାନ ଶୋଭାକୁ ୧ ବାଡ଼ବ (ବଡ଼ବାନଳ) ର ମଧ୍ୟରେ ପକାଅ (ପକାଇ ଦିଅ) ।୨୪।

୨୫ଶ ପଦ—ପବନରେ ତଳିତ (ଚଳ ଚଳ) ଅଟଇ ଏମନ୍ତ ନୂତନ ମଞ୍ଜୁଷା (ନବୀନ ବଲ୍ଲରୀ) ତାହାର ବଡ଼ମ୍ବ (ସଦୃଶ) ହେଲେ ଟଳ ଟଳ ଗମନରେ ଅନ୍ୟଦୃଷ୍ଟି । (ଏହା ବିନା ଅନ୍ୟ ଦୃଷ୍ଟି) କରିବାର ବଡ଼ମ୍ବନ କି ସେ (ବିଲକ୍ଷଣ) ୨୫ ।

୨୬ଶ ପଦ—ବଚ (ବଚନ) ବାଚକରେ ନ କହୁଁ (ସ୍ପଷ୍ଟକରି ନ କହନ୍ତେ) ତାହା ଶୁଣି ପୁଣି ଉତ୍ସାହୀ (ଉତ୍ସାହ ଯୁକ୍ତ ହେଲା) ଏମନ୍ତ ଯେ ଶୁକ ସେ ସେ ବଚକୁ ପଇଲା, ପଢ଼ିଲା, ତଥାପି ସମାନ ନୋହି ମୂକରେ ରହିଲା । ୨୬।

---

୧—ଜଳମଳୀ ତୁ ଶୈବାଳ ମିତ୍ୟମରଃ ।
ଏପଦ ଲକ୍ଷଣାଦିରେ ରୂପକ ହେଲା । ରୂପକ ଲକ୍ଷଣାଦିକ ମିତ୍ୟଲଂକାରେ
ଯଥା —ଉଦଧ୍ବତ କନକାଚଳସ୍ତୋକୁ ପରି ଚଳତ୍ ପଙ୍କଜସ୍ତରଃ ।
ତଦ୍ରୂପର ସମାବିକାରଃ କସ୍ୟ କୂଟେ ଧାତୋ।ସାଦୃଶୀ ସୃଷ୍ଟିରତ ॥
୧—ବାଡ଼ବୋ ବଡ଼ବାନଳ ଇତ୍ୟମରଃ ।

ବାଳୀ ସେ ଖେଳଇଲା ଶିଶୁଙ୍କ ସଙ୍ଗେ କ୍ରମ କ୍ରମରେ ।
ବାଳକଶେ ଲକ୍ଷିବେ ସେକାଳେ ରମ୍ଭା ରମା ସମରେ ।୨୭।
ବେଣୀ ଗୁରୁ ଶିରେ ଶୁକ୍ଳ ଉଙ୍ଗଫୁଲେ ଯତନ ।
ବେଣୀ ତ୍ରିପୂର୍ବ କି ନଭରୁ ହୋଇଛନ୍ତି ପତନ ।୨୮।
ବଳମ୍ବିତ କର୍ଣ୍ଣେ କୁଣ୍ଡଳ ହସେ ସାଙ୍କୁଳୀବଳା ।
ବଳମ୍ବିତ, ଦମ୍ଭଚିତ୍ତରେ ଦେବ ବୃନ୍ଦ ମୋହିଲା ।୨୯।
ବସ୍ତୁ କଲା କାହିଁ ଏ ଗାତ୍ରମାନ ସୁନ୍ଦରୀମଣି ।
ବୟସ୍ତ ସଙ୍ଗତ କି ପ୍ରକାଶି ଆନପ୍ରକାରେ ଆଣି ।୩୦।

---

୨୭ଶ ପଦ—ସେ ବାଳୀ କ୍ରମ କ୍ରମରେ ଶିଶୁଙ୍କ ସଙ୍ଗରେ ଖେଳିଲା । ସେକାଳେ (ସେ.ଚର୍ଯ୍ୟା ଖେଳିବା ସମୟରେ) ରମ୍ଭା (ଅପସରା) ରମା (ଲକ୍ଷ୍ମୀ) ତାହାର ଶୋଭାକୁ ସମାନ ହୋଇ ବାଳକଶେ (ଅଙ୍କମାନେ) ଲକ୍ଷିବେ (ଲକ୍ଷ୍ୟ କରନ୍ତେ) ।

୨୮ଶ ପଦ—ବେଣୀ (ପ୍ରବେଣୀ) ଗୁରୁ (ମନୋହର) ଅଟଇ ଏମନ୍ତ ଯେ ଶିର (ମସ୍ତକ) ତାହାକୁ ଶୁକ୍ଳ ଫୁଲ ଓ ଉଙ୍ଗଫୁଲରେ ଯତ୍ନ କରନ୍ତେ କବି ଉତ୍ପ୍ରେକ୍ଷା କଲେ ତ୍ରିପୂର୍ବ ବେଣୀ (ତ୍ରିବେଣୀ)—ଗଙ୍ଗା ଯମୁନା ସରସ୍ୱତୀ ନଭରୁ (ଆକାଶରୁ) ପତନ ହୋଇଅଛନ୍ତି କି ? ।୨୮।

୨୯ଶ ପଦ—କର୍ଣ୍ଣେ (କର୍ଣ୍ଣଦ୍ୱୟରେ) କୁଣ୍ଡଳ ଯୁଗ୍ମ ବଳମ୍ବିତ ହେବାରେ କବି ଏମନ୍ତ ଉତ୍ପ୍ରେକ୍ଷା କଲେ, ସେ କୁଣ୍ଡଳ ଦ୍ୱୟ ସାଙ୍କୁଳ (ବଳା) କି ? ବଳମ୍ବିତ (ଝୁଲାଇଥିବା) ଦମ୍ଭ (ଧୈର୍ଯ୍ୟ) ଯାହାର ଏମନ୍ତ ଲୋକର ଚିତ୍ତରେ ଦେବ । ଏମନ୍ତ ବୃନ୍ଦ (ସ୍ୱଦାଷନ୍ତେ ) ମୋହିତ କଲା । ଭାବାର୍ଥ—ଏହାକୁ ଦେଖି ଧୈର୍ଯ୍ୟଶାଳୀ ଲୋକର ଚିତ୍ତ ବନ୍ଧ ହେବ ।୨୯।

୩୦ଶ ପଦ—ସେ ସୁନ୍ଦରୀମଣି (ସୀତା) ଏ ଗାତ୍ରମାନ (ଏ ବାଳ ଗାତ୍ର ମାନଙ୍କୁ) କାହିଁ ବସ୍ତୁ (ବ୍ୟର୍ଥ) କରି ଦେଲା । ବୟସ୍ତସଙ୍ଗତ (ବୟଃସନ୍ଧି) ପ୍ରକାଶ କରି ଆନ ପ୍ରକାରମାନ ଆଣିଲା ।୩୦।

---

୧—ବାଳକଶବ୍ଦ ଶିଶୌ ମୂର୍ଖେ ଇତ୍ୟମରଃ ।

ବିଭାକାଳେ ନାରୀ ଯେମନ୍ତେ କନ୍ୟାଲଙ୍କାର ମୁଞ୍ଚି ।
ବିଭାବନା ହେଲା ତହିଁରେ ନବବିଳାସ ରଞ୍ଚି ।୩୧।
ବସନ୍ତଦୂତ ଧ୍ୱନି କଲାବେଳେ କେତେ ଇଙ୍ଗିତ ।
ବସନ୍ତ ରାଗରେ ଆଳାପ ତହିଁ କରଇ ଗୀତ ।୩୨।
ବସନ୍ତବସନେ ଗଣ୍ଠି କି ଦେଇ କନ୍ଧେ ପକାଇ ।
ବସନ୍ତବସନ ମୋହିବି ଏହି ଗୁମାନ ବହି ।୩୩।
ବନ୍ଧନ କରେ ନାନା ଛନ୍ଦେ ନୀବୀ ସେ ପୁନଃପୁନଃ ।
ବନ୍ଧଚିହ୍ନପଟ୍ଟ ଏକାନ୍ତେ ଚୁମ୍ବିବାରେ ସୁମନ ।୩୪।

---

୩୧ଶ ପଦ—ବିଭାକାଳରେ ନାରୀ (ସ୍ତ୍ରୀ) ଯେମନ୍ତ କନ୍ୟାଲଂ-କାରକୁ ମୁଞ୍ଚଇ (ଛାଡ଼ଇ), ଅନ୍ୟ ଅଳଙ୍କାର ଇଚ୍ଛଇ, ତେମନ୍ତ ସେ ବୟଃସନ୍ଧି କାଳରେ ନବ ବିଳାସ (ନୂତନ ବିହାର) ରଚିବାକୁ ତହିଁରେ (ଏହି) ବିଭାବନା (ବିଶେଷ ଭାବନା ହେଲା) ।୩୧।

୩୨ଶ ପଦ—୧ ବସନ୍ତ ଦୂତ (କୋକିଳ) ଧ୍ୱନି କଲା ବେଳିରେ କେତେ୨ ଇଙ୍ଗିତକୁ ପ୍ରକାଶ କରି ଓ ବସନ୍ତ ରାଗରେ ଆଳାପ କରି ତହିଁ ସେ ବସନ୍ତ ରାଗରେ ଗୀତ (ଗାନ) କରଇ । ଭାବାର୍ଥ—କୋକିଳ ସ୍ୱରରୁ ଆପଣା ସ୍ୱର ଅଧିକ ମଣି ଗୀତ ଗାନ କରଇ ।୩୨।

୩୩ଶ ପଦ - ବସନ୍ତ ବସନ (ପୀତାମ୍ବର) ପରିଧାନ କରନ୍ତେ ଅଞ୍ଚ-ଳରେ (କାନରେ) ଗଣ୍ଠି କି ଦେଇ ବସନ୍ତବସନ (ପୀତବାସ-ରାମଚନ୍ଦ୍ରଙ୍କୁ) ମୋହିବି ଏହି ଗୁମାନ ବହି ସ୍କନ୍ଧରେ ପକାଇଲେ ।୩୩।

୩୪ଶ ପଦ—ସେ (ସୀତା) ନାନାଛନ୍ଦେ (ନାନାପ୍ରକାର ଛନ୍ଦରେ ନୀବୀ (ବସ୍ତ୍ରଗ୍ରନ୍ଥି) ପୁନଃପୁନଃ ବନ୍ଧନ କରେ (କଲେ) । ବନ୍ଧ (ଚରୁଃ-ଷଷ୍ଠି ବନ୍ଧ) ଚିହ୍ନ ହୋଇ ଥିବା ପଟକୁ ଏକାନ୍ତରେ ଚୁମ୍ବିବାରେ ସୁମନ ହେଲେ (ଅନୁରକ୍ତ ହେଲେ) ।୩୪।

---

୧—ବସନ୍ତ ଦୂତଶ୍ଚୂତେ ସ୍ୟାତ ପିକପଞ୍ଚମରାଗୟୋଃ ଶରଣ ମେଦନୀ ।
୨—ଇଙ୍ଗିତଂ ହୃଦ୍‌ଗତୋ ଭାବ ଇତ୍ୟମରଃ ।

ବନ୍ଧ ଯାହାକୁ ବଡ଼ବୋଲି ସଉନ୍ଦର୍ଯ୍ୟେ ଧରାରେ ।
ବନ୍ଦୀପରି ହୋଇ ରହିଲି ଅବରୋଧେ ଧରାରେ ।୩୫।
ବୟସର ନବରୁ ଘନକୁଚନ ପ୍ରଭା ବଢ଼ାଇ ।
ବକ୍ଷରେ କୁଚ ଅଙ୍କୁରିତ, ଏହି ଉତ୍ପ୍ରେକ୍ଷା ହୋଇ ।୩୬।
ବର୍ଣ୍ଣମାଳୀ ପରି ରୋମାଳି କସେ ସରଘାପନ୍ତି ।
ବର୍ଣ୍ଣନୀୟ ଏହି, କରନ୍ତି କି ସେ ଊର୍ଦ୍ଧ୍ୱକୁ ଗତି ।୩୭।
ବିକଳନା କରି ସଞ୍ଚନ୍ତି ମଧୁ କଳ୍ପଦ୍ରୁମରେ ।
ଲ୍ଲିକଳ୍ପିତ, ଫଳ ଅଙ୍କୁରୁ ଭଜେ ବୃଦ୍ଧି କ୍ରମରେ ।୩୮।

---

୩୫ଶ ପଦ—ଯାହାକୁ (ଯେଉଁ ସୀତାଙ୍କୁ) ସୌନ୍ଦର୍ଯ୍ୟରେ ବଡ଼ବୋଲି ବନ୍ଧ (ବନ୍ଦନା କରି) ବନ୍ଦୀପରି (ବନ୍ଦୀଜନ ପ୍ରକାରେ) ଅବରୋଧ (ଅନ୍ତଃପୁର) ରହିରେ ଧରାରେ ରହିଲି । ବୟଃସନ୍ଧି କାଳ ହେବାରେ ବହିଦ୍ୱାର ନ ହରାଇଲେ ଏ ଭାବାର୍ଥ । ।·

୩୬ଶ ପଦ—୧ ବୟସର ନବରୁ (ନବ ବର୍ଷ ହେବାରୁ) ଘନକୁ ଘନ ପ୍ରଭାକୁ ବଢ଼ାଇଲେ (ପ୍ରଭା ବଢ଼ିଲି) ୨ ବକ୍ଷ (ବକ୍ଷଃସ୍ଥଳ) ରହିରେ କୁଚ (ସ୍ତନ) ଅଙ୍କୁରିତ ହେବାରୁ ଏହି ଉତ୍ପ୍ରେକ୍ଷା ଯେ ସେ ହେଲି ।୩୬।

୩୭ଶ ପଦ—ବର୍ଣ୍ଣମାଳୀ (ଅକ୍ଷରମାଳିକା) ପରି ଯେଉଁ ରୋମାଳି (ରୋମ ବଳୀ) ସେ ୧ସରଘାପନ୍ତି (ମଧୁମକ୍ଷିକା ପଂକ୍ତି) ହେଲି । ସେ (ସରଘାପନ୍ତି) ଊର୍ଦ୍ଧ୍ୱକୁ ଗତି କରୁଅଛି କି ଏହି କଥା ବର୍ଣ୍ଣନୀୟ (ବର୍ଣ୍ଣନାଯୋଗ୍ୟ ହେଲି) ।।

୩୮ଶ ପଦ—କଳ୍ପଦ୍ରୁମରେ ମଧୁ (ମଧୁଚାକକୁ) ସଞ୍ଚନ୍ତି (ସଞ୍ଚୁଅଛନ୍ତି) ଏମନ୍ତ ବି-(ବିଶେଷରେ) କଳନା କଲି ଅଥବା ବିକଳନା କରି (ଅକଳିତ କରି) ଅବା ସେ କଳ୍ପଦ୍ରୁମରେ ଫଳ ଅଙ୍କୁର ହୋଇ କ୍ରମରେ ବୃଦ୍ଧିକି ଭଜେ (ଭଜଇ) ଏମନ୍ତ ବିକଳ୍ପ ହେଉଅଛି । (ତହିଁରେ ଫଳ ହୁଅଇ) ।୩୮।

---

+ ଏପଦ ଅଦ୍ୟାନ୍ତାନୁ ପ୍ରାସହେଲା ।
୧—ସବୟସ୍ତ୍ରେ ବୟସ୍ତ୍ରେହ ଇତ୍ୟମରଃ ।
୨—ଭରେ ବକ୍ଷଂଚ ବକ୍ଷଷ୍ଟ ଇତ୍ୟମରଃ ।
୩—ସରଘା ମଧୁମକ୍ଷିକା ଇତ୍ୟମରଃ ।

ବିଜୟୀ ହୋଇଲା କମୁକଠାରୁ ତାଳସରକ ।
ବିଜୟୀ ହୃଦରେ ସ୍ୱୟମ୍ଭୂରୂପେ କଲେ ଶମ୍ଭୁ କି ? । ୩୯ ।
ବଳିଶ୍ରେଷ୍ଠ କାମ ତାହାଙ୍କ ବାମ କଲା ପ୍ରହାର ।
ବଳ ବାଟୁଳି କି ସ୍ତନାଗ୍ରରୂପେ ସେ ମନୋହର ୪୦ ।
ବାସରେ ଯତନେ ଘୋଡ଼ାଇ ଚୋଳ କବଚ ଦେଇ ।
ବାସଅଙ୍ଗୀ ସ୍ମର ଭୟରୁ ରତ ସେବନେ ସ୍ନେହୀ ।୪୧।

---

୩୯ଶ ପଦ—୧ କମ୍ବୁକ (ଶଙ୍ଖ) ଠାରୁ ତାଳ (ତାଳ ଫଳ) ସରକ (ସମାନ) ୨ ଜୟୀ ହୋଇଲା (ଜିଣିଲା) କିବା ଏରୂପ ଉତ୍ପ୍ରେକ୍ଷା ହେଉ । ଶମ୍ଭୁ (ମହାଦେବ) ସ୍ୱୟମ୍ଭୂ ରୂପରେ ୩ହୃଦରେ ବିଜୟ କଲେ କି ॥

୪୦ଶ ପଦ—ବଳିଶ୍ରେଷ୍ଠ (ବଳୀଙ୍କ ମଧ୍ୟରେ) ଶ୍ରେଷ୍ଠ ଅଟେ ଏରୂପ ଯେଉଁ କାମ (କନ୍ଦର୍ପ) ତାହାଙ୍କ ବାମ (ପ୍ରତିକୂଳ) ଅଟେ, ତେଣୁ ବାଟୁଳିକି ବଳ ପ୍ରହାର କଲା କି ? ସେ ବାଟୁଳି ସ୍ତନାଗ୍ରରୂପେ, (ଚୁଚୁକରୂପେ) ମନୋହର ହୋଇଅଛି । ଯେ ବାଟୁଳି ସେ ନ ଖସିଲେ ତାହିଁକି ? ବଳ ବାଟୁଳି (ଉତ୍କଟ ବଳ ପ୍ରହାର କରିବାରୁ ରହିଛି ରହିଲା) ।୪୦।

୪୧ଶ ପଦ— ଚୋଳ (କାଞ୍ଚୁଳି) ସେ କବଚ ହେଲା, ତାକୁ ଦେଇ ବାସ (ବସନରେ) ଯତ୍ନରେ ଘୋଡ଼ାଇ ବାସଅଙ୍ଗୀ (ସୌରଭାଙ୍ଗୀ ସେହି ସୀତା) ସ୍ମର ଭୟରୁ (କାମ ଭୟରୁ) ରତ ଯେ (ସୁରତ) ସେ ରତ କି (ସରପ୍ରିୟା) ହେଲେ, ତାହାର ସେବନ (ଭଜନ) ଉଦ୍ଧିରେ ସ୍ନେହୀ ହେଲେ ସେ ଶମ୍ଭୁଙ୍କ ଦେଖି ସ୍ମର ଭୟ କରିବାରୁ ରତ ତାଙ୍କୁ ସେବା କଲା, ରତ ରସରେ ରତି ଜଡ଼ିତ ହେଲା ଏରୂପ ଭାବାର୍ଥ ।୪୧।

---

୧—ପୂଗାବୃତ ଭୂବୋରଭ ବଳ୍ପ ତାଳ ଗୁଚ୍ଛେଭ କୁମ୍ଭାଦ ଘଟେଶତଚୈଃ ।
ଗୌରୀବଚକମ୍ବୀଭଭ ବାଣପୂର ସମୁଦ୍ଗ ଗୋଲଂକଦବେଶ କୁଚୋକଃ ।
[ଇତ୍ୟଲଂକାରେ]

୨—ଜୟଷ୍ଟୁ ଜୟେ, ପାର୍ଥେ ଇତି ବିଶ୍ୱଃ ।

୩—ଉତ୍ସଂପିତ ବୃକ୍କାସ୍ଥାଂ ହୃଦୟଂ ମାଂସପେଶିକ । ଇତି ହିକାଣ୍ଡଶେଷଃ ।

ବନଧବକୁ ଯେ ଜିଣିଲ କଟୀକୃଶତା ହୋଇ ।
ବନଧରକେଶୀ କଙ୍କିଣୀ ଜୟବାଦ୍ୟ ବଜାଇ । ୪୨ ।
ବଳା ହଂସଙ୍କ ନାଦେ ଗତି ବଢ଼ାଇକି ଶୁଣାଇ ।
ବଳାଙ୍କାରେ ମନ୍ଦ ଶରଣେ ଗଜ ହଂସ ଜଣାଇ । ୪୩ ।
ବାରଣବୃଷା ଗର୍ବ ଖର୍ବ କରି ଉରୁ ଘାପିତ ।
ବାରଣଦନ୍ତ କୁନ୍ଦସ୍ତମ୍ଭ କି କୁଙ୍କୁମ ଲେପିତ । ୪୪ ।
ବାହୁ ଶୋଭା ଗୃହ୍ନି ମୃଣାଳ କଣ୍ଟକକୁ ବହିଲ ।
ବାହୁଟୀ ତାଡ଼ରେ ଜାଣିକି ସେ ପୂଜାକୁ ପାଇଲ । ୪୫

୪୨ଶ ପଦ—କଟୀକୃଶତା (କ୍ଷୀଣତା) ହୋଇ ବନଧବକୁ (ସିଂହକୁ) ଜିଣିଲ । ଅର୍ଥାତ୍ ସିଂହକଟି [illegible] ଅତି ସରୁ । ତେଣୁ ସେହି ବନଧରକେଶୀ [illegible] କଙ୍କିଣୀ (କ୍ଷୁଦ୍ରଘଣ୍ଟିକା) ରୂପ ଜୟବାଦ୍ୟକୁ ବଜାଇଲା । ୪୨

୪୩ଶ ପଦ—ବଳା (ପଦାଲଂକାର ବିଶେଷ) ହଂସଙ୍କ (ପାଦକଟକ) ଏ ଦୁହିଙ୍କ ନାଦରେ ଗତି [illegible] ବଢ଼ାଇ [illegible] ଶୁଣାଇ ବଳାଙ୍କାରରେ ମନ୍ଦ (ମନ୍ଥର) ଶରଣ ହେବାରୁ ଗଜ ଓ ହଂସ ଏ ଦୁହିଙ୍କ ଗତି [illegible] ଜଣାଇଲେ ।୪୩।

୪୪ଶ ପଦ—୧ ବାରଣବୃଷା (କଦଳୀ) ଗର୍ବ (ଅହଙ୍କାର) ଖର୍ବ (ଲଘୁ) କରି ଉରୁଦ୍ୱୟ ସ୍ଥାପିତ ହୋଇ । ବାରଣଦନ୍ତ (ହସ୍ତିଦନ୍ତ) ତତ୍ସମ୍ବନ୍ଧୀୟ କୁନ୍ଦସ୍ତମ୍ଭ ଯେ କୁଙ୍କୁମରେ ଲିପ୍ତ ହୋଇଅଛି [illegible] ଏମନ୍ତ ଉତ୍ପ୍ରେକ୍ଷା ଜାତ ହେଲା ।୪୪।

୪୫ଶ ପଦ—ବାହୁର ଶୋଭାକୁ ଗୃହ୍ନି ମୃଣାଳ (ପଦ୍ମନାଡ଼) "ଅଶ୍ରମ-ହେବାରୁ" କଣ୍ଟକକୁ (କଣ୍ଟ) ବହିଲା । ବାହୁଟୀ (ତାଡ଼) "ହେବାରେ ଜାଣିଲି ସେ ପୂଜାକୁ ପାଇଲା (ପୂଜ୍ୟହେଲା) ।୪୫।

୧—କଙ୍କିଣୀ କ୍ଷୁଦ୍ରଘଣ୍ଟି କେବଲ୍ୟାମରଃ ।
୧—କଦଳୀ ବାରଣବୃଷା ରମ୍ଭା ଇତ୍ୟମରଃ ।

ବ୍ରହ୍ମାଣ୍ଡରେ ନାହିଁ ସେ ହସ୍ତତୁଲ୍ୟ କହିବା ତର୍କେ ।
ବ୍ରହ୍ମା ତେଣୁ ଦେଲା ଅତୁଲକର ନାମ କଟକେ । ୪୬ ।
ବିଭୂଷଣ ଭୂଷାନିଚୟ ସର୍ବସୁନ୍ଦରୀଙ୍କରେ ।
ବିଭୁ ସେ ଜାନକୀ ଅତୁଲ ତାଙ୍କୁ ଆଟନ୍ତି ଏଠାରେ । ୪୭ ।
ବଢ଼ି ଆମ୍ଭଙ୍କନେ ଶ୍ରବଣେ ତାଳପତ୍ର ଘଉଞ୍ଜି ।
ବନ୍ଧଆ ନୋହିବ କି ସେ ଯିବ, ଯେଉଁ ନୟନ ପଞ୍ଜି । ୪୮ ।
ବାଳୀ ଝଲକାଦି ସୁଫୁଲ ମଲ୍ଲୀକଢ଼ୀ ବିଶେଷେ ।
ବାଳୀ ଝଲକାଇ ଯେମନ୍ତ କହି ନୋହିବ ଶେଷେ । ୪୯ ।

---

୪୬ଶ ପଦ—ସେ ସୀତାଙ୍କ ହସ୍ତକୁ ତୁଲ୍ୟ ବ୍ରହ୍ମାଣ୍ଡରେ ନାହିଁ । ଏମନ୍ତ କହିବା ତର୍କରେ ବ୍ରହ୍ମା ୧କଟକ (ବଳୟ) ତାଠାରେ ଅତୁଳିନାମକୁ ଦେଲା ।

୪୭ଶ ପଦ—ଭୂଷାନିଚୟ ( ଅଳଙ୍କାରସମୂହ ) ସର୍ବ ସୁନ୍ଦରୀଙ୍କି ବିଭୂଷିତ କରେ । ସେ ଜାନକୀ ଆମ୍ଭମାନଙ୍କର ବିଭୁ (ମଣ୍ଡନ) ଅର୍ଥାତ୍ ଭୂଷଣର ଭୂଷଣ । ତାଙ୍କୁ ଅଟନ୍ତି ଅତୁଲ (ତୁଲ୍ୟନୋହୁ ) ଏମନ୍ତ ଠାରେ (ଠାରରେ କହୁବାର) ।୪୭।

୪୮ଶ ପଦ ତାଳପତ୍ରକୁ ଘଉଞ୍ଜି ବନ୍ଧଆ (କର୍ଣ୍ଣାଳଂକାର) ଶ୍ରବଣରେ ମଣ୍ଡନ ହେଲା । ତହିଁରେ ଯେଉଁ ନୟନ ପଞ୍ଜିବ ସେ ବନ୍ଧଆ ନୋହି-ଯିବ କି ? ଅର୍ଥାତ୍ ନିଶ୍ଚୟ ବନ୍ଧ ହେବ ।୪୮।

୪୯ଶ ପଦ—୧ବାଳୀ (ବାଳମୁଣ୍ଡା) ଝଲକା, ଆଦି (ଆଦର) ସୁଫୁଲ (ଉତ୍ତମଫୁଲ) ମଲ୍ଲୀ କଢ଼ି, ଏମାନଙ୍କୁ ବାଳୀ (ସୀତା) ବିଶେଷରେ ଯେମନ୍ତେ ଝଲକାଇଲେ ତେମନ୍ତ ୨ ଶେଷ (ଅନନ୍ତ) ଦ୍ୱାରା କହିନୋହିବ । ଅର୍ଥାତ ସହସ୍ର ମୁଖରେ ଅନନ୍ତ ସେ ଶୋଭା କହିବାକୁ ଅକ୍ଷମ ।୪୯।

---

୧ କଟକଂ ବଳୟୋଽସ୍ତ୍ରିୟା ମିତ୍ୟମରଃ ।
୧—ବାଳୀ ସ୍ୟାତ କର୍ଣ୍ଣଭୂଷାୟାଂ ବାଳୀ ବାନର କନ୍ୟୟୋଃ ଇତି ମେଦିନୀ ।
୨—ଶେଷୋଽନନ୍ତୋ ବାସୁକିରିତ୍ୟମରଃ ।

ବନ୍ଧା ସୁମନରେ ଜଡ଼ା ଯେ ଧୈର୍ଯ୍ୟ ଉଜୁଡ଼ା ଯେ-ହି ।
ବନ୍ଧା ସୁମନକୁ ପକାଇ ନେବ କେ ମୁକୁଳାଇ । ୫୦ ।
ବିଶେଷେ ଚଞ୍ଚଳ ଈକ୍ଷଣ ବାଣ ସେ ଗତାଗତ ।
ବିଷେ ସେ ଯୁକ୍ତ କି ଅଞ୍ଜନେ ଯେଣୁ ଅତି ଜ୍ୱଳିତ । ୫୧ ।
ବାଜିବାରୁ ଭୟେ କୁରଙ୍ଗ ମୀନ ବନେ ପଳାଇ ।
ବାଜିବାର ଗତାଗତ ସେ ଗତି ଶିଖିବାପାଇଁ । ୫୨ ।
ବର୍ତ୍ତୁଳମୁକୁତା ଚଳିତ ନାସାପୁଡ଼ା ଯେ ଫୁଲେ ।
ବର୍ତ୍ତୁ କେ ତା ଗୁହ୍ନିଁ ଆଜନ୍ମ ବ୍ରହ୍ମଚାରୀ ହୋଇଲେ । ୫୩ ।

---

୫୦ଶ ପଦ—ସୁମନ (କୁସୁମ) ଡହିଁରେ ବନ୍ଧା ହେଲା ଏମନ୍ତ ଯେ ଜଡ଼ା ସେ ଧୈର୍ଯ୍ୟ ଉଜଡ଼ା ହି (ନଷ୍ଟେ) । ତହିଁରେ ସୁମନ (ଉତ୍ତମ ମନକୁ) ବନ୍ଧା ପକାଇ କେ (କେଉଁଲୋକ) ମୁକୁଳାଇ ନେବ ଅର୍ଥାତ୍ ମୁକୁଳାଇ ନେଇ ପାରିବ ନାହିଁ ।୫୦।

୫୧ଶ ପଦ—ବିଶେଷରେ ଚଞ୍ଚଳ ଅଟଇ ଏମନ୍ତ ଯେ ଈକ୍ଷଣ(ଦୃଷ୍ଟି) ସେ ବାଣ ହେଲା ଯେଣୁ ସେ ଗତାଗତ ହେଉଅଛୁ । ଅଞ୍ଜନ (କଜ୍ଜଳ) ତହିଁରେ ଅତି ଜ୍ୱଳିତ କରୁଅଛୁ, ତେଣୁ ସେ ନେତ୍ର ବାଣ ବିଷ (ଗରଳ) ତହିଁରେ ଯୁକ୍ତ ହୋଇଅଛୁ କି ଏମନ୍ତ ଉତ୍ପ୍ରେକ୍ଷା ।୫୧।

୫୨ଶ ପଦ—ସେ ନେତ୍ର ବାଣ ବାଜିବାରୁ ଭୟରେ କୁରଙ୍ଗ (ମୃଗ) ମୀନ ଏହୁହେଁ ବନ (କାନନ) ନେ (ଜଳ) ତହିଁକି ପଳାଇଲେ । ସେହି ନେତ୍ରଶରର ଗତିକି ଶିଖିବାପାଇଁ ୧ ବାଜିବାର (ଅଶ୍ୱସମୂହ) ଗତାଗତ ହେଉଅଛନ୍ତି ।୫୨।

୫୩ଶ ପଦ—ନାସାପୁଡ଼ା (ନାସାପୁଟ) ସେ ଫୁଲନ୍ତେ ବର୍ତ୍ତୁଳ ମୁକ୍ତା ସେ ନାସାରେ ଚଳୁଅଛୁ ତାହା ଗୁହିଁ ୨ଆଜନ୍ମବ୍ରହ୍ମଚାରୀ ହୋଇଲେ କେ ବର୍ତ୍ତି ଅର୍ଥାତ୍ କେଉଁଲୋକ ବଞ୍ଚିବ ।୫୩।

---

୧—ବାଜିବାହାବ ଗନ୍ଧର୍ବ ହୟସ୍ତ ସୈନ୍ଧବସ୍ତୁ ସ୍ତ୍ରସ୍ତୁ ଇତ୍ୟମରଃ ।

୨—ଆଜନ୍ମ ବ୍ରହ୍ମଚାରୀ ପୃଥକ ଭୂଜଶିଳା ସ୍ତ୍ରମ୍ଭ ବିଷ୍ଣୁଜମାନ-ମହାନାଟକ

ବନ୍ଧୁକ କରିବାର ଇଚ୍ଛି ଲ ଯେଣୁ ଅଧର ଭୁଲେ ।
ବନ୍ଧୁକ ନାମହିଁ ରହିଲା ତେଣୁ ରକ୍ତକ ଫୁଲେ । ୫୪ ।
ବନ୍ଧୁଜୀଅଧର ବୋଲିବା ଯୁକ୍ତ ଅର୍ଥରେ ଆନ ।
ବଧୂ କରେ ତହିଁ ଉପରେ ହସ ପ୍ରକାଶ ମାନ । ୫୫ ।
ବଉଦ୍ଧି ମୋତିପନ୍ତିଦନ୍ତ ଓଷ୍ଠ ମାଣିକ୍ୟପାତ୍ରେ ।
ବିଭବ ଶୋଭାର କେ କହୁ ଯେ ବିଚିତ୍ର ବର୍ଣ୍ଣନେ । ୫୬ ।
ବିଭୂଷଣ ନାନାପ୍ରକାରେ ଯେତେ କରନ୍ତି ନିତି ।
ବିଭୂଷଣ ପଣ ତହିଁକି ବଳେ ସୁଦଶାଜ୍ୟୋତି । ୫୭ ।

---

୫୪ଶ ପଦ—ଅଧର ଭୁଲିରେ ବନ୍ଧୁ କରିବାର ଯେଣୁ ଇଚ୍ଛା ଉଳ ତେଣୁ ୧ରକ୍ତକ ଫୁଲ (ବଧୁଲୀଫୁଲ) ଜନି ରେ ବନ୍ଧୁ କ ନାମ ରହିଲା ॥

୫୫ଶ ପଦ—ବଧୁଲୀ ୧ ଅଧର ବୋଲିବା ଯୁକ୍ତ "ବଧୂଲୀପରି ଅଧର ବଧୂଲୀ ଅଧର" ଏ ଅର୍ଥରୁ ଆନ ହୋଇ ଗଲାଣି ? "ବଧୂଙ୍କ ଯେ ହେ ୨ ଅଧର ଅର୍ଥାତ୍ ଓଠ" ଏଣୁ ବଧୂ (ସୀତା) ତାଙ୍କ ଉପରେ ହାସ ପ୍ରକାଶ କରୁଅଛନ୍ତି ।

୫୬ଶ ପଦ—ଓଷ୍ଠ ଯେ (ଅଧର) ସେ ମାଣିକ୍ୟର ପାତ୍ର ହେଲା, ତହିଁ ରେ ଦନ୍ତମାନେ ମୋତିପନ୍ତି ହେଲେ, ସେ ବ (ବିଶେଷରେ) ଉଦ୍ଧି ହୋଇ ଅଛନ୍ତି, ତାହାର ବିଭବ ଶୋଭା (ଶୋଭା ସମ୍ପତ୍ତି) କେ କହୁ, (କେହି ହେଲେ କହି ପାରିବ ନାହିଁ) ଯେଉଁ ଶୋଭା ବର୍ଣ୍ଣନରେ ବିଚିତ୍ର (ଅତି ଆଶ୍ଚର୍ଯ୍ୟ) ହୋଇଅଛି ।୫୬।

୫୭ଶ ପଦ—ସଖୀମାନେ ନିତି ନାନାପ୍ରକାରେ ଯେତେ ବିଭୂଷଣ କରନ୍ତି ତହିଁ କି ସୁଦଶା (ସୀତା) ତାହାଙ୍କର ଜ୍ୟୋତି (ତେଜ) ବିଭୂଷଣ କଲା ପଣ (ମଣ୍ଡନ କଲାପରି) ଦିଶଇ ।୫୭।

---

୧—ରକ୍ତକସ୍ତୁ ବନ୍ଧୁ ତୋ ବନ୍ଧୁଜୀବେତ୍ୟମରଃ ।

୧—ଅଧରସ୍ତୁ ପୁଂସାତ୍ତୋଷ୍ଠେ ସ୍ୱପେଽନ୍ୟେ ତ୍ରୁ ବାଚ୍ୟବତ୍ ଇତି ମେଦିନୀ

୨—ଅଧରଂ କଳ ବନ୍ଧୁକ ମଙ୍କଂ ଫଳମାପ୍ତୁ ।ଦିତ ଭବ୍ୟମନ୍ୟନ୍ତୁଂ ।
ଲଭତେଽଧରବନ୍ଧୁମିତ୍ୟଦଃ ପଦମସ୍ୟା ରଦନଚ୍ଛଦଂ ବଦତ୍ । ଇତି ନୈଷଧେ

ବଦନରେ ଚନ୍ଦ୍ର ଦର୍ପଣ ପଦ୍ମ ନଉଞ୍ଛାଇବା ।
ବଦ ନରେ ଏହି ଉକ୍ତକ ଆନ କ ଲକ୍ଷ ଦେବା । ୫୮ ।
ବର ବର୍ଣ୍ଣିନୀ ରସଲତା ନବପୁଷ୍ପବତୀ ସେ ।
ବରଣ କରିବା ଜନକ କହେ ଯତିଙ୍କ ପାଶେ । ୫୯ ।
ବାରିଲେ ବାଲ୍ମୀକ ଠେକିବ ଯେହ୍ନ ଶିବଧନୁକୁ ।
ବାରିଜଗନ୍ଧାକୁ ପ୍ରଦାନ ନିଷ୍ଟେ କରିବା ତାକୁ । ୬୦ ।
ବୋଧ ଜନକ ହରଧନୁ ସ୍ୱୟମ୍ବର ରଚିତ ।
ବୋଧକର ମୁଖେ ବିଖ୍ୟାତ, ନୃପଗଣେ ଆଗତ । ୬୧ ।

---

୫୮ଶ ପଦ—ବଦନ (ମୁଖ) ଠାରେ ଚନ୍ଦ୍ର ଦର୍ପଣ ପଦ୍ମ ଏମାନଙ୍କୁ ନଉଞ୍ଛାଇ ଦେବା "ବଦନକୁ ଏମାନେ ଉପମା ଭଳି ନୁହନ୍ତି" ବୋଲି ହେ ନରେ (ନରମାନେ) ବଦ (କହ) ଏହି ଉକ୍ତି ଆନ କ ଲକ୍ଷ ଦେବା "କାହୁଁ ଲକ୍ଷ ଦେବାକୁ ନାହିଁ" ।୫୮।

୫୯ଶ ପଦ—ବରବର୍ଣ୍ଣିନୀ (ଉତ୍କୃଷ୍ଟବର୍ଣ୍ଣିନୀ) ରସଲତା (ସୀତା) ନବ ପୁଷ୍ପବତୀ ହେଲେ । ତାହା ଜାଣି ଜନକ ଯତିଙ୍କ ପାଖରେ କହିଲେ ରାଜାଙ୍କୁ ବରଣ କରିବା ।୫୯

୬୦ଶ ପଦ—ଏମନ୍ତ ଶୁଣି ବାଲ୍ମୀକି ଋଷି ବାରିଲେ (ନିଷେଧ କଲେ) ବୋଇଲେ ଯେହ୍ନ ଶିବ ଧନୁକୁ ଠେକିବ ନିଷ୍ଟେ ତାକୁ [୧] ବାରିଜଗନ୍ଧା (ସୀତା) ପ୍ରଦାନ କରିବା । ବାରିଜଗନ୍ଧା ବୋଲିବାରୁ ପଦ୍ମିନୀ ଜାତୀୟା ସ୍ତ୍ରୀ ସୂଚିତ ହେଲା ।

୬୧ଶ ପଦ—ଏମନ୍ତ ବାଲ୍ମୀକି ଋଷିଙ୍କ ବଚନ ଶୁଣି ଜନକ ବୋଧ ହେଲେ, ହରଧନୁ ସ୍ୱୟମ୍ବରକୁ ରଚନା କଲେ । ବୋଧକର (ବୈତାଳିକ-ମାନେ) ତାଙ୍କ ମୁଖରେ ହରଧନୁ ସ୍ୱୟମ୍ବରର କଥା ବିଖ୍ୟାତ କଲେ । ତାହା ଶୁଣି ମିଥିଳା ପୁରକୁ ନୃପଗଣ ଆଗତ ହେଲେ ।୬୧।

---

୧—ଯଦୁକ୍ତଂ କାମଶାସ୍ତ୍ରେ—ପଦ୍ମିନୀ ପଦ୍ମଗନ୍ଧା ଚ ଚିତ୍ରିଣୀ ପୁଷ୍ପଗନ୍ଧା ଚ ।
ଶଙ୍ଖିନୀ ମୀନଗନ୍ଧା ଚ ମଦଗନ୍ଧା ଚ ହସ୍ତିନୀ ।

ବାସ କରନ୍ତୁ ସେହି ସୀତାଲୀଳା ସଦା ମୋ ହୃଦ ।
ବାଷଠୀପଦେ ଉପଇନ୍ଦ୍ର ଭଞ୍ଜ କହେ ଏ ଛାନ୍ଦ । ୬୨ ।

—*—

## ଚତୁର୍ଥ ଛାନ୍ଦ ।

ରାଗ ମାଳବଗଉଡ଼ା ।

ବୃଦ୍ଧି ଉତ୍ତମ ଯାହାର କାବ୍ୟ ଅଭିଧାନେ ।
ବୃଜିନନାଶ ଚରିତ ଶୁଣ ସାବଧାନେ ହେ ।୧ ।
ବୃଷ୍ଟିହୀନ ଦ୍ୱାଦଶ ବରଷ ଚମ୍ପାବନ୍ତୀ ।
ବଣ୍ଡଚନ୍ଦ୍ରା ଲଭି ଲୋମପାଦ ନରପତି ଯେ । ୨ ।
ବରଷା କରିବ ଋଷ୍ୟଶୃଙ୍ଗ ଆଗମନେ ।
ବ୍ରହ୍ମଜ୍ଞାନ ପର ଯେନ ଯୋଗୀନ୍ଦ୍ର ସମାନେ ଯେ । ୩ ।

୬୨ଶ ପଦ—ସେହି ସୀତାଙ୍କ ଲୀଳା ସଦା ମୋ ହୃଦୟରେ ବାସକରୁ । ଉପେନ୍ଦ୍ର ଭଞ୍ଜ ନାମା କବି ଏହି ତୃତୀୟ ଛାନ୍ଦକୁ ବାଅଷଠି ପଦରେ କହିଲେ ।

—୦—

### ଚତୁର୍ଥ ଛାନ୍ଦ ।

୧ମ ପଦ—କାବ୍ୟ(ରଘୁବଂଶାଦି)ଆଉ ନାନାବିଧ ଅଭିଧାନରେ ବୁଦ୍ଧି ଯାହାର ଉତ୍ତମ ଲୋକ ୧ବୃଜିନ (ଦୁଷ୍କୃତ) ନାଶକାରୀ ଚରିତ୍ର (ବିଷ୍ଣୁ-ଚରିତ) ସାବଧାନେ (ଏକମନା ହୋଇ) ଶୁଣ (ଅନ୍ୟମନସ୍କ ନ ହୁଅ) ।୧।

୨ୟ ପଦ—ଚମ୍ପାବନ୍ତୀ ନାମ ପୁରୀ ବ୍ରହ୍ମଶାପରେ ଦ୍ୱାଦଶବର୍ଷ ପର୍ଯ୍ୟନ୍ତ ବୃଷ୍ଟିହୀନ ହେଲା । ଏଣୁ ଲୋମପାଦ ନରପତି (ଉକ୍ତପୁରୀରାଜା) ବଣ୍ଡ ଚନ୍ଦ୍ରାକୁ ଲଭିଲେ । 'ବ୍ରାହ୍ମଣମାନଙ୍କୁ ପଚ୍ଚରନ୍ତେ ସେ କହିଲେ'' ।୨।

୩ୟ ପଦ—"ଋଷ୍ୟଶୃଙ୍ଗ (ବିଭଣ୍ଡକ ଋଷିପୁତ୍ର) ଯେ ଆଗମନ କଲେ ବର୍ଷାକରିବ"ଏମନ୍ତ ବ୍ରାହ୍ମଣମାନଙ୍କବଚନକୁ ବ୍ରହ୍ମଜ୍ଞାନପର ଯୋଗୀନ୍ଦ୍ର ସମାନେ

୧—କଳୁଷଂ ବୃଜନୈନୌଘ ମଂହୋ ଦୁରିତ ଦୁଷ୍କୃତ ମିତ୍ୟମରଃ ।

ବୁଲଇ ନଜନବରେ ପଞ୍ଚରତ୍ନସ୍ଥାଳୀ ।
ବଜ୍ର ଧର ଶତମନ୍ୟୁ ୧ ଗ୍ରସ୍ତେ ସେ ଝଳ ଯେ । ୪ ।
ବକାଶରେ ପଦ୍ମ-ରାଗ ସବତା ପ୍ରଭବ ।
ବହୁଛି ସେ ମାରକଣ୍ଡ ହୋଇ ରତ ଶୋଭ ଯେ ।' ୫ ।
ବଦ୍ରୁମେ ମହାଉଜ୍ଜ୍ୱଳ ଅଟବୀ ସଦୃଶ ।
ବହି ଗର୍ଭେ ମୋତି ଶୁକ୍ତି, ଏ ବିବିଧ ଶ୍ଳେଷ ଯେ । ୬ ।

---

(ଯୋଗୀନ୍ଦ୍ର ସମାନରେ) ଧ୍ୟାନକଲେ । ବ୍ରହ୍ମ ପଦାର୍ଥକୁ ଯୋଗୀନ୍ଦ୍ର ଧ୍ୟାନକଲା ପରି ସେ ରାଜା ବ୍ରାହ୍ମଣଙ୍କ ବାକ୍ୟକୁ ହୃଦୟରେ ଧ୍ୟାନ କଲେ ଏ ତାତ୍ପର୍ଯ୍ୟାର୍ଥ ।୩।

୪ର୍ଥ ପଦ—(ଚତୁର୍ଥ ପଦଠାରୁ ଷଷ୍ଠପଦ ପର୍ଯ୍ୟନ୍ତ ଶ୍ଳେଷୋପମା) ସେ ଶ୍ଲେମପାଦ ନଜନବରେ (ଚମ୍ପାବତୀ ପୁରରେ) ପଞ୍ଚରତ୍ନ ଯୁକ୍ତ ସ୍ଥାଳୀକି (ଥାଳ) ବୁଲାଇଲେ । "ଯେ ଋଷ୍ୟଶୃଙ୍ଗ ଆଣିବ ସେ ଏ ସ୍ଥାଳୀକି ନେବ" । ସେ ସ୍ଥାଳୀ ୧ବଜ (ହୀର) ତାକୁ ଧରିବାରେ ଶତମନ୍ୟୁ (ଇନ୍ଦ୍ର ପରି) ଝଳ ହୋଇଥିଲା । ଇନ୍ଦ୍ର ବଜ୍ର (କୁଳିଶ) ଧରିଅଛନ୍ତି । ଏ ପଦ ଅଭଙ୍ଗ ଶ୍ଳେଷ ହେଲା । ୨ଋଷ୍ୟ (ମୃଗ) ତାହାର ଶୃଙ୍ଗ ପରି ତାହାଙ୍କର ଶୃଙ୍ଗ ଥିବାରୁ ସେ ଋଷିଙ୍କ ନାମ ଋଷ୍ୟଶୃଙ୍ଗ । ୪ । (ଶ୍ଳେଷୋପମା ଛନ୍ଦ ପ୍ରକାର)

୫ମ ପଦ—ସେ ସ୍ଥାଳୀ ପଦ୍ମରାଗ ବକାଶରେ ସବତା (ସୂର୍ଯ୍ୟଙ୍କ ସଦୃଶ) ବହୁଅଛି । ସୂର୍ଯ୍ୟ ପଦ୍ମର ରାଗ (ଅନୁରାଗ) ବକାଶ କରନ୍ତି, ସେ ସ୍ଥାଳୀ ପଦ୍ମ-ରାଗ ମଣିର ବକାଶ ବହୁଅଛି ଏଣୁ ସୂର୍ଯ୍ୟ ସଦୃଶ । ପୁଣି ସେ ସ୍ଥାଳୀ ୧ମାର-କଣ୍ଡ-(ମରକତ-ନାମକ ହରିନ୍ମଣି) ହୋଇ ରତ ଶୋଭାକୁ ବହୁଅଛି । ରତ ମାର (କନ୍ଦର୍ପର) କଣ୍ଠରେ (ସମୀପରେ) ଥାଏ । । ୫ । (ସଭଙ୍ଗ ଶ୍ଳେଷ)

୬ଷ୍ଠ ପଦ—ପୁଣି ସେ ସ୍ଥାଳୀ ଅଟବୀ (ଅରଣ୍ୟ) ସଦୃଶ ହୋଇଅଛି । ଅଟବୀ ଯେରୂପ ବଦ୍ରୁମ (ନବପଲ୍ଲବ) ଗର୍ଭରେ ମହା ଉଜ୍ଜ୍ୱଳ ହୋଇଥାଏ

---

୧— ଦମ୍ଭୋଳିର୍ବ୍ବଳ ପୁଷ୍ପେ ଚ ବଜ୍ରଂ ହୀରେ ମଣ୍ଡାବପି ଇତି ରତ୍ନକୋଷଃ ।
୨—ରୋକଣ୍ଠୀ ପୃଷତଶ୍ଚୈଣ ଋଷ୍ୟଶ୍ଚ ଇତ୍ୟମରଃ ।
୨—ସ୍ୱାର୍ଥେ ଅଣ ପ୍ରତ୍ୟୟଃ । ଗାରୁତ୍ମତଂ ମାରକତ ମଶ୍ମଗର୍ଭ୍ଭ ହରିନ୍ମଣିରିତ୍ୟମରଃ

ବେଶ୍ୟାସାର ଜରତୀ ତା ରତା ହୋଇ ନେଲ ।
ବନୁଁ ଆଜନ୍ମତପସ୍ୱୀ ଆଣିବ ହୋଇଲ ଯେ । ୭ ।
ବୃଷଭ ଗୋଡ଼ାଇ ଧେନୁ ପଛରେ ଯେମନ୍ତ ।
ବେଦାଧ୍ୟୟନ ଛଡ଼ାଇ ଆଣିମି ତେମନ୍ତ ଯେ । ୮ ।
ବର୍ଦ୍ଧକୀ ଡକାଇ ସଜଡ଼ାଇ ଦିଅ ନାବ ।
ବେଶ୍ମ ପରି ମହାମନୋରମ ହୋଇଥିବ ଯେ । ୯ ।
ବିବିଧପଦାର୍ଥ ଭର୍ତ୍ତି କରିଦିଅ ତହିଁ ।
ବନ ରଚନାହିଁ ହୋଇଥିବ, ଭୂପ କହି ଯେ ।

---

ସ୍ୱାତୀ ବିଦ୍ରୁମ (ପ୍ରବାଳ) ତହିଁରେ ମହାଉଜ୍ଜ୍ୱଳ ହୋଇଥାନ୍ତି । ସେ ଶୁ- ମୋତିକ ଗର୍ଭରେ ବନ୍ଧୁଥିବା [୨]ଶୁକ୍ତି (ମୁକ୍ତାସ୍ଫୋଟ) ସଦୃଶ ହୋଇଥାନ୍ତି । ଶୁକ୍ତି ମୋତି (ମୁକ୍ତାକୁ) ଗର୍ଭରେ ବନ୍ଧୁଥାଏ । ୬ । ୦ (ପ୍ରକୃତ ଶ୍ଳେଷ)

୭ମ ପଦ—ବେଶ୍ୟାସାର (ବେଶ୍ୟା ଶ୍ରେଷ୍ଠ) ଜରତୀ ରତା (ଅନୁରକ୍ତ ହୋଇ) ପଞ୍ଚରତ୍ନ ସ୍ଥାନ ନେଲା ବନରୁ ଆଜନ୍ମ ତପସ୍ୱୀ ଋଷ୍ୟଶୃଙ୍ଗଙ୍କୁ ଆଣିବ ଏମନ୍ତ ବୋଲିଲା । ୭ ।

୮ମ ପଦ—ଯେମନ୍ତ ଧେନୁ ପଛରେ ବୃଷଭ ଗୋଡ଼ାଇ ଆସେ ତେମନ୍ତ ବେଦାଧ୍ୟୟନ (ବେଦପଠନ) ଛଡ଼ାଇ ଋଷ୍ୟଶୃଙ୍ଗଙ୍କ ସଙ୍ଗରେ ଆଣିମି ଏମନ୍ତ ପ୍ରତିଜ୍ଞା କଲା । ୮

୯ମ ପଦ—ଏ କଥାରୁ ଜରତୀ କହିଲା ବର୍ଦ୍ଧକୀ (ବଢ଼େଇ) ଡକାଇ ନାବ ସଜଡ଼ାଇ ଦିଅ । ସେ ନାବ ବେଶ୍ମ (ଗୃହ) ପରି ମହା ମନୋରମ ହୋଇଥିବ । ୯ ।

୧୦ମ ପଦ—ପୁଣି ବିବିଧ (ନାନାପ୍ରକାର) ପଦାର୍ଥ ତହିଁରେ ଭର୍ତ୍ତି କରି ଦିଅ । ତହିଁରେ ପୁଣି ବନ ରଚନା ହୋଇଥିବ, ଏମନ୍ତ ଭୂପ (ରାଜାଙ୍କୁ) କହିଲା ।୧୦।

---

୨—ମୁକ୍ତାସ୍ଫୋଟଃ ସ୍ତ୍ରିୟାଂ ଶୁକ୍ତିରମରଃ ।
୦—ଏପାଦ ପ୍ରକୃତ ଶ୍ଳେଷର ଉଦାହରଣ । ଏରୂପେ ନିବିଧ ଶ୍ଳେଷ ।

ବଚସ୍କର ନୃପତି ସାମନ୍ତେ ଭୃତ୍ୟପର ।
ବାର ଦାରକାଖି ଗଲେ ଅନୁକୂଳ କର ଯେ । ୧୧ ।
ବସିଲେ ତରଣୀ ଅଙ୍କେ ତ୍ରସ୍ତା ପର ହୋଇ ।
ବରଜିବା ପୁଷ୍କର ଗମନେ ସେ ଯୋଗାଇ ଯେ । ୧୨ ।
ବିଖ୍ୟାତ ଉଡ଼ୁପ ନାମ ଯୁକ୍ତ ତାରକରେ ।
ବ୍ୟଗ୍ରବନ୍ତ ଗତିକରେ ନିଶି ବିବସରେ ଯେ । ୧୩ ।

୧୧ଶ ପଦ—ସାମନ୍ତଠାରେ ଭୃତ୍ୟପ୍ରାୟ ଶ୍ରୀମପାଦ ତାହାର ବଚସ୍କର ହେଲେ । ଏ ଉତ୍ତାରୁ ୧ବାର ବାରକାଖି (ବାରଜଣ ବେଶ୍ୟା) ଅନୁକୂଳ ଗଲେ ।

୧୨ଶ ପଦ—୧ତ୍ରସ୍ତା (ସୂର୍ଯ୍ୟପ୍ରିୟା) ପର ହୋଇ ତରଣୀ (ନୌକା) ତାହାର ଅଙ୍କ (କୋଳ) ଉପରେ ବସିଲେ । ତ୍ରସ୍ତା ଯେରୂପ ତରଣି (ସୂର୍ଯ୍ୟଙ୍କ) କୋଳରେ ବସିଥାନ୍ତି ତଦ୍ରୂପ ନର୍ତ୍ତକୀ ନୌକା କୋଡ଼ରେ ବସିଲା । ଏ ତରଣୀ (ନୌକା) ୨ପୁଷ୍କର (ଜଳରେ) ଗମନ କରିବାରେ ବିରଜିବାର ଯୋଗାଉଥିଲା ସେ ୩ତରଣି (ସୂର୍ଯ୍ୟ) ପୁଷ୍କର (ଗଗନରେ) ଗମନ କରନ୍ତି । ୧୨ ।

୧୩ଶ ପଦ—ସେହି ନାବର ୧ଉଡ଼ୁପ ନାମ ବିଖ୍ୟାତ ହୋଇଅଛୁ, ଏହା ଯେପରି ୨ତାର (ପାଥ୍ୟମାନ) ୩ଅଳି (ସ୍ତ୍ରୀମାନଙ୍କ ଦ୍ୱାରା) ଅଥବା ଉଡ଼ୁ ସମୂହରେ ଯୁକ୍ତ ହେଲା । ଉଡ଼ୁପ ଚନ୍ଦ୍ର, ତାରକା (ତାରକାସମୂହରେ

୧—ବାରସ୍ତ୍ରୀ ଗଣିକା ବେଶ୍ୟା ଇତ୍ୟମରଃ ।
୧—ତ୍ରସ୍ତା ସୂର୍ଯ୍ୟପ୍ରିୟା କାନ୍ତି ସ୍ତ୍ରୁଦେବମ୍ବ ମହାତପ ଇତି ।
୨—ପୁଷ୍କରଂ ଜଳସ୍ତ୍ରାଗେ ମଦ୍ୟସ୍ତେ ମୁଖେ ଜଳେ ।
ବ୍ୟୋମ୍ନି ଖଡ୍ଗଫଳେ ପଦ୍ମେ ତୀର୍ଥୌ ଷଧିବିଶେଷୟୋରିତ୍ୟମରଃ ।
୩—ତରଣିର୍ଦ୍ୟୁମଣୌ ପୁଂସି କୁମାରୀ ନୌକୟୋଃ ସ୍ତ୍ରୀୟାଂ । ଇତି ମେଦିନୀ ।
୧—ଉଡ଼ୁପ ତୁ ପ୍ଲବେଽସ୍ତ୍ରିୟାଂ ଚନ୍ଦ୍ର ମସ୍ତୀତି ମେଦିନୀ ।
୨—ତାରେ ବାନବଭେଦେ ସ୍ୟାତ୍ ଶାର୍ଯ୍ୟମାତେ ତୁ ଋକ୍ଷକେ ।
୩—ଅଳିଃ ସ୍ୱେତୌ ପଂକ୍ତିମାଲେ ବୟସ୍ୟାୟାଂତୁ ଯୋଷିତି । ଇତି ବିଶ୍ୱଃ ।

ବେନକୂଳେ ମହାରଣ୍ୟ ସତ୍ୟବାକେ ହୀନ ।
ବଘନ ପଶୁସମୂହେ ସତ୍ୟବାକେ ପୂର୍ଣ୍ଣ ଯେ । ୧୪ ।
ବାଜୀ-ଗମ୍ୟ ସ୍ଥାନ ନୋହେ ସର୍ବ ସମୟରେ ।
ବାଜୀରାଜି କ୍ରୀଡ଼ା କରେ ବିଗତଭୟରେ ଯେ । ୧୫ ।

---

ଯୁକ୍ତ ହୋଇଥାଏ । ଏବଂ କଣି ଉତ୍ସବରେ ବ୍ୟଗ୍ର ଗଠକ କରୁଥାଏ ଏ ନାବ ନଣି ଉତ୍ସବରେ ବ୍ୟଗ୍ରଗଠକ ଜଳ (ଏ ପଦ ପ୍ରକୃତ ଶ୍ଳେଷ ହେଲା)। ○

୧୪ଶ ପଦ—(ଏଠାରୁ ପନ୍ଦର ପଦ ପର୍ଯ୍ୟନ୍ତ ବିରୋଧାଭାସ +)

ସେ ନଗର ବେନ କୂଳରେ ମହାରଣ୍ୟ (ମହାବନ) ଅଛି "ସେ ବନ ସତ୍ୟ ବାକରେ ହୀନ ଅଟଇ, ସତ୍ୟ ବାକରେ ପୂର୍ଣ୍ଣ ଅଟଇ" ଏମନ୍ତ ବୋଲନ୍ତେ ବିରୋଧହେଲା 'ବିରୋଧ ପରିହାରେ ତୁ"। ସତ୍ୟବାକ (୧ବ୍ରାହ୍ମଣମାନଙ୍କରେ) ହୀନ (ରହିତ) ଅଟଇ । ସତ୍ୟବାକ (୨ଋଷିମାନଙ୍କରେ) ପୂର୍ଣ୍ଣ ଅଟଇ । ପୁଣି ସେ ବନ ୩ପଶୁ ସମୂହ (ସିଂହାଦି ପଶୁ ସମୂହରେ) ବିଘନ (ତାଧାଶୂନ୍ୟ) ମୃଗାଦି ପଶୁସମୂହରେ ବି (ବିଶେଷ) ଘନ (ସାନ୍ଦ୍ର) ।୧୪।

୧୫ଶ ପଦ—ସେ ବନ ସର୍ବ ସମୟରେ (ଭୂତ ଭବିଷ୍ୟତ ବର୍ତ୍ତମାନ ସମୟରେ) ବାଜୀ ଗମ୍ୟ ସ୍ଥାନ ନୁହଇ । ବାଜୀରାଜି ବିଗତ ଭୟରେ (ଅକୁତୋ ଭୟରେ) କ୍ରୀଡ଼ା କରୁଅଛି । ଏମନ୍ତେ ବିରୋଧ ହେଲା । ପରିହାରେତୁ-ସର୍ବ ସମୟରେ (ଗ୍ରୀଷ୍ମକାଳରେମଧ) ବାଜୀରାଜି (ବାଜୀମାନେ) ତାଙ୍କର ଗମ୍ୟସ୍ଥାନ ନୁହଇ । ଏଣୁ ବାଜୀରାଜି (ପକ୍ଷୀସମୂହ) ବିଗତଭୟରେ କ୍ରୀଡ଼ା କରୁଅଛନ୍ତି ଅର୍ଥାତ ବ୍ୟାଧାଦି ଭୟ ନାହିଁ ।୧୫।

---

○—ବିଭକ୍ତ ପଦବର୍ତ୍ତୀନାଂ ଲିଙ୍ଗସ୍ୟ ବଚନସ୍ୟ ଚ ।
ସ୍ୱପା ପ୍ରକୃତ୍ୟୋରେ ଦେନ ଶେଷାଃସ୍ୟୁଃ ପ୍ରତ୍ୟୟସ୍ୟଚ । ଇତି ସାହିତ୍ୟେ ।
+—ଆଭାସତ୍ୱେ ବିରୋଧସ୍ୟ ବିରୋଧାଭାସ ଇଷ୍ୟତେ । ଇତ୍ୟଲଂକାରେ ।
୧—ଦଳଭୂକ ସତ୍ୟବ୍ରାହ୍ମଣ ଇତି ତ୍ରିକାଣ୍ଡଶେଷଃ ।
୨—ଋଷୟଃ ସତ୍ୟବଚସ ଇତ୍ୟମରଃ ।
୩—ପଶୁମୃଗାଦିକେ ବ୍ୟାଳେ ନାବ୍ୟସ୍ତ୍ରୀଂ ପଶୁଦର୍ଶନେ ।

ବିଶ୍ରାମ ଆଶ୍ରମ କେତେଦୂରେ ନାବ କରି ।
ବାମାକ୍ଷୀ କାମମୋହିନୀ ଯେନ ବାରନାରୀ ଯେ । ୧୬ ।
ବାହାରେ ଋଷି ଜଗଚ୍ଛା ଭ୍ରମରକେଶୀକ ।
ବିଲୋକ ଏମନ୍ତ ବନ, ଏମନ୍ତ ଋଷିଙ୍କି ଯେ । ୧୭ ।
ବିପର୍ଯ୍ୟସ୍ତ ପଲାଶୀରେ ପଲାଶୀରେ ଘନ ।
ବନା ତପ ପ୍ରଭାତପ ପ୍ରଭାରେ ପ୍ରଧାନ ଯେ । ୧୮ ।

---

୧୬ । ୧୭ଶ ପଦ—ଆଶ୍ରମ (ତପୋବନର) କେତେଦୂରେ (ନିକଟରେ) ନାବ ବିଶ୍ରାମ କରି (ଋଷି) ବାମାକ୍ଷୀ (ବାମଲୋଚନା) କାମମୋହିନୀ (କାମଦେବଙ୍କୁ) ଯେନ ବାରନାରୀ (ବେଶ୍ୟାମାନେ) ବାହାର ହେଲେ । ଭ୍ରମର ପରି କେଶ ଯାହାର ଏମନ୍ତ ଜରତାଙ୍କୁ ନାବରେ ଋଷି ଏମନ୍ତ ବନ ଓ ଏମନ୍ତ ଋଷିଙ୍କି ବିଲୋକ (ଦେଖିଲେ) ।୧୬ ।୧୭।

୧୮ଶ ପଦ—ଏଠାରେ ବିରୋଧାଭାସ । ସେ ବନପଲାଶୀରେ ବିପର୍ଯ୍ୟସ୍ତ, ଓ ପଲାଶୀର ଘନ (ସାନ୍ଦ୍ର) ଅଟଇ । ଏମନ୍ତ ବୋଲନ୍ତେ ବିରୋଧହେଲା । ବିରୋଧ ପରିହାରେତୁ-୧ପଲାଶୀ (ବ୍ୟାଘ୍ରମାନେ) ପଲାଶୀ (ରାକ୍ଷସମାନେ) ସେମାନଙ୍କ ଦ୍ୱାରା ବିପର୍ଯ୍ୟସ୍ତ (ବିପର୍ଯ୍ୟସ୍ତ ହୋଇଅଛି ଅର୍ଥାତ୍ ନାହାନ୍ତି) । ପଲାଶୀ (ବୃକ୍ଷମାନଙ୍କଦ୍ୱାରା) ସାନ୍ଦ୍ର ହୋଇଅଛି । "ସେ" ୨ ତପ ପ୍ରଭାବନା ପ୍ରଧାନ ହୋଇଅଛି, ତପ ପ୍ରଭାରେ ପ୍ରଧାନ ହୋଇଅଛି । ଏମନ୍ତ ବୋଲନ୍ତେ ବିରୋଧ ହେଲା । ପରିହାରେ ତୁ-ସେ ବନ ୩ଆତପପ୍ରଭା (ସୂର୍ଯ୍ୟତେଜ) ବିନା (ବିହୀନରେ) ପ୍ରଧାନ ହୋଇଅଛି, ପୁଣି ତପପ୍ରଭାରେ (ଋଷିଙ୍କ ତପସ୍ୟା ପ୍ରଭାବରେ) ପ୍ରଧାନ (ଶ୍ରେଷ୍ଠ) ହୋଇଅଛି ।୧୮।

---

୧—ପଲାଶୀ ବୃକ୍ଷରକ୍ଷସୋ ଇତିବିଶ୍ୱଃ ।
୨—ବନା+ଆତପ =ବନାତପ (ସନ୍ଧି) ।
୩—ପ୍ରକାଶୋ ଦ୍ୟୋତ ଆତପ ଇତ୍ୟମରଃ ।

ବିଭୂତି ବାଞ୍ଛକ ନୋହି, ବିଭୂତି, ବାଞ୍ଛକ ।
ବର୍ଜିତେ କାମ ଉଦୟ, କାମ ଉଦୟକ ଯେ । ୧୯ ।
ବଲ୍ଲିରୀ ଅନ୍ତରେ ଯାଇଁ ଆରମ୍ଭିଲେ ଗୀତ ।
ବଲ୍ଲକୀ ବଜାଇ କଲେ ସପ୍ତସ୍ୱର ଜାତ ଯେ । ୨୦ ।
ବିପ୍ରରେ ରାଗ ସରାଗ ମୁନିର ଜନ୍ମାଇ ।
ବୃଦ୍ଧି ପଞ୍ଚଶରଙ୍କୁ ପଞ୍ଚମସ୍ୱର ଦେଇଁ ଯେ । ୨୧ ।

---

୧୯ଶ ପଦ—ସେ ଋଷି "ବିଭୂତିବାଞ୍ଛକ ନୋହନ୍ତି ବିଭୂତି ବାଞ୍ଛକ ଅଟନ୍ତି" ଏହା ଶବ୍ଦରେ ବିରୋଧାଭାସ ହେଲା । ପରିହାରରେ ଯଥା—[1]ବିଭୂତି (ସମ୍ପତ୍ତି) ଆଦି ବାଞ୍ଛା ନ କରନ୍ତି । ବିଭୂତି (ଭସ୍ମ) ତାକୁ ବାଞ୍ଛା କରନ୍ତି । "ସେ ବର୍ଜିତ କାମ ଉଦୟ, ପୁଣି [2]କାମ ଉଦୟକ ଅଟନ୍ତି" ଏହା କହିଲେ [3]ବିରୋଧାଭାସ ହେଲା । ପରିହାରରେ ଯଥା ବର୍ଜିତ (ତ୍ୟକ୍ତ) ହୋଇଅଛନ୍ତି କାମଉଦୟ (କନ୍ଦର୍ପୋଦୟ) ଯାହାଙ୍କର ଅର୍ଥାତ୍ ନିଷ୍କାମୀ ଅଟନ୍ତି । କାମ । (ଭଗବଚ୍ଚରଣାରବିନ୍ଦ ପ୍ରାପ୍ତି ମନୋରଥ) ତାହାର ଉଦୟକର୍ତ୍ତା ଅଟନ୍ତି ।୧୯।

୨୦ଶ ପଦ—ସେ ବେଶ୍ୟାମାନେ ଯାଇଁ ବଲ୍ଲିରୀ (ଲତା) ଅନ୍ତରେ (ମଧ୍ୟରେ) ଗୀତ (ଗାନ) ଆରମ୍ଭିଲେ । ବଲ୍ଲକୀ (ବୀଣା) ବଜାଇ ସପ୍ତସ୍ୱର (ନିଷାଦାଦି ସାତସ୍ୱର) ତାକୁ ଜାତ କଲେ ।୨୦।

୨୧ଶ ପଦ—ରାଗକୁ (ସ୍ୱରଙ୍କୁ) ବିପ୍ରଂମୁନି (ଋଷ୍ୟଶୃଙ୍ଗଙ୍କ) ସରାଗକୁ ଜନ୍ମାଇ ପଞ୍ଚମ ସ୍ୱରରେ ଗାନ କରିବାରୁ ପଞ୍ଚଶର (କାମଙ୍କୁ) ତାହାଙ୍କର ବୃଦ୍ଧି କରି ଦେଲେ । ୨୧ ।

---

୧—ଭୂତି ର୍ଭସ୍ମନି ସମ୍ପଦିତ୍ୟମରଃ ।
୨—କାମଃ ସ୍ମରେଽଭିଲାଷେ ଚ ଇତି ।
୩—ବିରୋଧାଭାସୋ ଯଥା—
ଭକ୍ତାନାଂ କାମଦ ସ୍ତ୍ରୈଷ୍ଟା ରୂକ୍ଷା କାମଂ ଦହନ୍ନପି ।
ଅପି ଜ୍ଞାନମୟଃ ସ୍ଥାଣୁ ଯସ୍ତମୀଶଂ ସ୍ତୁବେମହି ॥ ଇତ୍ୟଲଙ୍କାରଶେଖରେ ।

ବୃଷପୀଙ୍କ ମୁନିମଣି ଆଶ୍ରୟ ଯେ ଥିଲେ ।
ବୃଷପୀଙ୍କି ମୁନି ମଣି ସମ୍ଭାବନା କଲେ ଯେ ।୨୨।
ବସାଇ ଆସନେ ପୁଚ୍ଛେ କାହିଁ ତପିଗଣ ।
ବସ ମଠ କରି, କହ ମଠ ନ କରିଣ ଧ୍ୱେ ।୨୩।
ବଖାଣ କି କି ମନ୍ତ୍ରକୁ ଜପ କର ଜାଣ ।
ବିଷ୍ଣୁ ଶିବ ସେବା କାହା ଭାବରେ ନିପୁଣ ହେ ।୨୪।
ବିକାଶି ହାସ କଟାକ୍ଷ ଢାଳଣ ରସିକା ।
ବୋଇଲେ ଯେଜଇ ହୋଇ ଫୁଲ୍ଲଇ ନାସିକା ଯେ ।୨୫ ।
ବନେ ତୁମ୍ଭେ ଭ୍ରମ, ଆମ୍ଭେ ବମାରେ ବିଳସୁଁ ।
ବନୌକା ତୁମ୍ଭେ, ବନିତା ଆମ୍ଭେଟି ଏ ବଶୁଁ ଯେ ।୨୬।

---

୨୨ଶ ପଦ—ମୁନିମଣି (ଋଷ୍ୟଶୃଙ୍ଗ) ୧ ବୃଷପୀ (ବୃକ୍ଷ) ତାହାକୁ ଆଶ୍ରୟ କରିଥିଲେ । ବୃଷପୀଙ୍କୁ (ବେଶ୍ୟାଙ୍କୁ) ମୁନି (ଏ ମୁନି ଏମନ୍ତ) ମଣି ସମ୍ଭାବନା (ଗୌରବ) କଲେ ।୨୨।

୨୩ଶ ପଦ—ସେମାନଙ୍କୁ ଆସନେ ବସାଇ ପୁଚ୍ଛିଲେ, ହେ ତପିଗଣ ! ତୁମ୍ଭେମାନେ କାହିଁ ୧ ମଠ କରି ବସ, ତାହା ମଠ ନ କରିଣ କହ ।୨୩।

୨୪ଶ ପଦ—ତୁମ୍ଭେ କି କି ମନ୍ତ୍ର ଜପ କରି ଜାଣ ? ବିଷ୍ଣୁ ସେବା କି ଶିବ ସେବା ? କାହା ଭାବରେ ନିପୁଣ ହୋଇଅଛ ବଖାଣ (କହ) ୨୪

୨୫ଶ ପଦ ଏମନ୍ତ ଶୁଣି ସେ ରସିକାମାନେ ହାସକୁ ବିକାଶି ୧ କଟାକ୍ଷକୁ ଢାଳି ନାସିକାକୁ ଫୁଲାଇ ଯେଜଇ ହୋଇ ବୋଇଲେ ।୨୫।

୨୬ଶ ପଦ—ତୁମ୍ଭେ ବନରେ ଭ୍ରମ (ବୁଲ) ଆମ୍ଭେ ୧ ବମା (ଅଳ୍ପ

---

୧ ବୃଷପ ପାଦପସ୍ତରୁ ଶତ୍ୟମରଃ ।
୧—ମଠଶ୍ଛାତ୍ରାଦି ନିଳୟ ଇତ୍ୟମରଃ ।
୧ ଅପାଙ୍ଗୌ ନେତ୍ରୟୋରନ୍ତୌ କଟାକ୍ଷୋପାଙ୍ଗଦର୍ଶନେ ।ଇତ୍ୟମରଃ।
୧—ବମା ସ୍ତ୍ରୀତା ପ୍ରାପ୍ତା ଯାଭ୍ୟସ୍ତା ବନିତାଃ ।
ଲୁହଂ ବମା ଘନୀଭୂତା କୁଶାଙ୍କୁରକଦମ୍ବିତା । ଇତି ନାଟକେ

ବୋଲିବାର ଷ୍ଟମମନ୍ତ୍ର ଆଦ୍ୟବର୍ଣ୍ଣ ଭିନ୍ନ ।
ବିସର୍ଗ ଚତୁର୍ଥବର୍ଣ୍ଣ ଏକ କରି ଘେନ ଯେ ।୨୭।
ବସନ୍ତ ଆମ୍ଭ ଦେବତା ଶମ୍ଭୁ ହୃଦସ୍ଥଳ ।
ବକ୍ଷୋରୁହ ଉପରେ ଯୋଡ଼ି ଶୀଘ୍ରେ କଲା କୋଳ ଯେ ।୨୮ ।
ବିଭୂତି ଆମ୍ଭ ଦେଶର ବୋଲି ଛଡପର ।
ଦୋଳ ଦେଲା ବୁରି କାମମୋହିନୀ କର୍ପୂର ଯେ ।୨୯।
ବାସାନ୍ତର କରି ଋଷି ଦେଖୁଁ ପୟୋଧର ।
ବୋଇଲେ ହେ ହର-ହର ! ମୋତେ କୃପା କର ତ୍ରେ ।୩୦।

---

ବନରେ) ବିଳସ୍ବ (ବିଳାସ କରୁଁ ) ଏଣୁ ତୁମ୍ଭେ ବନୌକା (ଋଷି) ବୋଲାଅ ଆମ୍ଭେ ବନଜା ବୋଲାଉଁ ।୨୬।

୨୭ଶ ପଦ ମନ୍ତ୍ର ଜପ କରିବାର ଯନ୍ତ୍ରା ପଚାରିଲା ତାହା କହୁଛି । ତୁମ୍ଭେ ବୋଲିବାର ଷ୍ଟମନ୍ତ୍ର "ଶ୍ରମାୟନମଃ" ତୁମ୍ଭ ଦ୍ରି ଅମ୍ଭ ମନ୍ତ୍ର ଆଦ୍ୟବର୍ଣ୍ଣ ମାତ୍ର ଭିନ୍ନ ବାକି ବର୍ଣ୍ଣ ଚତୁର୍ଥ ମନ୍ତ୍ରାକ୍ଷର ଓ ବିସର୍ଗ ଏହା (ଏକ୍କରୂପ) କି କରି ଘେନ (ସେ ଭିନ୍ନ ଆଦ୍ୟ ବର୍ଣ୍ଣକୁ କ କରି ଘେନ) ଅର୍ଥାତ ଆମ୍ଭେ "କାମାୟନମଃ" ଏମନ୍ତ ଜପ କରୁଁ । ଅଥବା "ଓଁ ନମୋଶ୍ରମାୟ" ଏମନ୍ତ ବୋଲିବାର ଚତୁର୍ଥ ବର୍ଣ୍ଣ "ଶ" ତାହାର ଆଦ୍ୟ ବର୍ଣ୍ଣ 'ମ' ତହିଁରୁ ଭିନ୍ନ ହେବ, ଚତୁର୍ଥ ବର୍ଣ୍ଣକୁ କ କରି ଘେନ ଅର୍ଥାତ 'ଓ ' ନମଃ କାମାୟ" ଏ ମନ୍ତ୍ର ଜପ କରୁଁ ।୨୭

୨୮ଶ ପଦ—ଅମ୍ଭ ଦେବତା ଶମ୍ଭୁ ହୃଦସ୍ଥଳ (ବକ୍ଷସ୍ଥଳରେ) ବସନ୍ତି ଏମନ୍ତ କହୁ ସେ କାମମୋହିନୀ ବକ୍ଷୋରୁହ (ସ୍ତନଦ୍ୱୟ) ଋଷିଙ୍କ ଉରରେ ଯୋଡ଼ି ଶୀଘ୍ର କୋଳ କଲା ଅର୍ଥାତ ପ୍ରେମାଲିଙ୍ଗନ କଲା ।୨୮।

୨୯ଶ ପଦ– ଛଡପର (ତହିଁ ଉପରୁ) ଅମ୍ଭ ଦେଶର ବିଭୂତି ଏ ଏମନ୍ତ ବୋଲି କାମମୋହିନୀ କର୍ପୂର ଚୂର୍ଣ୍ଣ ଉପୃତ ବୋଳି ଋଷିଙ୍କ ଅଙ୍ଗରେ ବୋଳି ଦେଲା ।୨୯।

୩୦ଶ ପଦ—ଋଷି ବାସାନ୍ତର କରି ପୟୋଧର (ସ୍ତନଦ୍ୱୟକୁ)ଦେଖନ୍ତେ ଶମ୍ଭୁ ସ୍ଥଳ ଏ, ଏମନ୍ତ ବିଗ୍ରହ ବୋଇଲେ "ହେ ହର ହେ ହର" ମୋତେ କୃପାକରି "କୁଚଦ୍ୱୟରେ ହରଦ୍ୱୟ ଭ୍ରମ ହେଲା" ।୩୦।

ବଳ୍ପିନ ବେଦ ଅର୍ଥକୁ ବହୁଁ ସେ ବଚନେ ।
ବିଧାନ କଲା ମୁଖରେ ଚୁମ୍ବନେ ଚୁମ୍ବନ ଯେ । ୩୧ ।
ବମାଫଳ କବ୍ ପକ୍ୱକଦଳୀ ଭୂଞ୍ଜାଇ ।
ବାଣପୟଃପେଟୀ ପୟଃ ପାନ ସେଁ କରାଇ ଯେ । ୩୨ ।
ବୋଧି ଚତ୍ତ ଏ ଅମ୍ଭ ନର୍ଛ ଘର କବ୍ ।
ବୃଷ୍ୟକାଷ୍ଠ କାମଗଜ ଅଧାମ ପୂରାଇ ଯେ । ୩୩ ।
ବାଢ଼ିଲେ ଯେ ଘୃତପକ୍ୱ ଆମିକ୍ଷା ଅଗ୍ରତେ ।
ବର୍ଣ୍ଣି ପୁଚ୍ଛନ୍ତେ କି ଭୋଜନ କର ସେ ବୋଲନ୍ତେ ଯେ । ୩୪ ।

---

୩୧ଶ ପଦ—ବିଶେଷରେ ଳୀନ ବୋଧ ଅଛି ଏମନ୍ତ ବେଦ ଅର୍ଥକୁ ଋଷ୍ୟଶୃଙ୍ଗ ବଚନରେ କହିଲେ "ନନ୍ଦ ବନହର" "ଉଦ୍ଧରଦ୍ଧ ଦେବ" (ହେ ଏକାନ୍ତବାସି) ଏମନ୍ତ କହିବାରୁ ବିବ୍ରତେ ତାଙ୍କ ମୁଖରେ କାମମୋହିନୀ ଚୁମ୍ବନେ ଚୁମ୍ବନେ ବିଧାନ କଲା (ପୁନଃପୁନଃ ଚୁମ୍ବନ ଦେଲା) । ୩୧ ।

୩୨ଶ ପଦ—ଅମ୍ଭ ବମାଫଳି ଏ, ଏମନ୍ତ କହି ପକ୍ୱକଦଳୀ ଭୂଞ୍ଜାଇଲେ, ବାଣପୟଃପେଟୀ (ବାଣନଡ଼ିଆ) ତାହ ର ପୟ (ଜଳ) ଅଧସ୍ୱାଦୁ ହେବାରୁ ପାନ କରାଇଲେ । ୩୨ ।

୩୩-୩୪ଶ ପଦ—ଏ ଅମ୍ଭର ଆଶ୍ରମର ନର୍ଛର ଘର (ସବତ ଝରପାଣି); ଏମନ୍ତ କହି ମୁନଙ୍କ ଚତ୍ତକୁ ବୋଧ କଲେ, ୧ ବୃଷ୍ୟକାଷ୍ଠ (ବଳକାଷ୍ଠ) କାମଗଜ (ଉନ୍ମେଶ୍ୱର) ତଣ୍ଡିରେ ଅଧ ଅସ୍ୱାଦନ୍ତେ ପୂରାଇ (ମିଶାଇ) ଘୃତପକ୍ୱ ହୋଇଥିବା ୨ ଆମିକ୍ଷା (ଛେନା; ଅର୍ଥାତ୍ ଖଜା) ମୁନଙ୍କ ଅଗ୍ରତେ ବାଢ଼ିଲେ, 'ଭୋଜନ କର' ଏମନ୍ତ କହିବାରୁ ସେ ମୁନି ପଚାରିଲେ ତୁମ୍ଭେ କି ୩ ବର୍ଣ୍ଣି ? (ବର୍ଣ୍ଣିରେ ଭୁମ୍ଭେ କିଅଛ ?) ।୩୩,୩୪।

---

୧—ବୃଷ୍ୟଂ ବର୍ଦ୍ଧି ବଳଷ୍ଟିଦ ମିତ ବୈଦ୍ୟଶାସ୍ତ୍ର ।
୨—ଆମିକ୍ଷା ସାଶ୍ରତୋଷ୍ଣ ଯା କ୍ଷୀରେ ସ୍ୟଦ୍ଧି ଯ ତତଃ ।
୩—ବର୍ଣ୍ଣୀ ଦ୍ୱିଜାଦୌ ଶୁକ୍ଳାଦୌ ସ୍ତୁତୌ ବର୍ଣ୍ଣଂ ତୁ ବୃକ୍ଷରେ । ଇତ୍ୟମରଃ ।

ବିପ୍ର ତୁମ୍ଭେ, ଆମ୍ଭେ ଯାହା ବୋଲୁଅଛୁଁ ତା ଶୁଣ ।
ବିପ୍ରଲବ୍ଧା ଯେନ ଅଷ୍ଟଜାତିରେ ନିପୁଣ ଯେ । ୩୫ ।
ବାଳକାଏ ବୋଲନ୍ତି ମୁନି ଭୁଞ୍ଜି ସ୍ୱାଦୁ ପାଇ ।
ବଟୁ ! ତୁମ୍ଭ ତପ ଧନ୍ୟ ବୋଲି ପ୍ରଶଂସଇ ଯେ । ୩୬ ।
ବଟୁ ଯାହା ବୋଇଲ ପ୍ରମାଣ ଅନୁସାରେ ।
ବାତ୍ସ୍ୟାୟନଶାସ୍ତ୍ର ପଢ଼ା ଗୁରୁ ଛନ୍ତି ଦୂରେ ଯେ । ୩୭ ।
ବେଳାନ୍ତ ହେବାର ଜାଣି, ମେଲାଣି ହେଲୁଁ ଟି ।
ବାରମୁଖ୍ୟେ ଋଷି ଉଠି, ଗଲେ ସେ ପାଛୋଟି ଯେ ।୩୮।

---

୩୫ଶ ପଦ—ଏମନ୍ତ ମୁନି ପଚାରନ୍ତେ ସେ କହିଲେ ତୁମ୍ଭେ ବିପ୍ର (ବ୍ରାହ୍ମଣ) ଅଟ । ଆମ୍ଭେ ଯାହା ବୋଲୁଅଛୁଁ ଶୁଣ । ବିପ୍ରଲବ୍ଧା ଯେନ(ବିପ୍ରରେ ଲବ୍ଧ ହେଲ ଯେଣ) ଅର୍ଥାତ୍ ୧ବିପ୍ରଲବ୍ଧା ନାୟିକାରୁ ଯେନ ଅଷ୍ଟନାୟିକାରେ ନିପୁଣ ଅଟ । ୩୫ ।

୩୬ଶ ପଦ—ବାଳକାଏ (ସ୍ତ୍ରୀମାନେ) ଏମନ୍ତ ବୋଲନ୍ତି ମୁନି ଭୁଞ୍ଜି ତହିଁରୁ ସ୍ୱାଦୁ ପାଇ ପ୍ରଶଂସିଲେ ହେ ୧ ବଟୁ (ହେ ବ୍ରହ୍ମଚାରୀ) ତୁମ୍ଭ ତପସ୍ୟା ଧନ୍ୟ (ଉତ୍ତମ) । ୩୬ ।

୩୭ଶ ପଦ—ବେଶ୍ୟାମାନେ ଏ ପରି କହିଲେ ହେ ମୁନି ! ଆମ୍ଭଙ୍କୁ ତୁମ୍ଭେ ଯାହା ବଟୁ ବୋଇଲ ପ୍ରମାଣ ର ଅନୁସାରେ ସହିତ ହେବାରୁ "ବଟୁ" ହେଲୁ ଆମ୍ଭେ ସମସ୍ତଙ୍କୁ ବଟୁଂ (ଏହି ବାତ୍ସ୍ୟାୟନ ଶାସ୍ତ୍ର କାମଶାସ୍ତ୍ର) ପଢ଼ା ଆମ୍ଭ ଗୁରୁ ଦୂରରେ ଅଛନ୍ତି ।୩୭।

୩୮ଶ ପଦ—ବେଳ ଅସ୍ତ ହେବାର ଜାଣି ଆମ୍ଭେ ମେଲାଣି ହେଲୁଁ ଟି ଏମନ୍ତ କହି ୧ ବାରମୁଖ୍ୟା (ବେଶ୍ୟାମାନେ) ଉଠନ୍ତେ (ମୁନି) ତାଙ୍କୁ ପାଛୋଟି ଗଲେ । ୩୮ ।

---

୧—ଖଣ୍ଡିତା ବିପ୍ରଲବ୍ଧାଭିସାରିକା ପ୍ରୋଷିତଭର୍ତ୍ତୃକା ।
ବିରହୋତ୍କଣ୍ଠିତା ବାସକସଜ୍ଜା ସ୍ୱାଧୀନଭର୍ତ୍ତୃକା ।
କଳହାନ୍ତରିତେତ୍ୟଷ୍ଟୌ ନାୟିକା ରସସମ୍ମତା ଇତି ସାହିତ୍ୟେ ।

ବାଟେ ରହି ରହି କହି ଗଲେ ବାରାଙ୍ଗନା ।
ବାହୁଡ଼ିବା ହେଉ ଆମ୍ଭେ କାଲି ଆସୁଁ ସିନା ଯେ । ୩୯ ।
ବହ୍ନିଳତେ ଆସିବାରେ କରାଇ ନିୟମ ।
ବାହୁଡ଼ିଲେ ଋଷ୍ୟଶୃଙ୍ଗ ଆପଣା ଅଶ୍ରମ ଯେ । ୪୦ ।
ବହିର ପ୍ରଥମ ନାହିଁ ପ୍ରବେଶ ନାଗରୀ ।
ବ୍ୟବସାୟ ଚୟ କହି ବ୍ୟବସ୍ଥିତ କରି ଯେ । ୪୧ ।
ବିଭାଣ୍ଡକ ଆସି ପୁତ୍ରେ ଜାନୁରେ ବସାଇ ।
ଙ୍ଘାଣ-ଋଷ୍ୟ ଅଙ୍ଗରୁ ସୁବାସକୁ ପାଇ ଯେ । ୪୨ ।
ବକତା ସକଳକଥା, କତବେ ହ୍ରଷିତ ।
ବିଭାବରୀ-ଚରୀ ସେ ଭକ୍ଷନ୍ତି ତପି ସୁତ ଯେ । ୪୩ ।
ବ୍ୟବହାର କଲେ ନଷ୍ଟେ ତାହାଙ୍କ ସଙ୍ଗରେ ।
ବାବୁ ହେବୁ ଅଗ୍ନି ପ୍ରୀତି ପତଙ୍ଗ ପ୍ରକାରେ ଯେ । ୪୪ ।

---

୩୯ଶ ପଦ—ହେ ବାରାଙ୍ଗନା (ବେଶ୍ୟାମାନେ) ବାଟରେ ରହି ରହି କହିଗଲେ ଆପଣ ବାହୁଡ଼ିବା ହେଉ ଆମ୍ଭେ କାଲି ଆସୁ ସିନା । ୩୯ ।

୪୦ଶ ପଦ—ବହ୍ନିଳତେ (ନମନ୍ଧିଜନରେ) ତାହାଙ୍କୁ ଆସିବା ଅର୍ଥେ ନିୟମ କରାଇଲେ । ତହିଁ ଉତ୍ତାରୁ ଋଷ୍ୟଶୃଙ୍ଗ ଆପଣା ଅଶ୍ରମକୁ ବାହୁଡ଼ିଲେ ।

୪୧ଶ ପଦ – ନାଗରୀ ( ଚତୁରୀ ) ଅଙ୍ଗନାମାନେ ଯାହିଁ ବହିର (ଦୋଇତ) ପ୍ରଥମ (ତୁଲ୍ୟ) ନାହିଁ ତହିଁରେ ପ୍ରବେଶ ହେଲେ । ବ୍ୟବସ୍ଥିତ କରି ବ୍ୟବସାୟଚୟ (ବ୍ୟବସାୟ ସମୂହକୁ) କହିତା ଘାଟରେ ରହିଲେ । ୪୧ ।

୪୨ଶ ପଦ—ବିଭାଣ୍ଡକଋଷି ତପସ୍ୟା ସ୍ଥାନରୁ ଆସି ପୁତ୍ରକୁ ଜାନୁରେ ବସାଇ ଘ୍ରାଣରେ ଋଷ୍ୟ (ଋଷ୍ୟଶୃଙ୍ଗଙ୍କ) ଅଙ୍ଗରୁ ସୁଗନ୍ଧକୁ ପାଇ ପୁଛିଲେ ।୪୨।

୪୩ଶ ପଦ—ବିଭାଣ୍ଡକ ପୁତ୍ରଙ୍କଠାରୁ ସକଳ କଥା ବକ୍ତବ୍ୟ ହୁଅନ୍ତେ (ଋଷ୍ୟଶୃଙ୍ଗ ସମସ୍ତ ବିଷୟ କହନ୍ତେ) ବିଭାଣ୍ଡକ କତବେ (କପଟରେ) ଏମନ୍ତ ଭାଷିତ (ଭାଷିଲେ) । ସେ ବିଭାବରୀଚରୀ (ରାକ୍ଷସୀ) ତପିସୁତଙ୍କୁ ଭକ୍ଷଣ କରନ୍ତି ତାଙ୍କୁ ବିଶ୍ୱାସ ନ କରିବ । ୪୩ ।

୪୪ଶ ପଦ—ହେ ବାବୁ ! ତାହାଙ୍କ ସଙ୍ଗରେ ବ୍ୟବହାର କଲେ ନଷ୍ଟେ

ବିରୋଧୋକ୍ତି ଜନକର ନ ଘେନିଲେ ଲବ ।
ବୁଜିଲେ ନେତ୍ର ସ୍ୱପନେ ଦେଖି ସେହି ଭାବ ଯେ । ୪୫ ।
ବିଭାବରୀଅନ୍ତ ତାତ ତପସ୍ଥାନେ ଗତ ।
ବଶ କରିଥିଲେ ରମା ଛନ୍ନ ମୁନିସୁତ ଯେ । ୪୬ ।
ବିପ୍ରଲମ୍ଭ ଶୃଙ୍ଗାର ଯେ ଉଦୟ ମାନସ ।
ବାଞ୍ଛି ପୁନଃପୁନଃ ରମା ଚୁମ୍ବନ ଆଶ୍ଳେଷ ଯେ । ୪୭ ।
ବାରବାର ଆଶ୍ଳେଷରେ ନ ଆସେ ହୁଂକାର ।
ବନପ୍ରିୟ ଡାକୁଁ କର୍ଣ୍ଣ ଠେକଇ ସତ୍ୱର ଯେ । ୪୮ ।

---

ଅଗ୍ନିହୋତ୍ର ପ୍ରୀତିକରିବା ପତଙ୍ଗ ପ୍ରକାରରେ ହେବୁ. ଏମନ୍ତ ଭୟ ଦେଖାଇ କହିଲେ

୪୫ଶ ପଦ—ସେ ଋଷ୍ୟଶୃଙ୍ଗ ଜନକର (ପିତାଙ୍କର) ବିରୋଧୋକ୍ତି (ବିରୋଧବଚନ) ଲବମାତ୍ର ନ ଘେନିଲେ ସେ ଯେଉଁ ୧ ଭାବ (ଚେଷ୍ଟା) ତାହାଙ୍କୁ ନେତ୍ର ବୁଜିଲେ ସ୍ୱପ୍ନରେ ଦେଖିଲେ । ୪୫ ।

୪୬ଶ ପଦ—ବିଭାବରୀ ଅନ୍ତ (ପ୍ରଭାତ) ହୁଅନ୍ତେ ତାତ (ବିଭାଣ୍ଡକ) ତପସ୍ଥଳକୁ ଗଲେ, ରମା (ରମଣୀମାନେ) ସେହି ବେଶ୍ୟାମାନେ ମୁନିସୁତ (ଋଷ୍ୟଶୃଙ୍ଗଙ୍କୁ) ବଶ କରିଥିଲେ ସେ ସକାଶୁଁ ସେ ଛନ୍ନ ହେଲେ । ୪୬ ।

୪୭ଶ ପଦ—୧ ବିପ୍ରଲମ୍ଭ ଶୃଙ୍ଗାର (ଚୁମ୍ବନାଦି ଆଶ୍ଳେଷ) ଋଷ୍ୟଶୃଙ୍ଗଙ୍କ ମାନସରେ ଉଦୟ ହେଲା । ତେଣୁ "ସେ" ରମା (ବେଶ୍ୟାମାନେ) ତାହାଙ୍କ ଚୁମ୍ବନ ଆଶ୍ଳେଷକୁ ପୁନଃ ପୁନଃ ବାଞ୍ଛିଲେ । ୪୭ ।

୪୮ଶ ପଦ—ବାରବାର (ପୁନଃପୁନଃ) ଆଶ୍ଳେଷ (ଆଲିଙ୍ଗନ) କରିବାରେ ହୁଂକାର (ହୁଂକୃତ) ନ ଆସିଲା, ବନପ୍ରିୟ (କୋକିଳ) ଡାକନ୍ତେ ବେଶ୍ୟାମାନେ ଡାକିଲେ କି ଭାବି ସତ୍ୱର (ଶୀଘ୍ର) କର୍ଣ୍ଣକୁ ଠେକିଲେ । ୪୮ ।

---

୧—ଭାବଃ ସ୍ୱଭାବାଭିପ୍ରାୟ ଚେଷ୍ଟା ଇତି ମେଦିନୀ ।

୧—ତଦୁକ୍ତଂ କାମଶାସ୍ତ୍ରେ—ଶୃଙ୍ଗାରେ ଦ୍ୱିବିଧଂ ପ୍ରୋକ୍ତଂ ବାହ୍ୟାଭ୍ୟନ୍ତରମେବତା
ତତ୍ରାଦ୍ୟଂ ଚୁମ୍ବନାଶ୍ଳେଷ ନଖଦନ୍ତକ୍ଷତାଦିଭିଃ ।
ଦ୍ୱିତୀୟଂ ତୁ ରତଂ ସଂଜ୍ଞାନ୍ନାମ୍ନା କାରଣକଂ ମତଂ । ଇତି ।

ବାହ ପ୍ରାୟ ଗତ କର ପୁଣି ଲେଉଟଇ ।
ବଳୀବର୍ଦ୍ଦ ଯଥା ଋତୁଧେନୁକୁ ଇଚ୍ଛଇ ଯେ । ୪୯ ।
ବଳାଧ୍ୱନ କରି ଯେନ ଝିଙ୍କାରୁ ଝଙ୍କାର ।
ବାତାୟୁ ତାଳଘଣ୍ଟିରେ ବଶ ପରକାର ଯେ । ୫୦ ।
ବନ୍ଧିବା ଆରମ୍ଭି ଆଣୁ ମନୋଜ-ପୁଳନ୍ଦ ।
ବାଗୁଳ ପ୍ରାୟେ ଜନମ ହେଉଛୁ ଉନ୍ମାଦ ଯେ । ୫୧ ।
ବଢ଼ିବାରୁ ବେଳୁଁ ବେଳ ପ୍ରେମନଦୀ ତହିଁ ।
ବୃଢ଼ି ନାହିଁ ଚେତା ତୃଣ ପରାୟେ ଭାସଇ ଯେ । ୫୨ ।

୪୯ଶ ପଦ ସେ ବେଶ୍ୟାମାନଙ୍କ ବଚନ ବସ୍ତର (ସେ ସ୍ତ୍ରୀମାନେ ଆସୁଛନ୍ତି କି ?) ଏମନ୍ତ ଶବ୍ଦ ଋଷ୍ୟଶୃଙ୍ଗ ବାହ୍ଯ (ଘୋଟକ) ପର ଗତକରୁ ପୁଣି ତାଙ୍କୁ ନ ଦେଖି ଲେ ... ନ୍ତ, ଯଥା (ଯେମନ୍ତ) ୧ ବଳୀବର୍ଦ୍ଦ (ବୃଷଭ) ଋତୁ-ଧେନୁ (ପୁଷ୍ପ ଗାଈକୁ) ଇଚ୍ଛଇ ତଥା (ତେମନ୍ତ) ହେଲେ ।୪୯।

୫୦ଶ ପଦ—ଝିଙ୍କାର ଝଙ୍କାର (ଝିଙ୍କାର ଶବ୍ଦ) ଶୁଣି "ସେ" ବେଶ୍ୟାଙ୍କ ବଳାଧ୍ୱନ ଏ, ଏମନ୍ତ ମନରେ ଘେନଲେ । ବାତାୟୁ (ମୃଗ) ତାଳ ଘଣ୍ଟି ଶବ୍ଦରେ ବଶ ହେଲା ପ୍ରକାର ସେ ଶବ୍ଦରେ ବଶ ହେଲେ ।୫୦।

୫୧ଶ ପଦ—ମନୋଜ (ମନ୍ମଥ) ସେ ୧ ପୁଳନ୍ଦ (ଶବର) ହେଲା "ସେ" ଶର ବନ୍ଧିବାକୁ ଆରମ୍ଭି ଆଣିଲା । ୨ବାଗୁଳ (ବାଉଳ) ପ୍ରାୟ ଉନ୍ମାଦ ଜନ୍ମ ହେଉଅଛୁ । ୫୧ ।

୫୨ଶ ପଦ—ଋଷ୍ୟଶୃଙ୍ଗଙ୍କ ୧ ପ୍ରେମନଦୀ ବେଳୁଁ ବେଳ ବଢ଼ିବାରେ ତହିଁ ଚେତା ବୁଡ଼ି ନାହିଁ ତୃଣ ପ୍ରାୟ ଭାସଇ । ୫୨ ।

୧—ଉକ୍ଷା ଭଦ୍ରୋ ବଳୀବର୍ଦ୍ଦ ଋଷଭୋ ବୃଷଭୋ ବୃଷଃ ।
ବାଜି ବାହାର୍ବ ଗନ୍ଧର୍ବ ଇତ୍ୟମରଃ ।
୧—ଭେଦାଃ କିରାତାଃ ଶବରାଃ ପୁଳନ୍ଦା ମ୍ଲେଚ୍ଛଜାତୟଃ । ଇତ୍ୟମରଃ ।
୨—ସ୍ୟାଦ୍ବଲ୍ଗୁଳସ୍ତୁ ତୁ ଗୁଳୋ ବାଗୁଳୋ ଇତ୍ୟମରଃ ।
୧—ପ୍ରେମା ନା ପ୍ରିୟତାହୃର୍ଦ୍ଦଂ ପ୍ରେମ ସ୍ନେହ ଇତ୍ୟମରଃ ।

ବଳମ୍ବ କାହିଁକି ବେଗ ଆସ ବେଗ ଆସ ।
ବେଳ ବଳଗଲେ ମିଥ୍ୟା ହେଉଛି ଭାଷ ଯେ । ୫୩ ।
ବୋଲି ବୋଲି ଆଶ୍ରମ ପ୍ରାନ୍ତକୁ ସେ ଯେ ଗଲେ ।
ବୃଷାରୂଢ଼େ ଆସିବାର ପଥ ନରୀକ୍ଷିଲେ ଯେ । ୫୪ ।
ବ୍ୟଥିତ ହେବାର ତପୋଧନ ପୁଣ୍ୟ ଆସି ।
ବରଚତୁରୀ ଦେଖନ୍ତି କୁଞ୍ଜୋଦରେ ପଶି ଯେ । ୫୫ ।
ବିସ୍ମୟ ଚିତ୍ତୁଁ ତେଜିଲେ ଗୃହିଁ ବଶହେବା ।
ବାରଣ ପତ୍ରରେ ତରୀ ଟୋପେ ପକାଇବା ଯେ । ୫୬ ।

---

୫୩ଶ ପଦ—ଏମନ୍ତ ବହ୍ୱଳ ହୋଇ ବୋଇଲେ କାହିଁକି ବିଳମ୍ବ ହେଉଅଛି ? ୧ "ବେଗ ଆସ ବେଗ ଆସ" ତୁମ୍ଭ କହିବା ବେଳ ବଳିଗଲେ ଭାଷ (ତୁମ୍ଭକଥା) ମିଥ୍ୟା ହେଉଅଛି, ଏମନ୍ତ ବିଗ୍ଭରି ଶୀଘ୍ର ଆସ । ୫୩ ।

୫୪ଶ ପଦ—ଏମନ୍ତ ବୋଲି ସେ ଋଷ୍ୟଶୃଙ୍ଗ ଆଶ୍ରମ (ତପୋବନ) ପ୍ରାନ୍ତକୁ ଗଲେ । ବୃଷାରୂଢ଼େ (ବୃଷରେ ଆରୋହଣ କରି) ବେଶ୍ୟାଙ୍କ ଆସିବା ପଥକୁ ନିରୀକ୍ଷିଲେ (ଗୃହିଁଲେ) । ୫୪ ।

୫୫ଶ ପଦ—ତପୋଧନ (ଋଷ୍ୟଶୃଙ୍ଗ) ତାହାଙ୍କ ପୁଣ୍ୟବଳରୁ ଆସି ବ୍ୟଥିତ ହେବାର ବରଚତୁରୀ (ମହାଚତୁରୀ) କାମମୋହିନୀ ପ୍ରଭୃତି ବେଶ୍ୟାମାନେ ୧ କୁଞ୍ଜୋଦରେ (କୁଞ୍ଜ ମଧ୍ୟରେ), ପଶି,ଦେଖୁଅଛନ୍ତି ।୫୫।

୫୬ଶ ପଦ—ଋଷ୍ୟଶୃଙ୍ଗଙ୍କ ବେଶ ହେବା ଗୃହିଁ ଚିତ୍ତରୁ ବିସ୍ମୟ ତେଜିଲେ (ନିଃସଂଶୟ ହେଲେ), ବାରଣ (ଗଜ) ପତ୍ର ୧ ତରୀ (ନୌକାରୂପ) ଟୋପରେ ନେଇ ପକାଇବା । ୫୬ ।

---

୧—ବ୍ୟଥିତ ଖାପସା ହେଲ ।
୧—ନିକୁଞ୍ଜ କୁଞ୍ଜୌ ବା କ୍ଲୀବେ ଲତାଦ ପିହିତୋଦର ଇତ୍ୟମରଃ ।
ତପୋଧନାଭ୍ୟଗମସମ୍ଭବା ମୁଦଃ । ଇତ୍ୟଭାରବୀ ।
୧—ସ୍ତ୍ରିୟାଂ ନୌସ୍ତରଣୀ ସ୍ତରୀରିତ୍ୟମରଃ ।

ବୋଧିଦ୍ରୁମଦଳ ଭୁଲ୍ଲି ଚଳୁଦ୍ୱେଗ ଦେଇ ।
ବନ୍ଧଯୁକରିବା ନୃପତିରେ ଧନ ପାଇ ଯେ । ୫୭ ।
ବାହାରନ୍ତେ ପାଞ୍ଚ ତରୁଣୀଏ ଲତାମଧ୍ୟୁଁ ।
ବନ୍ଲୋକ ପାଶେ ମିଳିଲେ ସେ ଆଜନ୍ମସାଧୁ ଯେ । ୫୮ ।
ବାହୁ ଛନ୍ଦାଛନ୍ଦ କାମମୋହିନୀ ସଙ୍ଗର ।
ବିକାର ଅଧିକ ଚୁମ୍ବେ ପୁଲକ ସଞ୍ଚାର ଯେ । ୫୯ ।
ବୋଇଲେ ଜରଛା ଗୁରୁ ନେଉତ ଦର୍ଶନେ ।
ବଜେକର ଥରେ ଉଟଜକୁ କୃପାମନେ ଯେ । ୬୦ ।

---

୫୭ଶ ପଦ—୧ବୋଧିଦ୍ରୁମ ୨ଦଳ (ଅଶ୍ୱତ୍ଥପତ୍ର) ଭଙ୍ଗୁଲି ଆମ୍ଭର ୩ଚଳୁ ଦ୍ୱେଗ ଦେଇ ନୃପତିରେ (ଲୋମପାଦ) ଠାରେ ଧନ ପାଇ ବନ୍ଧସ୍ଥ କରିବା ।୫୭।

୫୮ଶ ପଦ—ଏମନ୍ତ ପାଞ୍ଚ ତରୁଣୀଏ (ଯୁବତୀମାନେ) ଲତା ମଧ୍ୟରୁ ବାହାରିଲେ ତାହାଙ୍କୁ ବନ୍ଲୋକ (ଦେଖି) ୧ ଆଜନ୍ମସାଧୁ (ଋଷ୍ୟଶୃଙ୍ଗ) ତାଙ୍କ ପାଶରେ ମିଳିଲେ । ୫୮।

୫୯ଶ ପଦ—ଋଷ୍ୟଶୃଙ୍ଗ କାମମୋହିନୀ ସଙ୍ଗରେ ବାହୁ ଛନ୍ଦାଛନ୍ଦ ହେବାରୁ ବିକାର ଅଧିକ ହୁଅନ୍ତେ (କାମବିକାରରୁ) ଚୁମ୍ବିଲେ ପୁଲକ (ରୋମାଞ୍ଚ) ସଞ୍ଚାର ହେଲା ୫୯।

୬୦ଶ ପଦ—ଏମନ୍ତ ଦେଖି ସେ ବୋଇଲେ ଆମ ଗୁରୁ (ଜରଛା) ତୁମ୍ଭ ଦର୍ଶନ ଅର୍ଥରେ ନେଉଁ ହୋଇଅଛନ୍ତି ଏଣୁ କୃପାମନରେ ଉଟଜ (ପର୍ଣ୍ଣଶାଳା) ଭଳିକ ଥରେ ବିଜେ କର ସେ ଜରଥ (ନୌକା) ଭଳିରେ ବିଜେ କରିଅଛନ୍ତି ।୬୦।

---

୧—ବୋଧିଦ୍ରୁମ ଶ୍ଚଲଦଲଃ ପିପ୍ପଲଃ କୁଞ୍ଜରାଶନଃ ।
୨—ଦଳଂ ପର୍ଣ୍ଣଂ ଛଦଃ ପୁମାନ୍ ଇତ୍ୟମରଃ ।
୩—ସ୍ତ୍ରିୟାଂ—ମୂର୍ତ୍ତିସ୍ତନୁ ସ୍ତନୂ ଇତ୍ୟମରଃ ।
୧—ସାଧୁବାର୍ଦ୍ଧୁଷିକେ ଚାରୌ ସଜ୍ଜନେ ନାଭିଧେୟବଦପି ମେଦିନୀ ।
ଜନ୍ମରୁ ଆରମ୍ଭି ସଜ୍ଜନ ଅଟନ୍ତି ।

ବ୍ରହ୍ମବଶ ରକ୍ତଶାସ୍ତ ତାଠାରୁ ଜାଣିବ ।
ବାହ୍ମନେ ସମ୍ମତକରି ଚଳିଲେ ସେ ଜବ ଯେ । ୭୧ ।
ବିକ୍ରମି ନଉକାରେ ପ୍ରବେଶ ହେବା ଗୃହିଁ ।
ବାରି ଭରି ଝରା ପାଦ ଧୋଇ ଭୂମ୍ଭୀ କହ୍ନ ଯେ । ୭୨ ।
ବଲ୍କଳ ବୋଲି ପିନ୍ଧାଇ କୌଶେୟ ବସନ ।
ବ୍ୟାଘ୍ରଚର୍ମ ଭ୍ରମରେ ସିନ୍ଧୂଆ ଶଯ୍ୟାମାନ ଯେ । ୭୩ ।
ବିବିଧ ସ୍ଵାଦୁପଦାର୍ଥ କରାଇ ଅଶନ ।
ବନାଇଚୂଳ କୁସୁମେ ଚନ୍ଦନ ଲେପନ ଯେ । ୭୪ ।

---

୭୧ଶ ପଦ—ବ୍ରହ୍ମା ବଶ ସହିଁରେ ଏମନ୍ତ ଯେ ରକ୍ତଶାସ୍ତ ତାକୁ ତାହାଙ୍କ ଠାରୁ ଜାଣିବ । ଏମନ୍ତ କହନ୍ତେ ଋଷ୍ୟଶୃଙ୍ଗ ବ୍ରାହ୍ମଣରେ ସମ୍ମତ କରି ୧ ଜବ (ବେଗରେ) ଚଳିଲେ । ୭୧ ।

୭୨ଶ ପଦ—ବିକ୍ରମ ( ପାଦ ବିକ୍ଷେପ କରି ) ନୌକାରେ ପ୍ରବେଶ ହେବା ଗୃହିଁ ଝରରେ (ସୁବର୍ଣ୍ଣ ପାତ୍ର) ବାରି ଭରି ଋଷ୍ୟଶୃଙ୍ଗଙ୍କ ପାଦ ଧୋଇ ଏ ଅମୃତ ଭୂମ୍ଭୀ ଏମନ୍ତ କହିଲେ । ୭୨ ।

୭୩ଶ ପଦ—ବଲ୍କଳ ବୋଲି ୧ କୌଶେୟ ବସନ ଛୀରୋଦ୍ଭ ପାଟ) ପିନ୍ଧାଇଲେ ବ୍ୟାଘ୍ରଚର୍ମ (ବ୍ୟାଘ୍ରଛାଲିର) ୨ ଭ୍ରମରେ ସିନ୍ଧୂଆପାଟସମ୍ବନ୍ଧି ଶଯ୍ୟା ମାନଙ୍କୁ ଦେଲେ ।

୭୪ଶ ପଦ—ତଦନ୍ତେ ବିବିଧ (ନାନାପ୍ରକାର) ସ୍ୱାଦୁ ପଦାର୍ଥମାନ ଅଶନ (ଭୋଜନ) କରାଇଲେ ପୁଣ, କୁସୁମରେ ଚୂଳ ବନାଇଲେ, ତଦନ୍ତେ ଚନ୍ଦନ ଅଙ୍ଗରେ ଲେପନ କଲେ । ୭୪ ।

---

୧—ଭକ୍ତସ୍ତରସୀ ତୁ ରଥ୍ୟସ୍ୟଦୋଽଜବୋଽଥ ଜତ୍ୟମର ।
୧—କୌଶେୟଂ କ୍ରିମି କୋଶୋତ୍ଥ ମିତ୍ୟମରଃ ।
୨—ଭ୍ରମୋଽମ୍ବୁନିର୍ଗମେ ଭ୍ରାନ୍ତୌ ଭ୍ରମୌ କୁନ୍ଦେଽନଳାକୁଳ ଇତି କୁମୁଦ ।

ବସିଲା ଓଳଗି ପାଶେ ଜରତା ସୁମୂର୍ଦ୍ଧା ।
ବେଷ୍ଟିତା ଲତା ପାଦପେ ପରା କୋଳ ବାହୁ ଯେ । ୭୫ ।
ବାଲ୍ଲା ସେ ପ୍ରଥମରସେ ଚନ୍ଦ୍ର ଗୁଳ ଦେଲା ।
ବାଳ୍କାନେ ଋଷିକୁମାର ଉତ୍ତାନେ ଶୋଇଲା ଯେ । ୭୬ ।
ବାଧୂନନ ଆରମ୍ଭିଲା ପୁରୁଷାୟିତରେ ।
ବନପତି ଉପରେ ହରିଣୀ ଲୀଳା କରେ ଯେ । ୭୭ ।

୦ ୭୫ଶ ପଦ—ସୁମୂର୍ଦ୍ଧା (ସୁମୁର୍ଛା) ଜରତା ଋଷିଙ୍କ ଓଳଗି ପାଶରେ ଯାଇଁ ବସିଲା । ପାଦପ (ବୃକ୍ଷ) ତହିଁରେ ଲତା ବେଷ୍ଟିତ ହେଲାପରି କୋଳ ବାହୁଲା (ମୁନଙ୍କ ବାହୁଦ୍ୱୟରେ ଆଶ୍ଳେଷ କଲା ) ଏଣୁ ଲତାବେଷ୍ଟ ଆଲିଙ୍ଗନ ସ୍ପୃଷ୍ଟ ହେଲା ୦ ।୭୫

୭୬ଶ ପଦ—ସେ ଜରତା ପ୍ରଥମରସରେ (ଶୃଙ୍ଗାରରସରେ) ବାଲ୍ଲା (ପଣ୍ଡିତ) ସେ ଧନ ଯେଉଁ ସ୍ଥାନରେ ଚନ୍ଦ ଥିଲା ତାହା ଜାଣି ଗୁଳ ଦେଲା (୧ ଚନ୍ଦ୍ର ଗୁଳଦେଲା ) ତେଣୁ ଋଷିକୁମାର ବାଲ୍କାନେ (ବାହୁଳରେ) ଉତ୍ତାନ (ଚିତ) ହୋଇ ଶୋଇଲା ।୭୬।

୭୭ଶ ପଦ—ସେ ଋଷ୍ୟଶୃଙ୍ଗ ଉତ୍ତାନ ହୋଇ ଶୁଅନ୍ତେ ଜରତା ପୁରୁଷାୟିତରେ ବାଧୂନନ (ବଧୂ ବନ,ରତି)ଆରମ୍ଭିଲା,କବି ଉତ୍ପ୍ରେକ୍ଷା କଲା,ବନପତି (ସିଂହ) ଉପରେ ହରିଣୀ (ମୃଗୀ) ଲୀଳା କରୁଅଛି କି ? ଏମନ୍ତ ବୋଲନ୍ତେ ବିଷମ ସମାସ୍ୟା ହେଲା, ବନପତି (ବରୁଣ) ଉପରେ ହରିଣୀ (ଲକ୍ଷ୍ମୀ) ଲୀଳା କରୁଅଛି କି ? ଅଥବା ୧ହରିଣୀ (ହେମ ପ୍ରତିମା) ବନ (ରୁଚିର) ପତି (ନାରାୟଣ) ଉପରେ ଲୀଳା କରୁଅଛି କି ? ।୭୭।

୦—ଚତୁଷ୍କଂ ଚାମଶାସ୍ତ୍ରେ —କ୍ଷୀରନୀରଂ ଲତାବେଷ୍ଟଂ ବୃକ୍ଷାରୋହଣକଂ ତଥା ।
ତିଳତଣ୍ଡୁଲକଂ ଚେତ୍ୟାଲିଙ୍ଗନଂ ଚ ଚତୁର୍ବିଧଂ ।ଇତି।
୧—ଚାମଗୁଳକଂ ଯଥା—ଚନ୍ଦ୍ରାକାରେଣ ଚ ଚନ୍ଦ୍ରଃପୁରୁଷୋ ଜପଗ୍ରାହକେ ।
ସ୍ତ୍ରୀଷ୍ଟାନାତ ସ୍ୱବଚ୍ଛେଦନଙ୍ଗୋ ଗୋମୂତ୍ର ସଦୃଶଃ କମାତ୍ ।ଇତି।
୧—ହରିଣୀ ସାଦୃଶୀ ହେମପ୍ରତିମା ହରିତା ଚ ସା ଇତ୍ୟମରଃ ।

ବୈଶ୍ୱାନର ପରେ ନୃତ୍ୟ କରେ ଶୁଭ୍ରାପାଙ୍ଗୀ ।
ବିଷମସମସ୍ୟାକୁଁ ପୂରଣ ଶ୍ଳେଷଭଙ୍ଗୀ ଯେ । ୬୮ ।
ବସୁଁ ଚେତା; ଭାବେ ଅନଅନୁଭବୀ ଯୁବା ।
ବିବୁଧାଳୟୁ ସୁଖ ଯେ ସେହି ଏହି ଅବା ଯେ । ୬୯ ।
ବାଜନ୍ତୀ କଙ୍କିଣୀ ବାଦ୍ୟ ତାଳ ତାଳସ୍ୱନ ।
ବ୍ୟାଖ୍ୟାନ ଧ୍ୱନି ଶ୍ଳେଷ ସେ କରଇ ପ୍ରଧାନ ଯେ । ୭୦ ।

---

୬୮ଶ ପଦ—ବୈଶ୍ୱାନର(ଅଗ୍ନି)ତାହାଙ୍କ ଉପରେ ଶୁଭ୍ରାପାଙ୍ଗୀ(ମୟୂରୀ) ନୃତ୍ୟ କରୁଅଛି କି ? ବୈଶ୍ୱାନର (ବୈଶ୍ୱାନରଋଷି) ତାହାଙ୍କ ଉପରେ ଶୁଭ୍ରାପାଙ୍ଗୀ (ସୁନ୍ଦରାପାଙ୍ଗୀ ) ନୃତ୍ୟ କରୁଅଛି କି ? ଏରୂପେ ଶେଷାର୍ଥରେ ଭଙ୍ଗୀ ହୋଇ ୨ ବିଷମ ସମସ୍ୟା ପୂରଣ ହେଲ '୬୮।

୬୯ଶ ପଦ—ଅନ ଅନୁଭବୀ (ପୂର୍ବରୁ ଅନୁଭବ ନ କରିଥିବା) ଯୁବା (ଋଷ୍ୟଶୃଙ୍ଗ) "ସେ" ତାହାଙ୍କର ଚେତା ବସୁଁ (ବସନ୍ତେ) ଭାବନା କଲେ । ବିବୁଧାଳୟୁ (ସ୍ୱର୍ଗ) ସୁଖ ହେଉ ଏହି ଅବା ୬୯।

୭୦ଶ ପଦ—ସ୍ୱର୍ଗରେ ବାଦ୍ୟମାନେ ବାଜୁଥାନ୍ତି, ତାଳ(ତାଳ) ଆଉ ତାଳସ୍ୱନ ଶୁଭୁଥାଏ ଏପୁରୂଆସ୍ଥିତରେ ବାଜୁଅଛି ଯେଉଁ କଙ୍କିଣୀ (କ୍ଷୁଦ୍ର ଘଣ୍ଟିକା) ସେ ବାଦ୍ୟ ହେଲ, ତାଳ, ତାଳସ୍ୱନ, ଏ ଦୁହିଙ୍କ ଧ୍ୱନି (ଉଚ୍ଚକୃତ ଶବ୍ଦ) ସେ ପ୍ରଧାନ ହୋଇ ଶେଷରେ ବ୍ୟାଖ୍ୟାନ କରଇ । ଉଚ୍ଚକୃତ ଜଘନ ଶବ୍ଦ ସେ ତଳ (ତାଳ) ହେଲ, ଉଚ୍ଚ ତାଳର ହୁଁ ହୁ ଶବ୍ଦ ସେ ଅଳ ସ୍ୱନ ହେଲ ୦ ।୭୦।

---

୧—ଶୁଭ୍ର ମୂର୍ଦ୍ଧୀପ୍ରଶୁକ୍ଳସ୍ତୋଶତ୍ୟମରଃ । ଶୁକ୍ଳାପାଙ୍ଗ ଶିଖାବଳ ଇତି ଯାଦବଃ ।
ଶରଦାତଃ ସୀତାପାଙ୍ଗସ୍ତନ କା ଚଳତ୍ମେଖଳଃ । ଇତି କୋଷାନ୍ତରଂ ।
ଶୁକ୍ଳାପାଙ୍ଗୈଃ ସଜଳନୟନୈଃ ସ୍ୱାଗତଂକୃତ୍ୱା କେକା ।ଇତିମେଘଦୂତେ।
୨—ଭଃ ଶ୍ରୀପତିଃ କା ବିଷ୍ଣୁ ହସାନ୍ୟା ଯୌଗିମୂର୍ତ୍ତିଂ ଚ ମୂର୍ତ୍ତ ବାସୁଦେବଃ ।
୦ ବଦ୍ରଗଧତ୍ୱାମେବ ଉଦ୍ୱସି କଥାୟାମ୍ୟାଚର ତଥା ।
ଯଥା ନ ସ୍ୱାଦାଳୀ କପଟ କରତାଳୀ କଟୁରବଃ ।

ବିବୃଦ୍ଧି ହୁଅଇ ସେହି ସ୍ୱରନାମା ହ୍ରଦେ ।
ବାଦେ ବେଣୀ ହାର ନାଚେ ନଷ୍ଟସ୍ଥ ସେ ବାଦ୍ୟେ ଯେ ।୭୧।
ବାହିଲେ ସ୍ଥଳରଥ କୈବର୍ତ୍ତେ ସେକାଳେ ।
ବାହୁକ ପ୍ରାୟେ ସେ ଦଣ୍ଡଧାରଣେ ବସିଲେ ଯେ । ୭୨ ।
ଖାଟ ରଜ୍ଜୁ ମୀନ କୂର୍ମ ଝିଙ୍କାଜନ ଯୋଖେ ।
ବେନଗେଧେ ମୃଗ ମୃଗୀ ନର ନାରୀ ଦେଖେ ଯେ । ୭୩ ।
ବସ୍ତ୍ରକୁଞ୍ଜ ଚଉଳ ଗୃହରେ ସେ ମଣ୍ଡନ ।
ବିସ୍ମୃତ ରୂପକ ରଥଯାତ୍ରାର ସମାନ ଯେ । ୭୪ ।

---

୭୧ଶ ପଦ—ସେହି ସ୍ୱର ନାମା (ଯେଉଁ ହା ହା ହୁଂ ହୁଂ ଶବ୍ଦକୃତ) ¹ସ୍ୱର ସେ ହ୍ରଦେ (ହ୍ରଦସ୍ଥିତ) ବିବୃଦ୍ଧି ହୁଅଇ (ବଢ଼ଇ) । ସ୍ୱର୍ଗରେ ହାହା ହୁହୁ ଗନ୍ଧର୍ବ ବର୍ତ୍ତି ଅଛନ୍ତି । ସେ କିଙ୍କିଣୀ ବାଦ୍ୟରେ ବେଣୀ (ପ୍ରବେଣୀ) ହାର (ମୁକ୍ତାମାଳା) ଏ ଦୁହେଁ ବାଦେ (ବିବାଦରେ) ନାଚୁଅଛନ୍ତି, ସ୍ୱର୍ଗରେ ହାହା ହୁହୁ ଦେବ ବାଦ୍ୟରେ ବେଣୀ ହାର ଆଦି ଅପ୍‌ସରାମାନେ ବାଦରେ ନୃତ୍ୟ କରୁଥାନ୍ତି ଏ ନଷ୍ଟସ୍ଥ (ନଷ୍ଟେ) ।୭୧।

୭୨ଶ ପଦ—ସେହି ସ୍ୱରୁ ଆହୃତ ଜଳରେ କୈବର୍ତ୍ତି (ଧୀବରମାନେ) ସ୍ଥଳରଥ (ନାବ) ଜଳ ସହିତ ରଥ [illegible] ବାହିଲେ । ସେ ଧୀବରମାନେ ଦଣ୍ଡଧାରଣ କରିବାରେ ବାହୁକ (ସାରଥି) ପ୍ରାୟ ବସିଲେ ।।

୭୩ଶ ପଦ—ଅନ୍ଧରେ ପ୍ରକଟ ହେଲା ଯେମନ୍ତ ଖାଟ (କନ୍ଦର୍ପ) ରଜ୍ଜୁ ହେଲା, ତହିଁରେ ମୀନକୂର୍ମମାନେ ଝିଙ୍କାଜନ (ଓଟାରିବା ଲୋକ) ହେଲେ, ସେମାନେ ଯୋଖା ହୋଇ ଅଛନ୍ତି, ବେନଗେଧ (ବେନାଗାଭ) ତନ୍ତୁରେ ଅବା ମୃଗମୃଗୀ ନରନାରୀ ହେଲେ ସେମାନେ ଦେଖୁଅଛନ୍ତି । ୭୩ ।

୭୪ଶ ପଦ—ସେ ସଲିଳ ରଥ କୁଞ୍ଜ ଗୃହର ଚଉଳ ଏମାନଙ୍କରେ ମଣ୍ଡନ ହୋଇଥାଏ, ଏ ନାବ କୁଞ୍ଜ ଗୃହରେ ମଣ୍ଡନ ହୋଇଅଛି, ଏମନ୍ତ ବିସ୍ମୃତ ରୂପକ ରଥଯାତ୍ରା (ଶ୍ରୀଗୁଣ୍ଡିଚାଯାତ୍ରା) ସମାନ ହେଲା । ୭୪ ।

---

୧—ସ୍ୱର ଶବ୍ଦାରେ ଉତ୍କଳ ବୋଲନ୍ତି । ସ୍ୱଃଶବ୍ଦୋଽପ୍ୟନାବ୍ୟୟୋ
ନପାଦାଦୌ ସ୍ୱରଂ ପଦେ । ଇତି ଶୁଭୁଦାମ୍ବରଃ ।

ବାସର ନଶା ହେବାର ଜଣା ନୋହେ ତହିଁ ।
ବାମା ଦ୍ୱାଦଶେ ଖଟନ୍ତ ରତିରସେ ମୋହି ଯେ । ୭୫ ।
ବେଳାରେ ଲଗିଲା ନାବ ଚମ୍ପାବତୀପୁରେ ।
ବରଷିଲେ, ଋଷି ଝରମାର ଲେଢ଼ିବାରେ ଯେ । ୭୬ ।
ବହିଲା ପ୍ରବାହ ପୂର୍ଣ୍ଣ କେଦାର ହୋଇଲେ ।
ବଭାଣ୍ଡକପୁତ୍ର ପାଶେ ଲୋମପାଦ ମିଳେ ଯେ । ୭୭ ।
ବରଚଲେ ଲକ୍ଷ; ଗଣିକା ସଙ୍ଗେ ଋଷ୍ୟଶୃଙ୍ଗ ।
ବଘାତ ବକ୍ର ସୁହାସ ଯୋଗେ ଦମ୍ଭ ଭଙ୍ଗ ଯେ । ୭୮ ।
ବୟସ୍ଥ ବୃଦ୍ଧାଙ୍କ ଯୋଷା ମହାତପୋବନ୍ତେ ।
ବାଞ୍ଛି କଲ୍ୟାଣ ବସାଇ ରାଜା ଦଣ୍ଡବତେ ଯେ । ୭୯ ।

---

୭୫ଶ ପଦ—ତହିଁ (ସେଠାରେ) ବାସର (ଦିବସ) ନଶା (ରାତ୍ର) ହେବାର ଜଣା ନୋହୁଛି । କାହିଁକି ? ଦ୍ୱାଦଶବାମା (ବାରାଙ୍ଗନାମାନେ) ରତିରସରେ ମୋହିତ କରି ଖଟି ରହିଲେ (ସେବା କଲେ) । ୭୫ ।

୭୬ଶ ପଦ—ଏମନ୍ତେ ନାବ ସେ ଯାଇଁ ଚମ୍ପାବତୀ ପୁର ବେଳା (ସୀମା) ତହିଁରେ ଲଗିଲା । ଋଷି ଝରମାର ଲେଢ଼ିବାରେ ମେଘ ବର୍ଷିଲା ।

୭୭ଶ ପଦ—ମେଘ ବର୍ଷନ୍ତେ ପ୍ରବାହ (ଝର୍ଝର) ବହିଲା, କେଦାର (ଭୂମିଭାଗ) ଜଳରେ ପୂର୍ଣ୍ଣ ହେଲେ ତାହା ଦେଖି ବିଭାଣ୍ଡକ ପୁତ୍ର (ଋଷ୍ୟଶୃଙ୍ଗଙ୍କ) ପାଖରେ ଲୋମପାଦ ରାଜା ମିଳିଲେ । ୭୭ ।

୭୮ଶ ପଦ—ଲୋମପାଦ ରାଜା ଋଷ୍ୟଶୃଙ୍ଗଙ୍କୁ ଦେଖି ଗଣିକା (ଘର୍ଷିତ) ସଙ୍ଗରେ ଲକ୍ଷ ବରଚଲେ । ସୁହାସ (ଈଷଦ୍ଧାସ) ବକ୍ର ହେଲା । ତାହାର ବଘାତ ଯୋଗରେ ଋଷିଙ୍କର ଦମ୍ଭ (ଧୈର୍ଯ୍ୟ) ଭଙ୍ଗ ହେଲା, କାହୁଁକି ନା ବକ୍ରବଘାତରେ ଶିଶୁର ଦମ୍ଭ ଭଙ୍ଗ ହୁଅଇ । ୭୮ ।

୭୯ଶ ପଦ—ମହାତପୋବନ୍ତ (ଋଷ୍ୟଶୃଙ୍ଗ)ତାହାଙ୍କୁ ଯୋଷା (କରଣ୍ଡ!) ପୂର୍ବବୟସ୍ଥମାନ ବୃଦ୍ଧାନ୍ତେ ଋଷି ବୁଝି ରାଜା ଦଣ୍ଡବତ କରନ୍ତେ କଲ୍ୟାଣ ବାଞ୍ଛି ପାଶରେ ବସାଇଲେ । ୭୯ ।

ବିମଳଚିତ୍ତେ ମଣ୍ଡିଲେ ଯାହିଁ ତାର ପୂଷା ।
ବରଦାତା ପୁତ୍ରଦାନେ ହୋମାରମ୍ଭ କର ଯେ । ୮୦ ।
ବାଳକଲ୍ୟାଣିଏ ଶୁଣି ଦଶରଥେ କହ୍ବି ।
ବେଶ୍ୟାଜନରଚିତା-ପ୍ରମୁଖ୍ୟା ଜାଙ୍ଗଳିକ ହୋଇ ଯେ । ୮୧ ।
ବିବର ପର୍ଣ୍ଣକୁଟୀରେ ଥିଲେ ମୁନିନାଗ ।
ବଜାଇ ସପ୍ତକୀ ନାଗେଶ୍ୱର ବାଦ୍ୟ ବେଗ ଯେ ।୮୨।
ବିଭେଦିତ-କୃତ ଶତ୍ରୁ ରସଗୀତ ଗାଇ ।
ବିଧୁଚୂର୍ଣ୍ଣି ମନ୍ଥଧୂଳି ପକାଇ ପକାଇ ଯେ ।୮୩।

୮୦ଶ ପଦ— ଯହିଁ ଋଷ୍ୟଙ୍କୁ ବିମଳ ଚିତ୍ତରେ (ନିର୍ମଳ ମନରେ) ଯାହିଁ ତାର (ଲୋମପାଦର) ପୂଷା (ନଗରୀ) ମଣ୍ଡିଲେ । ପୁତ୍ର ଦାନରେ ବରଦାତା ହୋଇ ହୋମାରମ୍ଭକୁ କଲେ ।୮୦।

୮୧ଶ ପଦ—ବାଳକଲ୍ୟାଣିଏ (ବ୍ରାହ୍ମଣମାନେ) ଶୁଣି (ଲୋମପାଦ ରାଜାଙ୍କ ପୁତ୍ରଦାନରେ ଋଷ୍ୟଶୃଙ୍ଗ ବରଦାତା ହେବେ ଏମନ୍ତ ଶୁଣି) ଦଶରଥଙ୍କୁ କହିଲେ । ଜନରଞ୍ଜା ପ୍ରମୁଖ୍ୟ ବେଶ୍ୟାମାନେ ୧ ଜାଙ୍ଗଳିକ (ବିଷବୈଦ୍ୟ) ହେଲେ ।୮୧।

୮୨ଶ ପଦ—୧ ମୁନିନାଗ (ମୁନିଶ୍ରେଷ୍ଠ) ଋଷ୍ୟଶୃଙ୍ଗ ନାଗ (ସର୍ପ) ହେଲେ । ପର୍ଣ୍ଣକୁଟୀର ୨ବିବର (ବିଳ) ହେଲା, ସେହିଠାରେ ଥିଲେ । ୩ସପ୍ତକୀ (ରସନା) ନାଗେଶ୍ୱର ବାଦ୍ୟ ହେଲା, ତାହାକୁ ବେଗରେ ବଜାଇଲେ । ଏ ପଦ ରୂପକ ହେଲା ।୮୨।

୮୩,୮୪ଶ ପଦ—ରସ ଗୀତ (ମଦତୋଳା ଗୀତ) ହେଲା, ତାକୁ ଗାଇ (ଗାନକରି) ୧ ବିଧୁଚୂର୍ଣ୍ଣି (କର୍ପୂର ଚୂର୍ଣ୍ଣ) "ସେ" ମନ୍ଥଧୂଳି ହେଲା

୧—ବିଷବୈଦ୍ୟ ଜାଙ୍ଗଳିକ ଇତ୍ୟମରଃ ।
୧—ହିଲ୍ଲୀ-ଶାର୍ଦ୍ଦୂଳ ନାଗାଦ୍ୟାଃ ପୁଂସି ଶ୍ରେଷ୍ଠାର୍ଥ ଗୋଚରାଃ ଇତ୍ୟମରଃ ।
୨—ଶୁଷିରଂ ବିବରଂ ବିଳମିତ୍ୟମରଃ ।
୩—ସ୍ତ୍ରୀ କଟ୍ୟାଂ ମେଖଳା କାଞ୍ଚୀ ସପ୍ତକୀ ରସନା ତଥା ଇତ୍ୟମରଃ ।

ବାହାରକୁ ଆଣି ନାବ ପେଡ଼ାରେ ମୁଦିଲ ।
ବଳାସ ବଶ କରିଣ ପୁଣି ଖେଳାଇଲ ଯେ ।୮୪।
ବାରବାମା ଦ୍ୱାର ଭୋଗିମାରେ ସେହି ଯୋଗୀ ।
ବିଗ୍ରହିତ ଏଣିକି ସେ ବୋଲାଇବେ ଭୋଗୀ ଯେ ।୮୫।
ବହି ନାଗରେ ଈଶ୍ୱର ପର ଚମ୍ପାପୁରେ ।
ବସନ୍ତ କୃପାଳୁ ହୋଇ କୁମାର ଦାନରେ ଯେ ।୮୬।

---

ତାକୁ ପକାଇ (ପୁନଃ ପୁନଃ ପକାଇ ପକାଇ) ସେ ମୁନି ନାଗକୁ ଯଷ୍ଟିମୁଷ୍ଟୀ ବିବର ଭିତରୁ ବାହାରକୁ ଅଣି ନାବ ଯେ ୧ପେଡ଼ା ହେଲା ତହିଁରେ ମୁଦିଲେ ପୁଣି ବିଳାସ (ବିହାର) ତହିଁରେ ବଶ କରି ଖେଳାଇଲେ । ୮୩-୮୪ ।

୮୫ଶ ପଦ—ବାରବାମାଦ୍ୱାର (ବେଶ୍ୟାସମୂହ) ସେ ଭୋଗିମା (ସର୍ପିଣୀ) ହେଲେ ତାଙ୍କଦ୍ୱାରା ସେହି ଯୋଗୀ (ରୁଷ୍ୟଶୃଙ୍ଗ) ଯୋଗୀ (ସଂଯୋଗୀ) ହେବାରୁ ବିଗ୍ରହିତ (ବିଗ୍ରହ କଲେ) ଏଣିକି ସେ ଜଣେ ଭୋଗୀ (ସର୍ପ) ବୋଲାଇବେ ଏମନ୍ତ ନୁହେ । ଭୋଗିମା (ସୁଖିମା) ଅନନ୍ତ ଏମନ୍ତ ବାରବାମାମାନେ ତାଙ୍କ ସହିତ ଯୋଗୀ (ଯୁକ୍ତ) ହେବାରୁ ଏଣିକି ୧ଭୋଗୀ (ସୁଖୀ) ବୋଲାଇବେ ·|· ।୮୫।

୮୬ଶ ପଦ—ରୁଷ୍ୟଶୃଙ୍ଗଙ୍କ ଈଶ୍ୱର ପର (ଈଶ୍ୱରଙ୍କ ପରି) ଚମ୍ପାପୁରେ (ଚମ୍ପାବତୀ ପୁରରେ) ବସି ଅଛନ୍ତି । ଈଶ୍ୱର ଯେମନ୍ତ ଚମ୍ପାବନ୍ତ ପୁରରେ ବସନ୍ତି ତଦ୍ରୂପ ଏ ଚମ୍ପାବତୀ ପୁରରେ ବସି ଅଛନ୍ତି । ଈଶ୍ୱରଯେରୂପ ୧କୁମାର (କାର୍ତ୍ତିକେୟଙ୍କ) ଦାନ (ପାଳନରେ) କୃପାଳୁ ଅଟନ୍ତି ତଦ୍ରୂପ ରୁଷ୍ୟଶୃଙ୍ଗଙ୍କ କୁମାର (ପୁତ୍ର) ଦାନରେ (ଦେବାରେ) କୃପାଳୁ ହୋଇ ଅଛନ୍ତି ।

---

୧—ପିଟକଂ ପେଟକଃ ପେଡ଼ା ଇତ୍ୟମରଃ ।

୧—ଭୋଗଃ ସୁଖେ ଧନେ ଗୃହେଃ ଶରୀରେ ଫଣସ୍ତ୍ରୋଭପୀତି ମେଦିନୀ ।

·|· —ସର୍ପର୍ଜା ଦୋଷଗୁଣା ଭବନ୍ତି ।

୧—କୁମାର ସ୍ୟାତ୍ ଶୁକେ ସ୍କନ୍ଦେ ଯୁବରାଜେଽଶ୍ୱବାରକେ ବାଲକେ ଜେତ୍ତି ମେଦିନୀ ।

ବାର୍ତ୍ତା ଶୁଣି ତୋଷ ଭରା ହୋଇ ସୂର୍ଯ୍ୟବଂଶୀ ।
ବଳ ସଜ କରି ଚମ୍ପାପୁରେ ମିଳେ ଆସି ଯେ । ୮୭ ।
ବାଟୁଁ ଲୋମପାଦ ନେଇ ଋଷିଙ୍କି ଭେଟାଇ ।
ବକଶିତହାସ କରି କଲ୍ୟାଣେ ବସାଇ ଯେ । ୮୮ ।
ବପ୍ରୋତ୍ତମ ପୁଚ୍ଛେ ତବ ସର୍ବମଙ୍ଗଳ କି ?
ବୋଲେ ବକଲ୍ପେ ପୁଚ୍ଛିକି ସର୍ବଜ୍ଞ ତୁରନ୍ତ ଯେ । ୮୯ ।

---

ଈଶ୍ୱର ଯେରୂପ ଗଙ୍ଗ (ଜଳେ) ତହିଁରେ ସହିତ ଅଟନ୍ତି ଋଷ୍ୟଶୃଙ୍ଗଙ୍କ ତଦ୍ରୂପ ୧ଗର (ବିଷ) ତହିଁରେ ସହିତ ଅଟନ୍ତି ୦ । ୮୬।

୮୭ଶ ପଦ—ଏମନ୍ତ ବାର୍ତ୍ତା ଶୁଣି ସୂର୍ଯ୍ୟବଂଶୀ (ଦଶରଥ) ସନ୍ତୋଷ ହେଲେ, ସିଦ୍ଧାନ୍ତଂ ତୁଷ୍ଟ ହୋଇ ବଳ (ସୈନ୍ୟ) ସଜ କରି ଚମ୍ପାବତୀ ପୁରରେ ଆସି ମିଳିଲେ ।୮୭।

୮୮ଶ ପଦ—ଲୋମପାଦ ରାଜା ଦଶରଥ ରାଜାଙ୍କୁ ବାଟରୁ ନେଇ ଋଷିଙ୍କି ଭେଟାଇଲେ, ଋଷ୍ୟଶୃଙ୍ଗଙ୍କ ୧ ବକଶିତ ହାସ କରି (ହାସକୁ ପ୍ରକାଶି) କଲ୍ୟାଣ କରି ଦଶରଥଙ୍କୁ ବସାଇଲେ ।୮୮।

୮୯ଶ ପଦ—ବପ୍ରୋତ୍ତମ (ଋଷ୍ୟଶୃଙ୍ଗ) ଦଶରଥଙ୍କୁ ପୁଚ୍ଛାକଲେ, ତବ (ତୁମ୍ଭର) ସର୍ବ ମଙ୍ଗଳ ? ଏମନ୍ତ ପଚ୍ଚାରନ୍ତେ ଦଶରଥ ବୋଇଲେ ଆପଣ ତ ସର୍ବଜ୍ଞ (ତିନିକାଳଜ୍ଞ) ଅଟ ; ମୋହର ସର୍ବ ମଙ୍ଗଳ ଜାଣୁ ଅଛ ? ଅପୂର୍ବ କି ହୋଇ ପଚାରୁ ବିକଳ୍ପ (ଶୁଭାଶୁଭ) ଦୁଇ ଜାଣ ସର୍ବ ମଙ୍ଗଳ କିଂ? ଏମନ୍ତ ପଚାରିଲ ଏଣୁ ମୁଁ ତର୍କୁ ଅଛୁ । ।୮୯।

---

୧—ଗରଂ ଦେହେ ବିଷେ ଶ୍ରେଷ୍ଠେ ବଚନେ ବ୍ୟାଧୌ ଖଗାନ୍ତରେ ଇତିକୁମୁଦଃ
୦—ଏପଦ ଶ୍ଲେଷୋପମା ହେଲା ଯଥା—
ତମାଳ ପତ୍ରାଭରଣା ସ୍ତନତଟ ବିଲସଦ୍ବସ୍ତ୍ରାଃ ।
ବାଳେ ଶ୍ଲେଷାଙ୍କମାଲେୟଂ ସାଲକାନନମୋହିନୀ । ଇତ୍ୟାଳଂକାର ଶେଖରେ
୧—ବିକାଶି ତୁ ବିକସ୍ୱରଃ । ଇତ୍ୟମରଃ । ଫୁଲ୍ଲୋନ୍ମିଦ ବିକସ୍ୱରାଃ ଇତି କାଣ୍ଡଶେଷଃ ।

ବ୍ୟଥା ଜନମୁଁ ବନନ୍ତ ହୋଇଣ ତଦର୍ଥୀ ।
ବରରୂପାଜୀବା ଅଛୁ କହିଦେଲି ଏଥି ଯେ । ୯୦।
ବରାଙ୍ଗନା ସୁନ୍ଦରୀରତନ ତବ ସୁତା ।
ବିବାହ କର ଯତ୍ନେ, ହେବେ ସୁତଦାତା ଯେ ।୯୧।
ବାରବର ଉପଇନ୍ଦ୍ର ଭଞ୍ଜ କହେ ରସ ।
ବସ୍ନାଣୋଇପଦରେ ଏ ଛାନ୍ଦ ହେଲା ଶେଷ ଯେ ।୯୨।



୯୦ଶ ପଦ—ତେଣୁ ବ୍ୟଥା ଜନ୍ମ ହେଉଅଛି ଏମନ୍ତ, ଦଶରଥ ଋଷ୍ୟ-ଶୃଙ୍ଗଙ୍କୁ କହୁ ତଦର୍ଥୀ (ପୁତ୍ରାର୍ଥୀ ହୋଇ) ତାଙ୍କୁ ବନନ୍ତ କହନ୍ତେ ଅଥବା ନାଥ ତଦର୍ଥୀ (ପୁତ୍ରାର୍ଥୀ) ହୋଇ ବ୍ୟଥା ଜନମୁଛି ଏମନ୍ତ ଦଶରଥ କହନ୍ତେ ୧ବରରୂପାଜୀବା (ରୂପାଜୀବାବର-ଶ୍ରେଷ୍ଠ ବେଶ୍ୟା, ନର୍ତ୍ତକୀ) ସେ କହିଦେଲ । ଏଥି (ଚମ୍ପାବତୀପୁରେ) ଅଛି ।୯୦।

୯୧ଶ ପଦ—ବରାଙ୍ଗନା (ଶ୍ରେଷ୍ଠାଙ୍ଗନା) ସୁନ୍ଦରୀରତ୍ନ (ସୁନ୍ଦରୀମଣି) ତବ ସୁତା ତାହାଙ୍କୁ ଯତ୍ନେ (ଋଷ୍ୟଶୃଙ୍ଗଙ୍କୁ) ବିବାହ କର । ଏ ତୁମ୍ଭର ସୁତଦାତା ହେବେ ।୯୧।

୯୨ଶ ପଦ—ବାରବର ପଦ ଯାହାର, ଉପେନ୍ଦ୍ର ଭଞ୍ଜ ନାମ ଯାହାର ଏମନ୍ତ ଯେ ଭଞ୍ଜ କବି ସେ ଯେଉଁ ରସ (ଶୃଙ୍ଗାରରସ) ଏହାକୁ କହିଲେ । ଏ ଚତୁର୍ଥ ଛାନ୍ଦ ବସ୍ନାଣୋଇ ପଦରେ ଶେଷ ହେଲା ।୯୨।



୧—ବାରସ୍ତ୍ରୀ ଗଣିକା ବେଶ୍ୟା ରୂପଜୀବା ଇତ୍ୟମରଃ ।

# ପଞ୍ଚମ ଛାନ୍ଦ ।

## ରାଗ ମଙ୍ଗଳ ଗୁର୍ଜରୀ ।

ରଘୁକୁଳବଂଶୀ ଶୁଣି ପୁଲକ ବହି । ରଘୁକୁଳ ଲଗ୍ନରୁଦ୍ଧି ବଶିଷ୍ଠେ କହି । ୧ ବିନ୍ୟାସ କଲେ ସେ ବାଣୀ ସନ୍ଧ୍ୟାବସାନେ । ବସାଇବା ମଣ୍ଡପରେ କନ୍ୟା ସୁମନେ ।୨। ଵିଜନ ସ୍ଥାନରେ ବସି ବେଢନ୍ନୃପେନ୍ଦ୍ର ବିବିଧସମ୍ଭାର କରି ନଗମଣ୍ଡାନ୍ତ ।୩। ବାସଙ୍ଗରସ ନବ୍ୟାନୁଭବୀ ଭ୍ରମର ।

## ପଞ୍ଚମଚ୍ଛନ୍ଦ ।

୧ମ ପଦ—ରଘୁକୁଳବଂଶୀ (ଦଶରଥ) ଜରତା ଜହୁତା ଜଥା ଶୁଣି ଅଙ୍ଗରେ ପୁଲକ (ରୋମାଞ୍ଚ) ବହି (ସନ୍ତୁଷ୍ଟ ହୋଇ) ବଶିଷ୍ଠଙ୍କୁ କହିଲେ, ବିଷଲଗ୍ନ ରୁଦ୍ଧି ଋଷ୍ୟଶୃଙ୍ଗଙ୍କୁ ଶାନ୍ତା କନ୍ୟାକୁ ବିବାହ କର । ପ୍ରଥମ ପଦେ ଅନ୍ୱୟ ଏମନ୍ତ କହିଲା ।୧।

୨ୟ ପଦ—ଦଶରଥ ଏମନ୍ତ କହିବାର ଶୁଣି ବଶିଷ୍ଠ ବାଣୀ (ବଚନ) ବିନ୍ୟାସ କଲେ (ନିଯୁକ୍ତ କଲେ) ଅର୍ଥାତ କହିଲେ । ୧ ସନ୍ଧ୍ୟାବସାନରେ (ସନ୍ଧ୍ୟାକାଳ ପରେ) କନ୍ୟାକୁ ମଣ୍ଡପରେ ବସାଇବା ସୁମନେ (ସ୍ୱର୍ଣ୍ଣ ମନରେ) ସନ୍ଧ୍ୟାପରେ ବେଦୀରେ ବସାଇବା । ଏମନ୍ତ ବଶିଷ୍ଠ କହନ୍ତେ ଦଶରଥ ଶୁଣି ସେଠାରୁ ଗଲେ ।୨।

୩ୟ ପଦ—ବେଢ ନୃପେନ୍ଦ୍ର (ଦଶରଥ ଓ ଲୋମପାଦ)ବିଜନସ୍ଥାନରେ (ନିର୍ଜନ ସ୍ଥାନରେ) ବସି ବିବିଧ (ନାନାପ୍ରକାର) ୧ ସମ୍ଭାର ନିର୍ମାଣ କରି ୨ନଗ (ନଗର) ମଣ୍ଡିଲେ ।୩।

୪ଥ ପଦ—ବାସଙ୍ଗ (ବାସଙ୍ଗପୁଷ୍ପ) ରସରେ ନବ୍ୟାନୁଭବୀ (ନୂତନ ଅନୁଭବୀ) ଭ୍ରମର ବାରଜବାର୍ଦ୍ଧି (ପଦ୍ମବନ) ଲଭିଲେ ଅନ୍ୟର ଲୁବ୍ଧ କି ?

୧—ସନ୍ଧ୍ୟାକାଳେ ଶୁଭକର୍ମ ନିଷେଧଃ ।

୧—ସମ୍ଭାରଃ ସର୍ବପୂର୍ତ୍ତିରୁମିତ ନିକାଣ୍ଡ ଶେଷଃ ।

୨—ନଗର ଶବ୍ଦକୁ ଏଠାରେ ନଗ ବୋଲିବାର ଲଘୁଗୀତରେ ଦୋଷ ନୁହଇ

ବାରଜବାସ ଲଭ କ ନୋହେ ଆତୁର । ୪ବାରସ୍ତ୍ରୀକି ପୁଚ୍ଛି ଏକା-
ନ୍ତରେ ତା କାନ୍ତ । ବର୍ଦ୍ଧନ ଅର୍ଥେନମେ ସେ ଶୋଭୁକଥିତ ।୫। ବଲକ୍ଷ
ପାଶ ପାଟଳୀ ସାରସ ପାଳ । ବାହୁ ଶ୍ରବଣ ଉଦର ଗଣ୍ଡରେ ଦଳ।୬
ବକ୍ଷୋଜ ନତମ୍ବ ଚକ୍ରେ ପକାଇ ଡକା । ବିଭ୍ରମ ଭ୍ରମରେ ଲକ୍ଷନାଭି

ଅର୍ଥାତ ଆତୁର ହୁଅନ୍ତି, ଏମନ୍ତ ଶିରଶ୍ଚାଳନ । ତଦ୍ ପ ବେଶ୍ୟା ସଙ୍ଗ ପାଇ ଷ୍ଟବା ସୂତ୍ର ଚକ୍ରବର୍ତ୍ତିପୁତ୍ରୀ (ଶାନ୍ତା କନ୍ୟା) ସଙ୍ଗଦ୍ଧକ ଲଭିବା ଅର୍ଥେ ଶ୍ରେୂଚ ହେଲେ ।୪।

୫ମ ପଦ—ଶାନ୍ତା କନ୍ୟା ଆମ୍ଭଙ୍କ ଭଗ୍ନୀ ହଉବ ଏମନ୍ତ ଋଷ୍ୟଶୃଙ୍ଗ ଶ୍ରେଣି ଦାବଢ଼ୀ (ଜଡତାକୁ) ଏକାନ୍ତରେ ସେ ଶାନ୍ତା କନ୍ୟାର ୧ କାନ୍ତ (ମନୋରମ) ସ୍ୱରୂପ ? ପଚାରୁଥିଲେ । ସେ ବେଶ୍ୟା, କମରେ ବର୍ଦ୍ଧନ ହୋଇଥିବା ଅର୍ଥ କମ ଛନ୍ଦିରେ ଏମନ୍ତ ଶୋଭକୁ କହିଲ ।୫।

୬ଷ୍ଠ ପଦ—ପାଶ ପାଟଳି ସାରସ ୧ପାଳି ଏମାନଙ୍କ ଶୋଭରେ ଦଳିଅଛୁ । ଯାହାର ବାହୁ ଶ୍ରବଣ ଉଦର ଗଣ୍ଡ ଅର୍ଥାତ୍ ବାହୁ ଶୋଭରେ ପାଶୋପମ ଦଳିତ ହୋଇଅଛୁ,ଶ୍ରବଣ ଶୋଭରେ ପାଟଳୀ ପୁଷ୍ପୋପମା,ଉଦର ଶୋଭରେ ସାରସ (ପଦ୍ମ ବନ), ଗଣ୍ଡ ଶୋଭରେ ଖଡଗପାଳି ଦଳିତ ହୋଇଅଛୁ, ଏଣୁ ସେ ବଳଞ୍ଚ ଅର୍ଥାତ୍ ସ୍ୱରୂପ ।୬। ପାଳି-ଦନ୍ତଭ୍ରି

୭ମ ପଦ—ବକ୍ଷୋଜ(ସ୍ତନ)୧ନତମ୍ବ (କଟିପଶ୍ଚାଭାଗ) ଏଦୁହେଁ ଶୋଭରେ ଅଧିକ ହେବାରୁ ୨ଚକ୍ର (ଚକ୍ରବାକ) ଚକ୍ର (ରଥାଙ୍ଗ) ଏଦୁହେଁ ଡ଼କାପକାଉ ଅଛନ୍ତି । ଅର୍ଥାତ୍ ସମାନ ନୁହନ୍ତି । ନାଭି(ନାଭିମଣ୍ଡଳ)୩ଭ୍ରମ (ଜଳଭ୍ରମରେ) ୪ଅଳକା (ଚୂର୍ଣ୍ଣକୁଂତଳ) ଭ୍ରମର (ଭୃଙ୍ଗ) ମାନଙ୍କରେ ଲକ୍ଷ ରୂପସ୍ବରେ ବିଭ୍ରମ କରୁଅଛୁ ।୭।

୧—କାନ୍ତ ମନୋହରଂ ରୁଚ୍ୟଂ ମନୋଜ୍ଞଂ ମଞ୍ଜୁ ମଞ୍ଜୁଲଂ ଇତ୍ୟମରଃ ।
୧—ପାଲିଃ କର୍ଣ୍ଣଲତାଗ୍ରେ ଽଶ୍ରୌ ପଂକ୍ତାବଙ୍କ ପ୍ରଦେଶୟୋଃ । ଇତି ମେଦିନୀ ।
୧—ପଶ୍ଚାନ୍ନିତମ୍ବଃ ସ୍ତ୍ରୀକଟ୍ୟାଂ ଇତ୍ୟମରଃ ।
୨—ଚକ୍ରଃ କୋକେ ପୁମାନ କ୍ଲୀବଂ ବ୍ରଜେ ସୈନ୍ୟରଥାଙ୍ଗୟୋରିତି ମେଦିନୀ ।
୩—ଭ୍ରମୋଽମ୍ବୁନିର୍ଗମେ ଭ୍ରାନ୍ତୌ କୁନ୍ଦଭ୍ରମଣୟୋରପୀତି ଚ ମେଦିନୀ ।
୪—ଅଳକା ଶ୍ଚୂର୍ଣ୍ଣକୁଂତଳା ଇତ୍ୟମରଃ ।

ଅଳକା । ୭ । ବସ୍ତୀର୍ଣ୍ଣରେ ଶୋଭେଁ ରମ୍ଭାପ୍ରଭାକୁ ଗଞ୍ଜି । ବୃଶାଳ ଊରୁ ଯୁଗଳ ଚରମ ରାଜ ।୮। ବଘଟିତ ହର ଓଷ୍ଠେ ପ୍ରାତୋଦୟରେ । କ୍ଷୀଣ କଟି ନାସିକା ମଧୁରଗିରେ ।୯। ବଲକ୍ଷିତ ଚନ୍ଦ୍ରହାସେ ତନୁ-ଶୀତଳେ । ବର୍ଣ୍ଣ ସୁଲପନ ରୋମାବଳୀର ତୁଳେ ।୧୦।ବାଳଭ୍ରୂଲତା

୮ମ ପଦ—ଯେ ଶାନ୍ତା କନ୍ୟାର ଶୋଭା ଉଦ୍ୟାଦରେ (ରମ୍ଭା ଅପ୍ସରାକୁ ଗଞ୍ଜିଅଛୁ, ବୃଷାଳ ଊରୁଯୁଗଳ ରମ୍ଭା (କଦଳୀ) ଶୋଭାକୁ ଗଞ୍ଜିଅଛୁ ୨ ଚରମ (ପୃଷ୍ଠଭାଗ) ଶୋଭା ବସ୍ତୀର୍ଣ୍ଣ ହେବାରେ ୩ ରାଜ (ପର୍ବତ, କାନ୍ତ) ଗଞ୍ଜି ରାଜ (ଶୋଭିତ ହୋଇଅଛୁ) । ୮ ।

୯ମ ପଦ—ପ୍ରାତୋଦୟରେ (ପ୍ରାତଃତୋଦୟରେ) ୧ ହର (ସୂର୍ଯ୍ୟ) ଓଷ୍ଠକୁ ବଘଟିତ ହେଉଅଛୁ । କ୍ଷୀଣ (କ୍ଷୀଣ) କଟୀକ ହର (ସିଂହ) ବଘଟନ (ବଘଟିତ) ହୋଇଅଛୁ, ନାସିକାକୁ ହର (ଶୁକ) ବଘଟିତ ହେଉଅଛୁ. ମଧୁର ଗିର (ମାଧୁର୍ଯ୍ୟବଚନକୁ) ହର (କୋକିଳ) ବଘଟିତ ହୋଇଅଛୁ । ଭାବ-ମାନେ ବାଳସୂର୍ଯ୍ୟ, କଟିର କ୍ଷୀଣତାରେ ସିଂହ, ନାସିକାର ସୁଷମାରେ ଶୁକ ସ୍ୱର ମାଧୁର୍ଯ୍ୟରେ କୋକିଳ ଲକ୍ଷ ନୁହେଁ ଏ ତାତ୍ପର୍ଯ୍ୟାର୍ଥ ।୯।

୧୦ମ ପଦ— ଚନ୍ଦ୍ର (କର୍ପୂର) ତାହାର ହାସକୁ ବଲକ୍ଷିତ (ଅଲକ୍ଷିତ) ଅଟଇ, ତନୁଶୀତଳକୁ ଚନ୍ଦ୍ର (ଜଳ) ଅଲକ୍ଷିତ. ବର୍ଣ୍ଣକୁ ଚନ୍ଦ୍ର (ସୁବର୍ଣ୍ଣ) ଅଲକ୍ଷିତ, ସୁଲପନ (ଶୋଭନବଦନକୁ) ଚନ୍ଦ୍ର (ଚନ୍ଦ୍ରମା) ଅଲକ୍ଷିତ,ତାହାର ରୋମାବଳୀ ତୁଳରେ ଚନ୍ଦ୍ର (କାମକ୍ଷିଳତା) ଅଥବା ଚନ୍ଦ୍ର(ମୟୂରପୁଚ୍ଛ) ଅଲକ୍ଷିତ ଅଟେ । ୧୦ ।

୧—ରମ୍ଭା କଦଳ୍ୟପ୍ସରସୋର୍ଦ୍ଧଧ ମେଦିନୀ ।
୨—ପୃଷ୍ଠ ରୁ ଚରମସ୍ତନୋରଭ୍ୟମଃ ।
୩—ଯଥା — ଚମ୍ପା-ମହାସ୍ଥାନସ୍ଥନାସ୍ଥାମ୍ନୀ ଊଜରୁ କାପି ଯତ୍ତାସ୍ତେବା-
ସ୍ତ୍ରୁକସ୍ୟ ପରମେଷ୍ଠିରୂଷ୍ଟରମତ ମୂର୍ତ୍ତିନୀ ପଙ୍କ୍ତିତା । ଇତି ।
୧—କୃଷ୍ଣେ କୋକିଳ ଷଟ୍‌ପଦେ ଖଗେ ତଳେ ସର୍ପେ ମୃଗେ ବାଜିଷେ
ଚନ୍ଦ୍ରେ ସର୍ପ ତଥା ବର୍ଦ୍ଧନ ଜଳଧରେ ମେଘ କମ୍ଭେକେ କପୌ ।
ଯଜ୍ଞେ ଶଙ୍କରସିଂହ ଭ୍ରମର ଯମେ ଦେବେ ଭବେ ଯାରଣେ
ବାହ୍ୟ ସ୍ତ୍ରୀ ମରୁଦନ୍ତ ସୂତ୍ରରକଳେଶଯ୍ୟାସୁ ଧର୍ମେ ହରଃ । ଇତି ଶବ୍ଦମାଳା

ଲୋଚନ ଗମନ ଗଳା । ବପୁସୁଗନ୍ଧେସାରଙ୍ଗେ ନୋହୁବେ ତୁଳା ।୧୧। ବିଧାତା ଶୋଭା ବଧ'ନେ ଶାନ୍ତସେ ଶାନ୍ତା । ବୋଲି ମଉନ ହୋଇଲି ବାରବନିତା ।୧୨। ବିଧୁନ୍ତୁଦପ୍ରାୟହୋଇସନ୍ଧ୍ୟାଆସିଲି । ବିବସ୍ୱାନଗ୍ରାସୀ ରଙ୍ଗଭିବ ବିଶିଲି ।୧୩। ବାଳୀ ସେ କାଳୀ ପିଧାନ୍ନି କି ପାଟଶାଢ଼ୀ । ବହିଲେ କି ସରସ୍ୱତୀ କାଳନ୍ଦୀ ଜଡ଼ି । ୧୪ । ବନଜାଶ କର କହ୍ଲୁ

୧୧ଶ ପଦ—ତାହାର ବାଳ (କେଶ) ଭ୍ରୂଲତା (ଭ୍ରୂବଲ୍ଲୀ) ଲୋଚନ (ନେତ୍ର) ଗମନ (ଗତି) ଗଳା (କଣ୍ଠ) ବପୁସୁଗନ୍ଧ (ଶରୀରାମୋଦ) ଏମାନଙ୍କ ହାଙ୍କରେ ୧ସାରଙ୍ଗ (ମେଘ), ସାରଙ୍ଗ (ଧନୁ). ସାରଙ୍ଗ (ମୃଗ, ଚନ୍ଦନ) ସାରଙ୍ଗ (ମତଙ୍ଗଜ), ସାରଙ୍ଗ (ଶଙ୍ଖ), ସାରଙ୍ଗ (ପଦ୍ମ) ଏମାନେ ତୁଳ ନୋହୁବେ (ସମାନ ନୋହୁବେ) ୧୧।

୧୨ଶ ପଦ—ବିଧାତା ଏ କନ୍ୟାକୁ ବଧ ନ କରିବାରେ ଶାନ୍ତ ହେଲା, ଏହା ଶୋଭା ବଧ ନ କରି ଶାନ୍ତ ହେବାରୁ ଏ କନ୍ୟା ନାମ ଶାନ୍ତା ହେଲା । ଏମନ୍ତ ବୋଲି ବାରବନିତା (ଜାରଜା) ମୌନ ହୋଇ ରହିଲା ।୧୨।

୧୩ଶ ପଦ—ଏହି ସମୟରେ ସନ୍ଧ୍ୟା (ସାୟଂକାଳ) ବିଧୁନ୍ତୁଦ (ରାହୁ) ପ୍ରାୟ ଆସିଲା, ବିବସ୍ୱାନଗ୍ରାସୀ ହୋଇ (ସୂର୍ଯ୍ୟଙ୍କୁ ଗ୍ରାସ କରି) ରଙ୍ଗଭିବ ବିଶିଲା (ରଙ୍ଗବର୍ଣ୍ଣ ହେଲା) ରାହୁ ସୂର୍ଯ୍ୟଙ୍କୁ ଗ୍ରାସ କଲେ ରଙ୍ଗ ଦିଶଇ ଏ ସନ୍ଧ୍ୟା ସେହିରୂପ ରଙ୍ଗ ଦିଶିଲା ।୧୩।

୧୪ଶ ପଦ—ସେ ସନ୍ଧ୍ୟା କାଳବାଳୀ (କୃଷ୍ଣବର୍ଣ୍ଣାଙ୍ଗନା) ହେଲା ସେ ପାଟଶାଢ଼ୀକି ପିଧାନ୍ନି (ପିନ୍ଧିଲା) କି ? ଅଥବା ଚୋରେଡି ହେଲା କି ? ନଚେତ୍ ସରସ୍ୱତୀ ନଦୀ କାଳନ୍ଦୀ (ଯମୁନା) ଜଡ଼ିତ ହୋଇ ବହିଲା କି ? ସନ୍ଧ୍ୟାଗୁଣ ଦେଖି କବି ଏମନ୍ତ ଉତ୍ପ୍ରେକ୍ଷା କଲା ।୧୪।

---

୧—ଛାତ୍ରକାଙ୍କାତକେ ଭୃଙ୍ଗେ କୁରଙ୍ଗେ ଚ ମତଙ୍ଗଜେ । ଇତି ଶବ୍ଦାର୍ଣ୍ଣବେ ।
ଅପିଚ—ଚନ୍ଦନେ‌ୃବକେଽପି ଚ ଭୃଙ୍ଗ ଦମ୍ଭନଶିକେ ହିଁ ହେ ମବୂଭାବନେ ।
କର୍ପୂରେ କଳଦେଶ୍ୱରୌ ଚ କଠିନେ ଷଟ୍ପଦେ ସଜ୍ଜେ ସାସ୍ୱକେ ।
ବୀଣାୟାମପି ଖଞ୍ଜନେ ସ୍ୱରସିକେ ପୁଷ୍ପେ କରେ ଶଙ୍ଖକେ ।
ଶୁକ୍ଲେ ହେମ୍ନି ମଗ୍ନଲି ଏବ ଧରଣୀ ସାରଙ୍ଗଶବ୍ଦୋ ମଣୌ । ଇତି ଶବ୍ଦମାଳା ।

ଆସିଲ୍ଲ ଦଶୀ । ବାରୁଣୀ ତ୍ରିବେଣୀଘାଟେ ପଡ଼ଲ୍ଲ ଘୋଷି ।୧୫। ବସ୍ତୁତ ପକ୍ଷେ ଦବାନ୍ଧପ୍ରମୁଖ ଦ୍ୱିଜେ । ବକାଶି ଶ୍ଳୋକ ବାଣୀକ ବଦ୍ଧାରେ ମଜ୍ଜେ ।୧୬। ବଜଘୋଷ ଆଦ୍ଧ ବାଦ୍ୟ ବାଜେ ଏକାଳେ । ବରକନ୍ୟା ଋଷ୍ୟଶୃଙ୍ଗ ଶାନ୍ତାଙ୍କୁ କଲେ ।୧୭। ବାର ତୋଳଦେଲେ ଶଙ୍ଖେଶଙ୍ଖେ ଉଚନ । ବସ୍ତ୍ରାସହ ଧେନୁ କଉଶେୟ ବସନ ।୧୮।ବନଜାସନ ସାବଣୀ ଧାତ୍ରେ ଦଶିଲେ । ଦନୋଦେ ଶବଙ୍କରେ ଏକାନ୍ତେ ରସିଲେ ।୧୯।

୧୫ଶ ପଦ—ଏହି ସମୟରେ ବନଜ (ପଦ) ତାହାର ଅର (ଚନ୍ଦ୍ର) ତାହାର କର (କିରଣ) ରୂପ୍ପ ଦଶୀ ଅସିଲ । ମଳ ରଙ୍ଗ ଶୂଲ୍ଲ ଏ ଚନ୍ଦ୍ରେ ମିଶନ୍ତେ ତ୍ରିବେଣୀଘାଟେ (ଗଙ୍ଗା ଯମୁନା ସରସ୍ୱତୀ ସଙ୍ଗମେ) ୨ ବାରୁଣୀ (ଯେପରି) ପଡ଼ିଲ ଏମନ୍ତ ଘୋଷି (କହୁଥିଲେ) ।୧୫।

୧୬ଶ ପଦ—ବସ୍ତୁତ କଲେ ପକ୍ଷ (ଡେଣା) ଯେଉଁମାନେ ସେ ସହାସ୍ୟ-ଜନ ହେଲେ । ଦବାନ୍ଧପ୍ରମୁଖ ଦ୍ୱିଜେ (ଉଲୂକାଦିପକ୍ଷିମାନେ) ସେ ଦ୍ୱିଜ (ବ୍ରାହ୍ମଣ) (ହୋଇ, ବାଣୀ (ଭାଷା) ଶ୍ଳୋକହେଲ (ଗଙ୍ଗାଷ୍ଟକ ପଦ୍ୟ) ହେଲ୍ଲ । କାଳୁ ଈକାଶ କଶ ବଦ୍ଧାବ (ଭ୍ରମଣ) ତଦ୍ଧିରେ ମଜ୍ଜିଲେ (ବୁଡ଼ିଲେ) ।୧୬।

୧୭ଶ ପଦ—ଏକାଳେ (ସନ୍ଧ୍ୟାବନ୍ଦନ ସମୟେ) ବଜଘୋଷ ଆଦ୍ଧ ବାଦ୍ୟମାନେ ବାଦ୍ୟକାରଙ୍କ ଦ୍ୱାରା ବାଜିଲେ । ଋଷ୍ୟଶୃଙ୍ଗ ଶାନ୍ତା ଏ ଦୁହିଙ୍କି ବର କନ୍ୟା ବେଶ କଲେ ।୧୭।

୧୮ଶ ପଦ—ଦଶରଥ ନାମାନ୍ତାଙ୍କୁ ୧ଶଙ୍ଖରେ ବାର ତୋଳ ଦେଲେ ହସ୍ତରୁ ଦିଲ୍ଲ ଉଶ୍ରୁ ଶଙ୍ଖଫଣୀକ କରୁ ବସ୍ତ୍ରାସହିତ ଧେନୁକୌଶେୟବସ୍ତ୍ର ଯୌତୁକ ଦେଲେ ।୧୮।

୧୯ଶ ପଦ—ବନଜାସନ (ବ୍ରହ୍ମା) ସାବଣୀ ଦେବୀ ଏ ଦୁହିଙ୍କ ପରି ଋଶ୍ୟଶୃଙ୍ଗ ଶାନ୍ତା ଏ ଦୁହେଁ ଦଶିଲେ । ତଦନ୍ତେ ଶବଙ୍କ (ଶଯ୍ୟାରେ)

୧—ମଧୁକୃଷ୍ଣତ୍ରୟୋଦଶ୍ୟାଂ ଶନୌ ଶତଭିଷା ଶୁଭେ ।
ମହାବାରୁଣୀଯୋଗୋଽୟଂ କୋଟିକୁଳମୁଦ୍ଧରେତ ।ଇତି।
୧—ଶ୍ଳୋକ। ଯଶସି ପଦ୍ୟେଚେତ୍ୟମରଃ ।
୧—ବୃନ୍ଦଂ ଖର୍ବଂ ନଖର୍ବଂ ଚ ଶଙ୍ଖଂ ପଦ୍ମଂ ଚ ସାଗର । ଇତ୍ୟପାଟୀଗଣିତେ

ବାହୁଳେୟୁ ପ୍ରାପ୍ୟେହେଲପ୍ରାତଲ୍ଲପ୍ରତି । ବଭ୍ରାଡ଼ ତାରକାସୁର ପ୍ରମୋଦ
ଅତ । ୨୦। ବିଭ୍ରାଜ ଉଜ୍ଜ୍ୱଳ ଶକ୍ତି ମନ୍ତରେ ସେନ୍ଥ । ବିହାଷହୋଇ
ଫମରେ ଷଷ୍ଠୀରେ ସ୍ନେହୀ । ୨୧। ଦ୍ୱାରକରେ ଖ୍ୟାତ ଶିବପୁରେ

ଏକାନ୍ତ ସ୍ଥଳରେ ବିନୋଦ (ସୁରତକ୍ରୀଡ଼ାରେ ) ରଖିଲେ ସେଠାରେ ଦୁବା
ଷତ ବଢ଼ିଲା ।୨୯।

୨୦ଶ ପଦ—ପ୍ରାତ (ସ୍ୱତ) ୧ବାହୁଳେୟ (କାର୍ତ୍ତିକେୟ) ପ୍ରସୁ
୨ହପ୍ରତି ହୋଇ ଯେରୂପ କାର୍ତ୍ତିକେୟ ତାରକନାମା ଅସୁରକୁ ବଭ୍ରାଡ଼
(ବିନାଶ କରି) ଆ (ସର୍ବତୋଭାବରେ) ସୁର (ଦେବତାଙ୍କର) ଅତ୍ୟନ୍ତ
୩ ପ୍ରମୋଦ କରିଥିଲେ ତଦ୍ରୂପ ପ୍ରଭୁଙ୍କ ୪ ତାରକା (ତାରାନକ୍ଷତ୍ର) ବିଭ୍ରାଜ
( ନଷ୍ଟ କରି ) ସୁର (ସୂର୍ଯ୍ୟଙ୍କ) ଅଧିଶସ୍ଥରେ ପ୍ରମୋଦ ହେଲେ ।୨୦।

୨୧ଶ ପଦ—ଯେ କାର୍ତ୍ତିକେୟ ୧ଉଜ୍ଜ୍ୱଳ (ଦୀପ୍ତ) ୨ ଶକ୍ତିମନ୍ତରେ
(ଅସ୍ତ୍ରଭେଦ) ବଣରେ କମ୍ର ଶରଣରେ ବିଭ୍ରାଜ (ବିରାଜମାନ) ଅଟନ୍ତି,
ପ୍ରଭୁଙ୍କ ମଧ୍ୟ ଉଜ୍ଜ୍ୱଳ ରୂପ ଶକ୍ତି ବଣରେ ବିଭ୍ରାଜ (ଉଦ୍ଦୀପ୍ତ) ଅଟେ ।
କାର୍ତ୍ତିକେୟ ଫମରେ (ଫମରେ) ବିହାଷ (ବିହରଣଶୀଳ) ହୋଇ ଷଷ୍ଠୀ
(ଛଅ ମାତା) ଅଥବା ୩ ଷଷ୍ଠୀ (କାତ୍ୟାୟିନୀ) ତାଙ୍କଠାରେ ୪ ସ୍ନେହୀ
(ସ୍ନେହଯୁକ୍ତ) ଅଟନ୍ତି । ପ୍ରଭୁଙ୍କ ମଧ୍ୟ ଫମରେ ବିହାଷ ହୋଇ ୫ଷଷ୍ଠ ପରିମିତ
ଘଟିକା (ଦଣ୍ଡ) ଉର୍ଦ୍ଧ୍ୱରେ ସ୍ନେହୀ ଅଟେ ।୨୧।

୧—ବାହୁଳେୟ ସ୍ତାଦିକଜନ୍ମଭ୍ୟମରଃ ।
୨—ଜନନୁପୃତ୍ତିରୁଦ୍ଭବ ଇତ୍ୟମରଃ ।
୩—ପ୍ରମୋଦାମୋଦ ସମ୍ମୋଦା ଇତ୍ୟମରଃ ।
୪—ତାରକାପ୍ୟୁଡ଼ୁ ବାସ୍ତ୍ରିୟାମିତ୍ୟମରଃ ।
୧—ଉଜ୍ଜ୍ୱଳୋଦ୍ଦୀପ୍ତ ଶୃଙ୍ଗାର ନେପଥ୍ୟେଷୁ ବିଳାସିନୀ ।ଇତି।
୨—ଶକ୍ତିରସ୍ତ୍ରାନ୍ତରେ ଗୌର୍ଯ୍ୟା ମୂତ୍ରାହ୍ୱାଦୌ ବଳେଽସ୍ତ୍ରିୟାମିତି ମେଦିନୀ ।
୩—ଷଷ୍ଠି କାତ୍ୟାୟିନୀ ତଥ୍ୟାସ୍ତ୍ରିଷ୍ଟସଂଖ୍ୟାଂ ତୁପୂରଣେ ଇତି ମେଦିନୀ ।
୪—ଏତ୍ୱାଦ୍ୱାସ ମାତୃବତ୍ସଳତ୍ୱ ସୂଚିତ ହେଲା ।
ମୟୂରକେତୁର୍ଭୁ ତେଣେ ଲାଳିତା ମାତୃବତ୍ସଳ ଇତି । ଟୀକାଣ୍ଟଶେଷଃ ।
୫—ମୁହୂର୍ତ୍ତିର୍ଦ୍ଦିତୟଃ ପ୍ରାତଃ ମୁହୂର୍ତ୍ତେ ଘଟିକାପର ଇତି ସ୍ମୃତଃ ।

ଉତ୍ସବେ । ବାଦନ ଯେ ଶଙ୍ଖମାଳଗଣକ୍ସି ଯବେ ।୨୨। ଝଗତ ନନ୍ଦା ଏକାଳେ ଦଶରଥର । ବସାଇ ଜାମାତା ଘେନଗଲେ ରଥର ॥ ବପ୍ର ଜିଣି ପରବେଶ ଅଯୋଧ୍ୟା ଦୁର୍ଗେ । ବ୍ରତ ଆଚରଇଲ୍ସି ମହର୍ଷୀ ବର୍ଗେ ।୨୪। ଷାଡହୋବ ସ୍ଥାପି ଯଜ୍ଞକୁଣ୍ଡେ ସତ୍ତ୍ବରେ । ବ୍ରହ୍ମଦେବସ୍ତ

୨୨ଶ ପଦ—କାର୍ତ୍ତିକେୟ ବାରକର (ଦ୍ୱାଦଶକର) ବୋଲି ଖ୍ୟାତ ଅଟନ୍ତି । ସେ ପୁଣି ୧ଜ୍ଞବେ (ଜନ୍ମ ହୁଅନ୍ତେ) ଶିବପୁର (କୈଳାସପୁର) ତହିଁରେ ଉତ୍ସବ ଅର୍ଥେ ୨ ଗଣ (ପ୍ରମଥଗଣ) ଶଙ୍ଖମାଳ (ଶଙ୍ଖସମୂହ) ବାଦନ କରିଥିଲେ । ପ୍ରସ୍ତୁତ ମଧ୍ୟ ୩ ବାର (ରବିବାସର) ତାଙ୍କୁ ଖ୍ୟାତ ହବେ ଅଭ ଶିବପୁର (ଶିବାଳୟ) ତହିଁରେ ଉତ୍ସବ ଅର୍ଥେ ମାଳଗଣ (ମାଳିସମୂହ) ଶଙ୍ଖ ବାଦନ କଲେ (ବଜାଇଲେ) । ପ୍ରଥମ ପଦ ସଭଙ୍ଗ ଶ୍ଳେଷ । ଦ୍ୱିତୀୟ ପଦ ଅଭଙ୍ଗ ଶ୍ଳେଷ । ତୃତୀୟ ପଦ ସଭଙ୍ଗ ଶ୍ଳେଷ ହେଲା (ଶ୍ଳେଷୋପମା ପୂର୍ବରୁ ଲେଖିଅଛୁଁ) ।୨୨।

୨୩ଶ ପଦ—ଏକାଳେ (ଏମନ୍ତ ସମୟରେ) ଦଶରଥଙ୍କର ନନ୍ଦା ଝଗତ ହେଲା (ଉଠିଲା) ୧ ଜାମାତା (ରଘୁବଂଶଙ୍କୁ) ରଥରେ ବସାଇ ଆପଣା ପୁରକୁ ଘେନଗଲେ ।୨୩।

୨୪ଶ ପଦ—ବପ୍ର (ସୃଷ୍ଟକମି) ଜିଣି ଅଯୋଧ୍ୟାଦୁର୍ଗରେ ପ୍ରବେଶ ହେଲେ । ତହିଁ (ସେହି ରାଜଧାନୀରେ) ମହର୍ଷିବର୍ଗେ (ପଞ୍ଚମହର୍ଷି ସମୂହକୁ) ବ୍ରତ ଆଚରଣ କଲେ ।୨୪।

୨୫ଶ ପଦ—ସତ୍ତ୍ବରେ (ବେଗରେ) ଯଜ୍ଞକୁଣ୍ଡରେ ଷାଡହୋବ (ଅଗ୍ନି) ସ୍ଥାପି ବ୍ରହ୍ମଦେବସ୍ତ (ରଘୁବଂଶଙ୍କ) ପୂଜ ଅର୍ଥେ (ସୂତପ୍ରସ୍ତୋଜନରେ) ହୋମ କଲେ ।୨୫।

୧—ଭବ ସ୍ୱଭାବାଦ୍ଭୂପ୍ରାପ୍ତ ଚେଷ୍ଟାସୃଜନ୍ମସୁ ।

୨—ଗଣଃ ପ୍ରମଥଙ୍କଶ୍ରେଣ୍ୟାଘେ ଚଣ୍ଡାସୈନ୍ୟପ୍ରଭେଦୟୋ ଶଉ ମେଦନୀ ।

୩—ବାରଃ ସୂର୍ଯ୍ୟାଦଦ୍ବବସେ ଦ୍ୱାରେଽବସର ବୃନ୍ଦୟୋଃ ବସ୍ତଃ ।

୧—ଜାମାତା ଦୁହିତୁପତଙ୍କତ୍ୟମରଃ ।

ହୋମ କଲେ ପୁତ୍ରଅର୍ଥରେ ।୨୫। ବ୍ୟାପି ନଭୁ ଧୂମାବଳୀ ଉର୍ଦ୍ଧ୍ୱେ ଚପଳେ । ବପୁଷ୍ଟରେ ଜଳଧର ପ୍ରାୟେ ଦିଶିଲେ ।୨୬। ବଳକ୍ଷ ଲକ୍ଷ ବଡଭି ରଙ୍ଗକେତନ । ବରହ ଟେକ ଅନାଇ କେକୀ ନର୍ତ୍ତନ ।୨୭। ବଥିରଚଳ ତୃଷାର୍ତ୍ତୀ ଯେତେ ସାରଙ୍ଗ । ବୀଥୀ ବୀଥୀ ହୋଇ କଲେ ନାକତେ ରଙ୍ଗ ।୨୮।ବାୟୁନାଏ ଦୁନ୍ଦୁଭି ବଆଉ ହରଷେ । ବଜନିତ

୨୬ଶ ପଦ—ନଭୁ (ହେତୁ ହୋମ କୁଣ୍ଡରୁ) ଧୂମାବଳୀ(ଧୂମସମୁହ) ଚପଳେ ଉର୍ଦ୍ଧ୍ୱକୁ ବ୍ୟାପି ବପୁଷ୍ଟ (ଆକାଶରେ) ଜଳଧର (ମେଘ) ପ୍ରାୟ ଦିଶିଲେ ।୨୬।

୨୭ଶ ପଦ—୧ବଡଭି (ଚନ୍ଦ୍ରଶାଳା ପୁରର) ରଙ୍ଗକେତନ (ରଙ୍ଗ-ପତାକା) ୨ ବଳକ୍ଷ ଲକ୍ଷ ହେଲ । କେକୀ (ମୟୂରମାନେ) ଅନାଇ ମେଘ ଏ ଏମନ୍ତ ମଣି ବରହ (ବର୍ହ ପୁଚ୍ଛ) ଟେକ ନର୍ତ୍ତନ (ନୃତ୍ୟ) କଲେ ।୨୭।

୨୮ଶ ପଦ—ତୃଷାର୍ତ୍ତୀ (ତୃଷାପୀଡ଼ିତ) (ସାରଙ୍ଗ ଚାତକମାନେ) ବଥିର ଚଳ ( ବଣେଦେ ସ୍ଥିର ହୋଇ ) ମେଘୋଦୟ ହେଲ ବସ୍ତୁ ୧ବୀଥୀ ବୀଥୀ (ପଂକ୍ତି ପଂକ୍ତି) ହୋଇ ନକାରେ ରଙ୍ଗ ( ବିହାର ) କଲେ ।୨୮।

୨୯ଶ ପଦ—୧ବାୟୁନାଏ(ଦେବତାମାନେ)ହର୍ଷରେ ଦୁନ୍ଦୁଭି ବାଦ୍ୟକୁ ବଆଉ ମାନସରେ ଏମନ୍ତ ପ୍ରତେ ହେଲ । ୨ ସ୍ତନିତ (ମେଘଗର୍ଜନ) ହବ ବଣେଦେ ) ଜନିତ ହେ କି ? ।୨୯।

୧—ବଡ଼ଭି ଚନ୍ଦ୍ରଶାଳେ ଦ୍ୱିକାଣ୍ଡଶେଷଃ ।
୨—ବଳକ୍ଷ ଲକ୍ଷ କେହବର୍ଣ୍ଣ କେମନ୍ତେ ବର୍ଣ୍ଣିଲେ ।
ତଦୁକ୍ତଂ ଅଲଂକାର ଶେଖରେ—ଶୋଣାକ ଯଥା—
ମାଣିକ୍ୟ ଭୌମ ରବ ତାମ୍ରକୁଙ୍କୁମ ସୁଞ୍ଜା ସ୍ୟାଦନ୍ଦ୍ରଗୋପ କରବନ୍ଦ ଜବାଂ ଭୃଗନ୍ତ୍ୟା । ଖଦ୍ୟୋତ ତକ୍ଷକ ତଡ଼ିତ୍ ବିମଳଂ ଚ ବମ୍ବୁ ମିତ୍ୟାଦୟଷ୍ଟ ।
୧—ବୀଥୀ ପଂକ୍ତୌ ଗୃହାଙ୍ଗେ ତ ନାଟ୍ୟରୂପକ ବର୍ତ୍ମନୋରିତ ମେଦିନୀ ।
୧—ସ୍ୱାହାଭୁଜନ୍ତୁ ବାୟୁନା ପୂଜନ୍ତାଷ୍ଟ ଚତୁର୍ଯୁଷ ଇତ ଦ୍ୱିକାଣ୍ଡଶେଷଃ ।
୨—ସ୍ତନତୋ ଗର୍ଜିତୋ ମେଘ ନର୍ଦୋକ୍ଷେ ଇତ୍ୟମରଃ ।

ସ୍ତନିତ କି ପ୍ରତେ ମାନସେ ।୨୯। ବିବେକ ମଧୂସ୍ତ ଭେକ ଦାତ୍ୟୂହ କଙ୍କ । ବର୍ଷାଭୂ ଟମକ ଯହିଁ ଉଚ୍ଛନାଦକ ।୩୦।ବଳାକାପ୍ରକାରନିଷ୍ଟେ ଚିଗ୍ରାଳମାନ । ବଂଶେ ଉଡ଼ୁଛନ୍ତି ହୋଇ ଅତିରଞ୍ଜନ ।୩୧।ବରଷିବେ କୃପାଜଳ ଉଦୟେ ହରି । ବହ୍ନି କୁଣ୍ଡେ ନଭ ଅବଲମ୍ବନ କରି ।୩୨। ବଶିଷ୍ଠାଦି ଋଷ୍ୟଶୃଙ୍ଗ ମେଘୋରେ ଥିଲେ । ବାସ୍ତାନନ୍ଦମିଷ ଯେ ସେମାନେ

୩୦ଶ ପଦ— ଯହିଁ (ଯେଉଁ ହୋମସ୍ଥାନରେ) ଉଚ୍ଛଦ.ଦକ (ଉଚ୍ଚନାଦ-କାରୀ) ଟମକ ବାଦ୍ୟ ମଧୂସ୍ତ (ମଦ୍ଗୁଣ) ଭେକ ବାଦ୍ୟ ଏମାନେ ୧ ଦାତ୍ୟୂହ (ଡାହୁକ) ୨କଙ୍କ ଓ ୩ବର୍ଷାଭୂ ( ବେଙ୍ଗ ) ହେଲେ । ସେ ସାନ ଏରୂପ ବିବେକ (ବିଗ୍ରତ ଦୃଶ୍ୟ) ।୩୦।

୩୧ଶ ପଦ— ବଂଶ (ବାଉଁଶ) ଉହିଁରେ ଅତି ରଞ୍ଜନ ହୋଇ ଉଡ଼ୁଥିବା ଚିଗ୍ରାଳ(ପତାକା)ମାନେ ୧ବଳାକା ପ୍ରକାର( ବଗ ସମୂହ)ହେଲେ ତାହିଁକି ନା ବଳାକାମାନେ ଆକାଶପଥରେ ଉଡ଼ ଥାନ୍ତି ।୩୧।

୩୨ଶ ପଦ— ହରି (ଭଗବାନ) ହରି (୧ମେଘ) ହେଲେ,ବହ୍ନି କୁଣ୍ଡ ନଭ (ଆକାଶ ) ହେଲା ତାକୁ ଅବଲମ୍ବନ କରି ଉଦୟ ହୋଇ କୃପାରୂପ ଜଳ ବର୍ଷିବେ ।୩୨।

୩୩ଶ ପଦ—ବଶିଷ୍ଠାଦି (ଋଷିମାନେ ) ଓ ଋଷ୍ୟଶୃଙ୍ଗ ମେଘୋରେ ଥିଲେ, ଅଗ୍ନିକୁଣ୍ଡ ପାଖରେ ସେମାନେ ବାସ୍ତନନ୍ଦମିଷ ହୋଇ ବସିଲେ ଅର୍ଥାତ୍ ହୃଷ୍ଟଚିତ୍ତ ହୋଇ ନମସ୍କାର କଲେ ( ଅଗ୍ନିକୁଣ୍ଡରେ ଭଗବାନଙ୍କୁ ଦେଖିଲେ ) । ।୩୩।

୧—ଦାତ୍ୟୂହଃ କାଳକଣ୍ଠକଃ ।
୨—କୋଡ଼ପୃଷ୍ଠସ୍ଥକଙ୍କ ସ୍ୟାଦବଣ ।
୩— ଭେକେ ମଣ୍ଡୂକ ବର୍ଷାଭୂ ଶାଳୂର ପ୍ଲବଦର୍ଦୁରା ଇତ୍ୟମରଃ ।
୧—ବଳାକା ବିଷକଣ୍ଠିକା ଇତ୍ୟମରଃ ।
୧— ମେଘାର୍କ ଭେକେ ହରୌ ଇତି ଜେମାଳା ।

ନମିଲେ ।୩୩। ବରୁଣାଳୟ କରୁଣାକର ବୋଇଲେ । ଦ୍ୱିଜ କମ୍ବୁ ଚକ୍ର ଗଦାବ୍ଜେ ମଞ୍ଜୁଳେ ।୩୪। ବିଧୃତ କର ମକର ଲକ୍ଷଣମାନ । ବୃଢନ୍ତ ମହତ୍ତ୍ୱଯୋଗେ ନୟନ ମୀନ ।୩୫। ବୋଇଲୁଆଳ ଯେ ଦଶ-ରଥ ନୃପତ୍ତି । ବାଞ୍ଛୁବାରେ ହର ତାରେ ରତ୍ନ ପ୍ରାପତି । ୩୬ ।

---

୩୪ଶ ପଦ—ସେ ଋଷିମାନେ ବୋଇଲେ ହେ କରୁଣାକର ବରୁଣାଳୟ (ହେ କରୁଣା ସମୁଦ୍ର) ଯେରୂପ ୧ ସମୁଦ୍ର ଦ୍ୱିଜ (ପକ୍ଷୀ) ରାଜା (୧ ଚନ୍ଦ୍ର) କମ୍ବୁ (ଶଙ୍ଖ) ୨ଚକ୍ର (ଜଳାବର୍ତ୍ତ) ପଦ୍ମ ଏମାନଙ୍କରେ ମଞ୍ଜୁଳ ଅଟଇ ତୁମ୍ଭେ ତଦ୍ରୂପ ଦ୍ୱିଜ (ଗରୁଡ) କମ୍ବୁ (ଶଙ୍ଖ) ଚକ୍ର (ସୁଦର୍ଶନ) ପଦ୍ମ ଏମାନଙ୍କରେ ମଞ୍ଜୁଳ ଅଟ ।୩୪।

୩୫ଶ ପଦ—ସମୁଦ୍ର ଯେରୂପ ବିଧୃତ (ଧାରଣ କରିଛି) ମକର (ଜଳ-ଜନ୍ତୁ ବିଶେଷ) ମୀନ (ମତ୍ସ୍ୟ) ଇତ୍ୟାଦି ମହାପୁରୁଷ ୧ଲକ୍ଷଣମାନଙ୍କୁ ତଦ୍ରୂପ ତୁମ୍ଭେ ମହାପୁରୁଷ ହେବାରୁ ମକର ମୀନାଦିଚିହ୍ନମାନ ଧାରଣ କରିଅଛ, ମହତ୍ତ୍ୱ ସ୍ଥାନଯୋଗ ପଡିଲେ ତହିଁରେ ଜନମ ନେ ବୃଢନ୍ତ ତଦ୍ରୂପ ତୁମ୍ଭଠାରେ ମହତ୍ତ୍ୱ (ବଡ) ଯୋଗରେ (ଧ୍ୟାନ ଧାରଣାରେ) ନୟନମାନେ ବୃଢନ୍ତ ।୩୫।

୩୬ଶ ପଦ—ଦଶରଥ ନୃପତି ବୋଇଲୁଆଳ ହେଲେସେ, ବାଞ୍ଛୁବାରେ (ଇହପରଲୋକ ସୁଖପ୍ରାପ୍ତି ଅର୍ଥେ) "ବୋଇତ ନୌକାର ଯେରୂପ ସମୁଦ୍ରରୁ ରତ୍ନପାଇ ଦଅଇ" ତଦ୍ରୂପ ତାରେ (ତାହାଠାରେ) ପୁତ୍ରରୂପ ରତ୍ନପ୍ରାପ୍ତି କର (କରାଅ) ଅର୍ଥାତ୍ ତାହାଙ୍କୁ ପୁତ୍ରରତ୍ନ ପ୍ରଦାନ କର ।୩୬।

---

୧—ସମୁଦ୍ରରେ ଚନ୍ଦ୍ରାଦି ବର୍ତ୍ତିନ ହୁଅନ୍ତି ଯଥା—

ଅବଜ୍ଞୌ ଦ୍ୱୀପାଦ୍ରିଶଶିସୁର୍ଣିପୋତା ଯାଦୋଜଳପ୍ଲବାଃ ।

ବସ୍ତୂକୁଲ୍ୟାଗମଣ୍ଟାଦ୍ରି ବୃନ୍ଦ ରୌର୍ବାଗ୍ନି ପୂରଣଂ ।ଇତ୍ୟଳଙ୍କାର ଶେଖରେ

୨—ଚକ୍ରଃ କୋକେ ପୁମାନ୍ କ୍ଲୀବ ବଲେ ସୈନ୍ୟରଥାଙ୍ଗୟୋଃ ।

ରାଷ୍ଟ୍ରେ ଦମ୍ଭାନ୍ତରେ କୁମ୍ଭ କାରୋପକରଣାସ୍ତ୍ରୟୋଃ ଜଳାବର୍ତ୍ତେଽପୀତି ମେଦିନୀ ।

୧—ଚିହ୍ନଂ ଲକ୍ଷ୍ମ ଚ ଲକ୍ଷଣ ମିତ୍ୟମରଃ ।

ବଡବାନଳେ ପକାଅରାକ୍ଷସଗଣ । ବ୍ୟଗ୍ରକେଏଥିରୁନାହିଁ ଆନମାର୍ଗଣ
ବ୍ୟାକୋଷକୁସୁମ ହାସ ମୁଖେ ଧଇଲେ । ବୋଲି ଅସ୍ତୁ ବୃକ୍ଷ ତରୁ
ରୂପେ ଦିଶିଲେ । ବ୍ୟଞ୍ଜିଳ କରନ୍ତେ କ୍ଷର ସେ ଋଷ୍ୟଶୃଙ୍ଗ । ବ୍ରହ୍ମରୂପୀ
ପରଦେଶ ହୋଇଲେ ବେଗ ।୩୯। ବ୍ରାହ୍ମଣଶ୍ରେଷ୍ଠ ତା ରାଜାହସ୍ତରେ
ଦେଲେ । ବାଣ୍ଡି ସର୍ବମହର୍ଷୀଙ୍କର ଦିଅ ବୋଇଲେ । ୪୦ । ବାତ-
ମଳୟାଦ୍ରିରୁ ଯେ ବହଇ ଯେନ । ବଂଶକର୍ମେ ନାହିଁ ଯଥା ହେବା
ଚନ୍ଦନ ।୪୧। ବୃଷ୍ଟି ନୋହି ସାତଶତ ଶତବୃକ୍ଷଶି । ବାମା ଅଛନ୍ତି

୩୮ଶ ପଦ—ରାକ୍ଷସଗଣ (ରାକ୍ଷସ ସମୂହ) ତାଙ୍କୁ ବଡବାନଳେ (ବଡ ବାଗ୍ନିରେ) ପକାଅ, ବ୍ୟଗ୍ରକେ (ଏହା ରଜା) ଏଥିରୁ ଆନ (ମାର୍ଗଣ-ମାଗିବାର) ନୋହୁ (ଅନ କହୁ ମାଗୁନାହୁଁ) ।୩୮।

୩୮ଶ ପଦ—ଏମନ୍ତ ଋଷି ମାନେ ଶୁଣାନ୍ତେ ଅସ୍ତୁ ହେଉବୋଲି ପ୍ରସନ୍ନରେ ବ୍ୟାକୋଷ କୁସୁମ (ପ୍ରଫୁଲ୍ଲ ସୁମନ) ପର ହାସକୁ ମୁଖରେ ଧଇଲେ ବୃକ୍ଷ-ଗୋଟି ତରୁ ରୂପରେ ଦୃଶ୍ୟ ହେଲେ ।୩୮।

୩୯ଶ ପଦ—ତାଦେଖି ସେ ଋଷ୍ୟଶୃଙ୍ଗ କରକୁ ବ୍ୟଞ୍ଜଳ (ବିଶେଷରେ ଅଞ୍ଜଳି) କରନ୍ତେ ବ୍ରହ୍ମରୂପୀ (ତରୁ) ବେଗରେ ପ୍ରବେଶ ହେଲେ ।୯

୪୦ଶ ପଦ—ବ୍ରାହ୍ମଣଶ୍ରେଷ୍ଠ (ଋଷ୍ୟଶୃଙ୍ଗ) ତା (ସେହି ତରୁକୁ) ରାଜା (ଦଶରଥଙ୍କ) ହସ୍ତରେ ଦେଲେ । ସର୍ବ ମହର୍ଷୀଙ୍କର (ସମସ୍ତମହର୍ଷୀଙ୍କ) ବାଣ୍ଡି ଦିଅ ଏମନ୍ତ ବୋଇଲେ ।୪୦।

୪୧ଶ ପଦ—ମଳୟାଦ୍ରିରୁ (ମଳୟାଚଳରୁ) ବାତ (ପବନ) ବହଇ ତାହା ସ୍ପର୍ଶରୁ ବରତରୁମାନେ ଚନ୍ଦନ ହୁଅନ୍ତି । ବଂଶ (ବାଉଁଶ) କର୍ମରେ ଚନ୍ଦନ ହେବାର ନାହିଁ ଏହା ଯେଜ ଚନ୍ଦନହୋଇ ନ ପାରଇ ତଥା, ତଥା ଏ

୪୨ଶ ପଦ—ବୃଷ୍ଟି ନୋହି (ବଡ ନ ହେଲ) ସାତଶ ଶତବୃକ୍ଷଶି ବାମା ଅଛନ୍ତି ଏମନ୍ତ କୌଶଲ୍ୟା କୈକେୟୀ ବୃଦ୍ଧେ ଭାବିଲେ ।୪୨।

୧—ମାର୍ଗଣଃପ୍ରାର୍ଥନେନ୍ୟେକ୍ଷେ ମାର୍ଗଣୋ ଯାଚକେ ଶରେ । ଇତ୍ୟ ବିଶ୍ବଃ ।
୧—କ୍ଷେକୌ ସୁଗାବ୍ୟଞ୍ଜଲଃ ପୁମାନବ୍ୟମରଃ ।

କୌଶଲ୍ୟା କୈକେୟୀ ଋଷି ।୪୨। ବରକ୍ତେ ନୃପଙ୍କ ଦୁଇଭାଗ ତା କଲେ । ବହୁଳେ ସେ ଦୁହିଁଙ୍କର ପାଣିରେ ଦେଲେ ।୪୩ । ବିମଳ-ହୃଦୟା ଋଷିକଲ ଅନୁହଜା । ବେନ୍ ବେନ ହାଗ ଦେଲେ ସନ୍ତୋଷ ରାଜା ।୪୪। ବିଶ୍ୱଗର୍ଭ ସେ ଅଣନେ ଗର୍ଭରେ ରହି । ବରଷେ ଯେ ସ୍ୱାତିଜଳଭକ୍ଷଣ ବହି ।୪୫। ବହାଇ ଉଦରେ ମୌକ୍ତିକ ଶୁକ୍ତି ଯେମନ୍ତ ବଦ୍ଧ ନୋହି ଏ ଘେଣ୍ଟି ହେଲ ତେମନ୍ତ ।୪୬। ବୈଷଣ୍ଡିକା କାନ୍ତା

୪୩ଶ ପଦ —ଏମନ୍ତ ଶୁଣି ନୃପତି ( ଦଶରଥ ) ଚରୁକୁ ଦୁଇଭାଗ କଲେ, ବହୁଳ ହୋଇ ସେହି ଦୁହିଙ୍କ (କୌଶଲ୍ୟା କୈକେୟୀଙ୍କ) ହସ୍ତରେ ଦେଲେ ।୪୩।

୪୪ଶ ପଦ—ବିମଳହୃଦୟା (ନିର୍ମଳ ହୃଦୟା )ସେ ଦୁହେଁ (କୌଶଲ୍ୟା କୈକେୟୀ ) ଋଷିକଲ ହେ ପ୍ରଭୋ ଅପଣ ଅନୁଜ୍ଞା କଲ (ନୈଷଧୀୟଚରିତ) "ସାତଶଅଣ୍ଡ ରାଣୀରୁ ସାତଶ ସନ୍ତନ୍ତନି ବୃଥା ନୋହିଲେ ... ବଣ ହୋଇଅଛନ୍ତି ଏମନ୍ତ ଅନ୍ତେ କହିଲୁ" ଭିନଭାଗ କରି ସୁମିତ୍ରାଙ୍କୁ ନ ଦେଲ ଏମନ୍ତ କହିବେ (ରାଣୀ) ଆପଣା ଆପଣା ଭାଗରୁ ଭାଗେ ଭାଗେ ସୁମିତ୍ରାଙ୍କୁ ଦେଲେ ତାହା ଦେଖି ରାଜା ସନ୍ତୋଷ ହେଲେ ।୪୪।

୪୫-୪୬ଶ ପଦ —ବିଶ୍ୱ ( ସଂସାର ) ଗର୍ଭରେ ଯାହାଙ୍କର ଏରୂପ ସେ ଭଗବାନ ସେ ଚରୁ ରୂପରେ ଅଣାନ ହୋଇଥିବେ ଗର୍ଭରେ (କୌଶଲ୍ୟାଙ୍କ) ରହିଲେ କିପରି ? ବର୍ଷ ର ଯେଉଁ ସ୍ୱାତିଜଳ ତାହା ଭକ୍ଷଣ ବହି (କରି) ଶୁକ୍ତି (ଶାମୁକା) ଉଦରରେ ମୌକ୍ତିକ ଯେରୂପ ବହାଇ ବଦ୍ଧ ନୋହି (ନିର୍ବନ୍ଧରେ) ଏ ରୂପ ସେ ରୂପ ହୋଇଲ । ତାତ୍ପର୍ଯ୍ୟାର୍ଥ—ମୁକ୍ତାଶୁକ୍ତି ଯେରୂପ ସମୁଦ୍ର ଗର୍ଭରେ ଥାଇ ସ୍ୱାତି ଜଳପାନ କରି ମୁକ୍ତାକୁ ଗର୍ଭରେ ବହାଇ ସେହିପରି ଚରୁ ଭକ୍ଷଣ କରି ଭଗବାନଙ୍କୁ ଗର୍ଭରେ ବହିଲେ ।୪୫। ।୪୬।

୧ – କୌଶଲ୍ୟା ତୁ ସ୍ୱଭାଗାର୍ଦ୍ଧଂ ଦଦୌ ତସ୍ୟୈ ମୁଦାନ୍ୱିତା ।
କୈକେୟୀ ତୁ ସ୍ୱଭାଗାର୍ଦ୍ଧଂ ଦଦୌ ତସ୍ୟୈ ପୁନଃ ସ୍ୱୟଂ ।
ଇତ୍ୟଧ୍ୟାତ୍ମରାମାୟଣେ ।

ଘେନି ସ୍ୱସଦନେ ଗତ । ବାସରକୁ ବାସର ରାଣୀଏ ଅଶକ୍ତ ।୪୭। ବିଧୃତ ଲଜ୍ଜିକା ମେରୁ ଏଥିଉତ୍ତାରୁ । ବଚନ ନୋହିଲା ଅଶକତ ହେବାରୁ ।୪୮। ବର୍ଣ୍ଣ ସୁବର୍ଣ୍ଣ ଦୋହଦ ରୂପ୍ୟରେ କଷି । ବକ୍ଷୋଜ ଦନ୍ତସମ୍ପୁଟେ ରକ୍ଷଣ ମଣି ।୪୯। ବୃଦ୍ଧି ହେବାକଟୀ ପୃଥୁ ଅଧିକ ନୋହି । ବିଧି ପୂର୍ବେ ସିଂହ ଲକ୍ଷ ଗ୍ରାସିଛି ଯେହି ।୫୦। ବକର୍ଣ୍ଣ ମଧୁରସରେ

୪୭ଶ ପଦ—ବୈଭାଣ୍ଡକୀ (ଋଷ୍ୟଶୃଙ୍ଗ) କାନ୍ତାକୁ (ପ୍ରିୟାକୁ) ଘେନି ସ୍ୱସଦନେ (ଆପଣାର ତପୋବନକୁ) ଗଲେ । ଅଥବା ୧ସ୍ୱସଦନେ (ଆପଣା ଗୃହକୁ) ଗଲେ । ଗର୍ଭାଧାନ ହେବାରୁ ରାଣୀଏ (କୌଶଲ୍ୟା କୈକେୟୀ ସୁମିତ୍ରା) ବାସରକୁ ବାସର (ଦିନକୁ ଦିନ) ଅଶକ୍ତ (ଅସମର୍ଥ) ହେଲେ ।୪୭।

୪୮ଶ ପଦ—ଲଜ୍ଜିକା (ଲଜ୍ଜା) ମେରୁ (ପର୍ବତକୁ) ବିଧୃତ ଧଇଲେ । ଏ ସ୍ଥଳରେ କୌଶଲ୍ୟା ଲଜ୍ଜାସ୍ଥାନୀୟା ଗର୍ଭସ୍ଥ ଦେହରେ ଜଗନ୍ନିବାସ ମେରୁ-ହେଲେ । ଏଥିରୁ ଅଶକ୍ତ ହେବାର ବଚନ ନୋହିଲା ।୪୮।

୪୯ଶ ପଦ—ବର୍ଣ୍ଣ (ଗୌରବର୍ଣ୍ଣ) ସୁବର୍ଣ୍ଣ ହେଲା, ତାହାକୁ ଦୋହଦ (ଗର୍ଭ ଲକ୍ଷଣ) ରୂପ ରୂପ୍ୟରେ (ରୂପାରେ) କଷି ବକ୍ଷୋଜ (ବକ୍ଷୋଜ) ଦ୍ୱୟ ୧ଦନ୍ତ ସମ୍ପୁଟ ରୂପ (ଫରୁଆରେ) ରକ୍ଷଣ କଲା (ରଖିଲା) ଏମନ୍ତ ମଣି (ଜଣାଗଲା) + ।୪୯।

୫୦ଶ ପଦ—କଟୀ ପୃଥୁ (ପୃଥୁଳ) ହୋଇ ବୃଦ୍ଧି ହେବାର ଅଧିକ ନୁହଇ କାହିଁକି ? ଯେଉଁ କଟୀ ପୂର୍ବେ ସିଂହ କଟୀର ଲକ୍ଷକୁ ଗ୍ରାସିଛି ତେଣୁ ବିଧି (ବିଧାନ ହେଲା) ଗ୍ରାସ କରିବା ଲୋକ ପୃଥୁଳ ଦିଶଇ, ସେ ସିଂହକଟୀ ଉପମାକୁ ଗ୍ରାସ କରି ଥିବାରୁ ପୃଥୁଳ ଦିଶିଲା ଏରୂପ ଭାବ । ଗର୍ଭାଧାନରେ କଟୀ ପୃଥୁଳ ହୁଅଇ । ୫୦ ।

୧—ବନଂ ନପୁଂସକଂ ନୀରେ ନିବାସାଳୟ କାନନେ ; ଇତି ମେଦିନୀ ।

+—ଏପଦ ରୂପକ ଉତ୍ପ୍ରେକ୍ଷା ହେଲା । ତଦୁକ୍ତଂ ଅଲଙ୍କାର ଶେଖରେ ।—

ଶଙ୍କେମନ୍ୟେ ଧ୍ରୁବଂ ପ୍ରାୟୋ ନୂନଂ ଜାନାମି ତର୍କୟେଃ ।
ଇବେତ୍ୟାଦିଭିରୁତ୍ପ୍ରେକ୍ଷା ଗମ୍ୟତେ କାବ୍ୟବର୍ତ୍ମନି ।

୧—ସମୁଦ୍‌ଗତଃ ସମ୍ପୁଟକ ଇତ୍ୟମର ।

ଉଦରପଥ । ବମନ ହେବା ଚନ୍ଦ କି ଆନ ପଦାର୍ଥ ।୫୧। ବସନ୍ତମଧ
ମାସରେ ନବମୀ ଖ୍ୟାତ । ବିପତ୍ତିଧ୍ୱଜ ବହିଲେ ଚତୁର୍ଦ୍ଧା ମୂର୍ତ୍ତି ।୫୨।
ବ୍ରୂ୍ୟପୃତି ଏ କୌଶଲ୍ୟା କୈକେୟୀ ସୁମିତ୍ରା । ବାସବଦଗଦ ଜନଶୃଙ୍ଗ
ଶୋଭିତା ।୫୩। ବିଧୁଗୁରୁ ଭାର୍ଗବ ଅଙ୍ଗିର ଉଦିତା । ବନଶ୍ରିତ ଧାର୍ଯ୍ୟ

---

୫୧ଶ ପଦ—ଯାହାଙ୍କଠାରୁ ମଧୁର (ସୁନ୍ଦର) ସରେ (ସରଳ) ଏମନ୍ତ
ଯେ ଶ୍ରୀରାମ ଯେ ମଧୁରସ ହେଲେ ସେ ଉଦର ପଥରେ କୋଣ୍ଟି ହୁଅନ୍ତେ
ଆନ ପଦାର୍ଥ ଭକ୍ଷଣରେ ବମନ ହେବାର ଚନ୍ଦ କି ? (ବିଚନ୍ଦ ନୋହେ)
ଏଥିରେ ଅଭେଦକତ୍ୱ ସୂଚିତ ହେଲା ।+।୫୧।

୫୨ଶ ପଦ—ବସନ୍ତ (ବସନ୍ତ କାଳର) ମଧୁମାସରେ (ଚୈତ୍ରମାସରେ
ନବମୀ ନାମରେ ଖ୍ୟାତ ଅଟଇ ଯେଉଁ ତିଥି ତହିଁରେ ବିଶତ୍ତିଧ୍ୱଜ (ଗରୁଡ଼
ଧ୍ୱଜ) ଚତୁର୍ଦ୍ଧା ମୂର୍ତ୍ତି (ଚତୁଃପ୍ରକାର ମୂର୍ତ୍ତିକି) ବହିଲେ ।୫୨।

୫୩ଶ ପଦ—ଏ ବ୍ରୂ୍ୟତି (ତିନ) ହେଁ, କୌଶଲ୍ୟା କୈକେୟୀ
ସୁମିତ୍ରା ଏ ତିନହେଁ ବାସବଦଗଦ (ପୂର୍ବଦିଗ ଉଦୟପର୍ବତର) ଜନଶୃଙ୍ଗ
ପରି ଶୋଭିତା ହେଲେ (ଶୋଭା ପାଇଲେ) । ୫୩ ।

୫୪ଶ ପଦ—ବିଧୁ (ଚନ୍ଦ୍ର) ଗୁରୁ (ବୃହସ୍ପତି) ଭାର୍ଗବ (ଶୁକ୍ର)
ଅଙ୍ଗିର (ମଙ୍ଗଳ) ଏରୂପେ ଚତୁର୍ଗ୍ରହ ପ୍ରାୟ ଚାରିକୁମାର ଉଦିତ ହେଲେ,
ସେ ଉଦିତ ହେବାରୁ ଧାର୍ଯ୍ୟ (ମାତା ଓ ଉପମାତାମାନେ) ଯନ୍ତି ହେଲେ,
ତାଙ୍କ ନବଡ଼ ଧ୍ୟାନ୍ତ (ଚନ୍ତ୍ରାନ୍ଧକାର) ବନଶ୍ରିତ (ବନଗତ ହେଲା)
ଅର୍ଥାତ ଚନ୍ଦ୍ରୋଦୟରେ ଅନ୍ଧକାର ନାଶ ହେଲାପରି ତାଙ୍କର ଚିନ୍ତା
ନାଶ ହେଲା । ୫୪ ।

---

+ ତଦୁକ୍ତଂ କନ୍ଧଚନ୍ଦ୍ରାମଣୌ—
ଗର୍ଭୋଦୟେ ପାଣ୍ଡୁମୁଖଂ ଚ ବର୍ଣ୍ଣଂ ନାଭେଃ ପୃଥୁତ୍ୱଂ ମୃଦୁଭାଷଣଂ ଚ ।
ସୁନୀଳତା ପୀନକୁଚେଷ୍ଟ ଭାଗେ ପୁଷ୍ପା କଟୀ ଭୂଷଣ ଶୂନ୍ୟତା ଚ ।
କ୍ଷାମା ଚତୁର୍ଥୀ ନବ ବ୍ରୀଡ଼ସ୍ତଂ ଚ ରତୌ ବିରାଗଂ ମଳନାଙ୍ଗଯଷ୍ଟି ।
ଅସହ୍ୟମନ୍ୟାନ୍ତ ବଦ୍ଧେକଳାଭୈରଭେଦକତ୍ୱାଧିକ ବର୍ଣ୍ଣମାସ୍ୱମିତ ।

ରାଶି ନିବିଡ଼ ଧ୍ୱାନ୍ତ ।୫୪। ବଧାଇ ଲଭିଲେ ନୃପେ ନାରୀଏ କହୁ । ବାର୍ତ୍ତାବହେ ରାଜ୍ୟାନ୍ତରେ ଗମିଲେ ତହୁଁ ।୫୫। ବାରତା କହୁ ସାମନ୍ତ ପାତ୍ରେ ତ୍ୱରିତ । ବେତ୍ରକେ କଟକ କୁଣ୍ଡଳରେ ମଣ୍ଡିତ ।୫୬। ବାଟ ହାଟ ତୂର ତୂର ବାଜେ ଅସଂଖ୍ୟ । ବିଦୂଷକ କାତ୍ୟାୟନୀ ହୃଷ୍ଟ ଅଲେଖ ॥ ବୃନ୍ଦ ବୃନ୍ଦ ହୋଇ ତହୁଁ ଜନମାମାନେ । ବସୁଧାପତି ନେଖିଲେ ସୁନୁ

---

୫୫ଶ ପଦ—ନାରୀଏ (ଅନ୍ତଃପୁରସ୍ଥ ଦାସୀମାନେ) "ପୁତ୍ରମାନେ ଜନ୍ମ ହେଲେ" ଏମନ୍ତ ଦଶରଥଙ୍କ ଶ୍ରୀମୁଖରେ କହୁ ବଧାଇ (ପୁରସ୍କାର) ଲଭିଲେ (ପାଇଲେ) ତହୁଁ (ସେହୁ ପୁତ୍ର ଜନ୍ମବାର୍ତ୍ତା କହିବା ବିଷୟରେ) ବାର୍ତ୍ତାବହେ (୧ ଦୂତମାନେ) ରାଜ୍ୟାନ୍ତରେ (ଅନ୍ୟରାଜ୍ୟକୁ) ଗମିଲେ (ଗଲେ) ।୫୫।

୫୬ଶ ପଦ—ତ୍ୱରିତ (ଶୀଘ୍ର) ସାମନ୍ତ ଓ ପାତ୍ର ମନ୍ତ୍ରୀମାନଙ୍କଠାରେ ପୁତ୍ର ଜନ୍ମବାର୍ତ୍ତା କହୁ ସେମାନେ ଓ ବେତ୍ରକେ (ପ୍ରତିହାରୀମାନେ) କଟକ (ବଳୟ) କୁଣ୍ଡଳ (କର୍ଣ୍ଣାଳଙ୍କାର) ଏମାନଙ୍କରେ ମଣ୍ଡିତ ହେଲେ ।୫୬।

୫୭ଶ ପଦ—ପୁତ୍ରୋତ୍ପତ୍ତି ହେବାରୁ ଦଶରଥ ରାଜା ହାଟବାଟ ଜୁର କଲେ, ଏ ହେତୁରୁ ତୂର (ବାଦ୍ୟ ବିଶେଷ) ଅସଂଖ୍ୟ ହୋଇ ବାଜିଲେ । ୧ ବିଦୂଷକ (ଖ୍ଟିବଟମାନେ) ଓ ୨ କାତ୍ୟାୟନୀ (ଅର୍ଦ୍ଧ ବୃଦ୍ଧା ସ୍ତ୍ରୀମାନେ) ଅଲେଖ (ଅପରିମିତ) ହୃଷ୍ଟ ହେଲେ ।୫୭।

୫୮ଶ ପଦ—ତହୁଁ (ସେ କାଳରେ) ଜନମୀମାନେ ବୃନ୍ଦ ବୃନ୍ଦ ହୋଇ ଯାଇ ବସୁଧାପତି (ଦଶରଥ) ସେ ମଧ୍ୟ ଯାଇଁ ୧ ସୁନୁ (ପୁତ୍ରଙ୍କୁ) ସୁମନେ (ଆନନ୍ଦମନରେ) ଦେଖିଲେ ।୫୮।

---

୧—ଜସ୍ତୁ ବେଶହରେ ଦୂତ ଇତ୍ୟମରଃ ।
୧—ବିଦୂଷକ ଷ୍ଟାଟୁବଶୌ ପରଂହାନ୍ଦାକରେଽପି ଚ ଇତି ମେଦନୀ ।
୨—କାତ୍ୟାୟନ୍ୟର୍ଦ୍ଧ ବୃଦ୍ଧା ଯା କାଷାୟବସନାଧବେତ୍ୟମରଃ ।
୧—ଆତ୍ମଜ ସ୍ତନୟଃ ସୁନୁଃ ସୁତଃ ପୁତ୍ର ସ୍ତ୍ରୀୟାଂ ତ୍ୱମୀତ୍ୟମରଃ ।

ସୁମନେ ।୫୮। ବନଜନଭ ପଦକୁ ସ୍ପର୍ଶ କରାଇ । ବିଳମ୍ବିତନାଡ଼ି
ନାଭିମଣ୍ଡଳେ ଶୋଭି ।୫୯। ବିଚ୍ଛେଦନ କଲେ ନାଭି ଉଦୟୁ ହ୍ଲାଦେ ।
ବିଗ୍ରହସୁବାସ ଯେଣୁ କସ୍ତୁରୀ ବନ୍ଦେ ।୬୦। ବ୍ୟକ୍ତ ସୂତିକାଗୃହକାରୁଣ୍ୟ
ପୟୁ ।, ବିସ୍ତୀର୍ଣ୍ଣ ଅନନ୍ତ ଶୋଭି ଶଯ୍ୟା ନିଷ୍ଟୟୁ । ୬୧। ବୀଚି ଚନ୍ଦ୍ରାତପ
କୁଞ୍ଜାବାସ ରଚଇ । ବିବେକୀ ଶୁଆଇ ସଦା ନିଦ୍ରା ଚଟଚାଇ ।୬୨।

---

୫୯ଶ ପଦ—ସେ କାଳରେ ସେ ପ୍ରଭୁ ବନଜନାଭ (ପଦ୍ମନାଭ) ପଦକୁ ସ୍ପର୍ଶ କରାଇଲେ । ନାଭିମଣ୍ଡଳରେ ବିଳମ୍ବିତ ହୋଇ ନାଡ଼ି ଶୋଭିତ ହେବାରୁ ପଦ୍ମରେ ନାଡ଼ ଲମ୍ବି ଥାଏ ।୫୯।

୬୦ଶ ପଦ—ପୁତ୍ରମୁଖ ଦର୍ଶନ ଇଚ୍ଛାରୁ ନାଭିକି ବିଚ୍ଛେଦନ କଲେ (ଛେଦିଲେ), ଯେଣୁ ବିଗ୍ରହସୁବାସ (ଅଙ୍ଗସୌରଭକୁ) ୧କସ୍ତୁରୀ (ମୃଗ ମଦ) ବନ୍ଦନା କରୁଥିଲା ତେଣୁ ନାଭି ଛେଦିଲେ ଏମନ୍ତ ହୃଦୟରେ ଉଦେହେଲା । କସ୍ତୁରୀ ମୃଗନାଭି ଛେଦନ ହୁଅଇ । ୬୦ ।

୬୧ଶ ପଦ—ତହିଁଉତ୍ତାରୁ ବ୍ୟକ୍ତ ହେଲା ଯେଉଁ ସୂତିକାଗୃହ ସେ କାରୁଣ୍ୟପୟୁ (କାରୁଣ୍ୟଜଳ) ହେଲା, ନିଶ୍ଚୟ ବିସ୍ତୀର୍ଣ୍ଣ ଶଯ୍ୟା (ବିସ୍ତୃତଶେଯ) ଅନନ୍ତଶଯ୍ୟା ଶୋଭା ଧାରଣ କଲା । ୬୧ ।

୬୨ଶ ପଦ—କାରୁଣ୍ୟଜଳରେ ବୀଚି (ଲହରୀ) ଥାଏ ଏଥିରେ ଚନ୍ଦ୍ରାତପ (ଚାନ୍ଦୁଆ) ତତ୍ସମ୍ବନ୍ଧ ବାସକୁଞ୍ଜ (ବସନକୁଞ୍ଜ) ସେ ବୀଚିହେଲା ତାକୁ ରଚାଇଲେ । ୧ ବିବେକୀ (ବିବେକବତୀ ଦାସୀମାନେ) ଶୁଆଇ ସଦା ଚଟଚାଇ ନିଦ୍ରା କରାଇଲେ । କାରୁଣ୍ୟଜଳରେ ବିବେକୀ (ସରସ୍ୱତୀ) ଭଗବାନଙ୍କୁ ଶୁଆଇ ଆପେ ଚଟଚାଇ (ଚେତାପର ହୋଇ) ନିଦ୍ରାକରାନ୍ତି + ।୬୨।

---

୧ — ମୃଗନାଭିର୍ମୃଗମଦଃ କସ୍ତୁରୀତ୍ୟମରଃ ।

୧— ବିବେକଃ ସ୍ୟାଜ୍ଜଲଦ୍ରୋଣ୍ୟାଂ ପୃଥଗର୍ଥ ବିଚାରୟୋ ରିତି ମେଦିନୀ ।

+ — ଇତ୍ୟେବଂ ଦସ୍ତୁର୍ତାଦ୍ବିତ୍ୟେନ ହରଣୀ ତ୍ୱଂ ଯ ତତଃ ସ୍ୱାଗ୍ରହେ ।
ତୃତୀୟପଦ୍ମଂହରସ୍ୱେ ତ୍ରିପ୍ୟୈ ନ୍ୟଭିବନେ ଜର୍ଣ୍ଣୀଂଗିତନ୍ ଦତ୍ତବାନ୍ । ଇତିପ୍ରୟୋଗଃ ।

ବ୍ରୀହିଆଦ୍ଵ ପଞ୍ଚବୀଜ ପଞ୍ଚ ଆତ୍ମା ଯେଣ ବ୍ୟାନ ସହ ପଞ୍ଚବାୟୁ ତୋଷକ
ସେ ଯେ ।୭୩। ବନଜନ୍ମ ଲକ୍ଷ ନାସ୍ତି ଷଷ୍ଠୀଘରକୁ । ବରାଟକେ ମଣ୍ଡି
କଲେ ମନୋହରକୁ ।୭୪। ବିଯୋଗ ନଦ୍ରାରେ କାମ ମଧୁରେ ବାଦ ।
ବିରଚି ଏ ପାଞ୍ଚ ଉଠିଆରି ସମ୍ପାଦ୍ଧ ।୭୫। ବଂଶ ଏକବନେଦୋଳିଶୟନ
କରି । ବଟପତ୍ରପୁଟେ ବାଳମୁକୁନ୍ଦ ପରି ।୭୬। ବନ୍ଧାନ୍ତେ ଯେ ଦଶରଥ

---

୭୩ଶ ପଦ—ଉଦନ୍ତେ ପଞ୍ଚ ଆତ୍ମା ବ୍ରୀହ୍ୟ ଆଦି ପଞ୍ଚବୀଜ (ମୁଗ-ବ୍ରୀହି ଗହମ କାଙ୍ଗୁ ଲ ବ୍ରୁହଳ) ଏ ପଞ୍ଚବୀଜ ଭୁଞ୍ଜ ଖାଇଲେ ସେ ପଦାର୍ଥ ୧ବ୍ୟାନ ସହିତ ପଞ୍ଚପବନର ତୋଷକ ହୁଅଇ ଏମନ୍ତ ବିଧାନ ଅଛି ।୭୩।

୭୪ଶ ପଦ—ନାସ୍ତିମାନେ ବନଜନ୍ମ (ପଦ୍ମ) ଲକ୍ଷ (ସଦୃଶ) ଷଷ୍ଠୀ-ଘରକୁ ବରାଟକରେ (ଭଉଡ଼ିରେ) ମଣ୍ଡି ମନୋହର କଲେ । ୧ ପଦ୍ମା (୨ ବରାଟକ) ବୀଜକୋଷରେ ମଣ୍ଡିତ ହୋଇଥାଏ ।୭୪।

୭୫ଶ ପଦ—ନାରୀସ୍ଥଳ ବିଯୋଗନଦ୍ରାରେ (ବ୍ରହ୍ମାଙ୍କ ସ୍ତୁତିବଶରୁ ନିଦ୍ରା ବିଯୋଗ ହୁଅନ୍ତେ) ଉଠି କାମ (ଯଥେଷ୍ଟରେ) ମଧୁ (ଦୈତ୍ୟ) ସଙ୍ଗରେ ୧ ବାଦ କରିବା ପାଞ୍ଚକୁ ବିରଚିଲେ । ୨ ଆତ୍ମ (ବ୍ରହ୍ମାଙ୍କର) ୩ ସମ୍ପଦ (ଜ୍ଞାନ) କରିଥିଲେ ଏହି ପାଞ୍ଚକୁ ବିରଚି ଅନ୍ତଃପୁରସ୍ଥା ସ୍ତ୍ରୀମାନେ ବିଯୋଗ-ନଦ୍ରାରେ କାମ (କନ୍ଦର୍ପ) ତାହାର ମଧୁର (ସୁନ୍ଦର) ତହିଁରେ ବାଦ କରିବେ ଏମନ୍ତ ବୋଲି ପୁତ୍ରଙ୍କ ଉଠିଆରି ସମ୍ପଦକୁ କଲେ ।୭୫।

୭୬ଶ ପଦ – ବଂଶ ଏକବନେ (ଏକବଂଶର ବନରେ) ଦୋଳିଶୟନ କରିବାରେ ବଟପତ୍ର ପୁଟରେ ବାଳମୁକୁନ୍ଦ ଶୟନ କଲ୍ପତରୁ ଶୋଭାପାଇଲେ

---

୧—ପ୍ରାଣୋଽପାନଃସମାନଶ୍ଚୋଦାନୋ ବ୍ୟାନଶ୍ଚ ବାୟବ ଇତ୍ୟମରଃ ।
୧—ପଦ୍ମା ପଦ୍ମସଂଖ୍ୟାତେ ସ୍ତ୍ରୀବିଶେଷେ ସରୋରୁହେ ।
୨—ବରାଟକଃ ପଦ୍ମବୀଜକୋଷେ ରଜ୍ଜୌ କପର୍ଦକେ । ଇତି ମେଦିନୀ ।
୧—ପଞ୍ଚବର୍ଷ ସହସ୍ରାଣି ବାହୁପ୍ରହରଣୋ ବିଭୁଃ । ଇତି ଚଣ୍ଡୀସ୍ତୋତ୍ରେ ।
୨—ଅକାରସ୍ତୁ ପିତାମହଃ ଇତ୍ୟେକାକ୍ଷରଃ ।
୩—ସମ୍ପଦ୍ ବ୍ୟବସ୍ଥିତ ଜ୍ଞାନ ସ୍ଥାନ ଲକ୍ଷ୍ମୀଂ ବୃଦ୍ଧି ବସ୍ତୁସମ୍ପତ୍ତି ତମଃ ।

ସ୍ଖଳନେ କର । ବାହୁଉର୍ଦ୍ଧେ ମାର୍କଣ୍ଡେୟ ଥିବାପ୍ରକାର ।୬୭। ବ୍ରହ୍ମର୍ଷି
ନାମ ବହି ଶ୍ରୀରାମ ରାମ । ବୋଲେ ଚନ୍ଦ୍ର ଭଦ୍ର ହେଉ ଏ ପଛେ ରମ୍ୟ ॥
ବଂଶେ ରଘୁରାଘବ ଏ ସେ ନାଥ ଭଣି । ବୋଲାଇବେ ରାବଣାରିରାଜେନ୍ଦ୍ର
ପୁଣି ।୬୯। ବପ୍ତା ଦଶରଥ ରାଜା ଯେଣୁ ସ୍ୱଭାବେ । ବହନ୍ତୁ ଏ ଦାଶରଥି
ନାମକୁ ଏବେ । ୭୦ । ବହିଲେ ଭରତ ନାମ କୈକେୟୀସୁତେ ।
ବୋଇଲେ ସଦା ବଞ୍ଚିବ ଏ ଶୁଭରତେ ।୭୧। ବେନ ସୁତ ସୁମିତ୍ରାର

୬୭ଶ ପଦ—ଦଶରଥରାଜା ବୋଲି ସ୍ଖଳନ ଅର୍ଥେକର ବଢ଼ାନ୍ତେ ବାହୁଉର୍ଦ୍ଧ୍ୱ (ଉର୍ଦ୍ଧ୍ୱ ବାହୁ) ହୋଇ ମାର୍କଣ୍ଡେୟଋଷି ଥିବା ୧ ପ୍ରକାର ଦର୍ଶିଲେ ।୬୭।

୬୮ଶ ପଦ—ବୋଲିଶତ୍ରୁନ ଉତ୍ତାରୁ ବ୍ରହ୍ମର୍ଷି (ବଶିଷ୍ଠ) ନାମ ଦେଲେ (ନାମକରଣ କଲେ) ଜ୍ୟେଷ୍ଠପୁତ୍ରଙ୍କ ୧ଶ୍ରୀରାମ, ରାମ, ପୁଣି ବୋଇଲେ ଏ ରାମ ନାମ ପଛେ ରମ୍ୟ ହୋଇ ରାମଭଦ୍ର ରାମଚନ୍ଦ୍ର ହେଉ ।୬୮।

୬୯ଶ ପଦ—ରଘୁବଂଶରେ ଭବ ହେଲେ ଏଣୁ ଏହାଙ୍କ ନାମ ରାଘବ ହେଉ । ପୁଣି ସେ ନାଥ (ରଘୁନାଥ) ହେଉ ଏମନ୍ତ ଭଣିଲେ । ପୁଣି ସେବ ରାବଣାରି ରାଜେନ୍ଦ୍ର ଏମନ୍ତ ବୋଲାଇବେ ।୬୯।

୭୦ଶ ପଦ—ଯେଣୁ ସ୍ୱଭାବରେ ଦଶରଥ ରାଜା ୧ବପ୍ତା (ପିତା) ତେଣୁ ଏ ଦାଶରଥି ନାମକୁ ବହନ୍ତୁ ।୭୦।

୭୧ଶ ପଦ—ଏ ଉତ୍ତାରୁ କୈକେୟୀ ସୁତଙ୍କୁ ବୋଇଲେ ଏ ସଦା ଶୁଭ ରତରେ ବଞ୍ଚିବ ଏଣୁ ଭରତ ନାମକୁ ବହିଲେ । ସଦା ଜନମାନଙ୍କର ଭରଣ ପୋଷଣ ସକାଶରୁ ଏହାଙ୍କ ନାମ ୧ଭରତ ହେଉ । ୭୧ ।

୧—ପ୍ରକାରୌ ଭେଦସାଦୃଶ୍ୟାବିତି ମେଦିନୀ ।
୧—ଯଦୁକ୍ତଂ ରାମତତ୍ତ୍ୱସାରେ—
ଶ୍ରିୟୋରମଣସାମର୍ଥ୍ୟାତ୍ ସୌନ୍ଦର୍ଯ୍ୟ ଗୁଣଗୌରବାତ୍ ।
ଶ୍ରୀରାମଇତିନାମେଦଂ ତସ୍ୟ ବିଷ୍ଣୋଃ ପ୍ରକୀର୍ତ୍ତିତଂ ।
୧—ବପ୍ତା ପିତର ବାପକେ ଇତି ବିଶ୍ୱଃ ।
୧—ଭରଣାଦ୍ ଭରତଂ ନାମ ଲକ୍ଷଣଂ ଲକ୍ଷଣାନ୍ୱିତଂ ।
ଶତ୍ରୁଘ୍ନଂ ଶତ୍ରୁହନ୍ତାରମେବଂ ଗୁରୁରଭାଷତ । ଇତି ଅଧ୍ୟାତ୍ମରାମାୟଣେ ।

ଦେଖି ହରଷ । ବିଚକ୍ଷଣ ଲକ୍ଷଣମାନଙ୍କେ ପ୍ରକାଶ ।୭୨। ବିହୁଲକ୍ଷଣ ନାମକୁ ଅଗ୍ରଜସୁତ । ତୁବୋଲିବାର କୁମାର ଏହାକୁ ଉଚିତ ।୭୩। ବଡ଼ ଶକ୍ତିମନ୍ତେ ନ ଗଣିବ ଆନରେ । ବୃଦ୍ଧି ହେବ ମେଘନାଦ ତୋଷ ଦାନରେ ।୭୪। ବିଶିଷ୍ଟେ ଯେଣୁ ଶତ୍ରୁଘ୍ନ ହେବ ସହଜେ । ବିଦିତ ଏଣୁ ଶତ୍ରୁଘ୍ନନାମ ଅନୁଜେ ।୭୫। ବିଧାନସୁମିତ୍ରାସୁତ ଦୁହେଁ ସୌମିତ୍ରି ବୋଲନ୍ତି ବୋଲି ବିଗତ ତହୁଁ ସେ ଯତ୍ତି ।୭୬। ବଢ଼ିସୁତେ ଦିନୁ

୭୨ଶ ପଦ—ସେ (ବିଦ୍ଗୁଷ) ସୁମିତ୍ରାଙ୍କର ବେନସୁତଙ୍କୁ ଦେଖି ହୃଷ୍ଟ ହେଲେ । ବିଚକ୍ଷଣ ୧ ଲକ୍ଷଣମାନଙ୍କରେ ପ୍ରକାଶ ଅଟନ୍ତି । ୭୨ ।

୭୩ଶ ପଦ—ଅଗ୍ରଜ (ସୁମିତ୍ରାଙ୍କ ଜ୍ୟେଷ୍ଠ ପୁତ୍ର) ଏ ଲକ୍ଷଣ ନାମ ବହୁ । ସତ ଏହାଙ୍କୁ କୁମାର ବୋଲିବାର ଉଚିତ ଅଟଇ । କୁ (ପୃଥିବୀ) ତହିଁରେ ମାର ପ୍ରାପ୍ତ ଅଟନ୍ତି । ଏ ୧ କୁମାର (କାର୍ତ୍ତିକେୟ) ପର । ୭୩ ।

୭୪ଶ ପଦ—କୁମାର ୧ ଶକ୍ତିମନ୍ତ (ଶକ୍ତିମାନ) ହେଷସ୍ଥରେ ଏ ବଡ଼ ଅନକୁ ଗଣିବ ନାହିଁ । ୨ମେଘନାଦ (ମୟୂର) ତାହାର ତୋଷ ଦାନରେ (ତୋଷ ଦେବାରେ) ବୃଦ୍ଧି ହୁଅନ୍ତି । ଏ ଶକ୍ତିମନ୍ତରେ (ବଳବନ୍ତରେ) ଆନକୁ ଗଣିବେ ନାହିଁ । ମେଘନାଦ (ରାବଣ ପୁତ୍ର) ତାହାର ତୋଷକୁ ୩ଦାନ (ଛେଦନ) କରିବାରେ ବୃଦ୍ଧି ହେବେ (ବଢ଼ିବେ) । ୭୪ ।

୭୫ଶ ପଦ—ଯେଣୁ ୧ ସହଜେ (ସ୍ୱଭାବରେ) ଶତ୍ରୁଘ୍ନ (ବିଶେଷରେ ଶତ୍ରୁହନ୍ତା) ହେବେ ଏଣୁ ଅନୁଜେ (ଲକ୍ଷ୍ମଣାନୁଜେ) ତାଙ୍କଠାରେ ଶତ୍ରୁଘ୍ନ ନାମକୁ ବିଦିତ କଲେ (ପ୍ରକାଶ କଲେ) । ୭୫ ।

୭୬ଶ ପଦ—ବିଧାନ ଏ ସୁମିତ୍ରାସୁତ ହେବାରୁ ଏ ଦୁହେଁ ସୌମିତ୍ରି

୧—ଚିହ୍ନଂ ଲକ୍ଷ୍ମ ଚ ଲକ୍ଷଣଂ । ଲକ୍ଷଣଂ ଋଷି ଚିହ୍ନେ ଚ ଇତି ମେଦିନୀ ।

୧—ଷାଣ୍ମାତୁରଃ ଶକ୍ତି ଧରଃ କୁମାର ଇତ୍ୟମରଃ ।

୧—ଶକ୍ତିବଳେ ସ୍ତ୍ରିୟାବାଦୌ ଶକ୍ତିଃ ପ୍ରହରଣାନ୍ତରେ ଇତି ବିଶ୍ୱଃ ।

୨—ମେଘେନ ନଦତୀତି ମେଘନାଦୋ ମୟୂରଃ ।

୩—ଦାନଂ ଗଜମଦେ ତ୍ୟାଗେ ପାଳନ ଛେଦଶୁଦ୍ଧିଷୁ ଇତି ମେଦିନୀ ।

୧—ସହଜସ୍ତୁ ନିସର୍ଗେ ସ୍ୟାତ୍ ସହଜେ ଇତି ମେଦିନୀ ।

ଦିନୁ ପ୍ରଶ୍ନ ଉଦୟେ । ବଳକ୍ଷପକ୍ଷରେ କଳାକର ପରିଯେ ।୭୭।ବାଙ୍
ଧରି ଉତ୍ତ ଶୋଭ କେବା କହିବ । ବଡ଼କବି ଯହିଁ ଜଡ଼ ହୋଇରହିବ
ବିହାର ରଚଲେ କମେ କମେ ଚତ୍ୱରେ । ବ୍ୟଗ୍ରଗତି ଶିଶୁସଙ୍ଗେ
ରଙ୍ଗେ ସତ୍ୱରେ ।୭୯। ବାଲ୍ୟେ ଜଗତି ରଚନା ନୋହେ ବିସୋର ।
ବାଲୁକାରେ ସର୍ଜନା ଯେ ସେହି ପ୍ରକାର ।୮୦। ବ୍ରତବିଧାନସମୟେ
ତହିଁ ହୋଇଲା । ବଦ୍ରିକାରେ ନରନାରାୟଣ ଯା ଲୀଳା ।୮୧। ବରିଷ୍ଠ

ବୋଲନ୍ତି । ଏମନ୍ତ ବୋଲି ୧ ଯତି (ବଶିଷ୍ଠ) ସେଠାରୁ ବିଗତ ହେଲେ (ଗଲେ) । ୭୬ ।

୭୭ଶ ପଦ—ନାମକରଣ ଦିନରୁ ଦିନ ଦିନ ସୁତମାନେ ବଢ଼ନ୍ତେ ପ୍ରଶ୍ନ (ପ୍ରାପ୍ତି) ବଳକ୍ଷ ପକ୍ଷରେ (ଶୁକ୍ଳପକ୍ଷରେ) କଳାକର (ଚନ୍ଦ୍ର ପ୍ରାୟ) ଉଦୟ ହେଲେ । ୭୭ ।

୭୮ଶ ପଦ—କ୍ରମରେ ବାଙ୍କ ଧରି ଉଭା ହେବା ଶୋଭାକୁ କେବା (ଯେଉଁ ଲୋକ ଅବା) କହିବ ? ଯହିଁ (ଯେଉଁ ଶୋଭା କଥନରେ) ବଡ଼ କବି (ମହାକବି) ଜଡ଼ ହୋଇ ରହିବ (ମୂକ ହୋଇଯିବ) । ୭୮ ।

୭୯ଶ ପଦ—କ୍ରମେକ୍ରମେ ୨ଚତ୍ୱରେ (ଅଙ୍ଗଣରେ) ଶିଶୁ (ବାଳକଙ୍କ) ସଙ୍ଗ ରଙ୍ଗରେ ବ୍ୟଗ୍ରଗତି (ଶୀଘ୍ରଗତି) କରି ସତ୍ୱରେ ବିହାର (କେଳି) ରଚଲେ । ୭୯ ।

୮୦ଶ ପଦ—ବାଲ୍ୟେ (ବାଲ୍ୟାବସ୍ଥାରେ) ରାମଚନ୍ଦ୍ରଙ୍କର ଜଗତି ରଚନା (ଭୁବନରଚନା) ବିସୋର (ପାସୋର) ନୋହିଲା । ସେପ୍ରକାରେ (ସୃଷ୍ଟସର୍ଜନା ପ୍ରକାରେ) ବାଲୁକାରେ (ବାଲିରେ) ଜଗତିରଚନାକଲେ ।

୮୧ଶ ପଦ—ବଦ୍ରିକାରେ (ବଦରିକାଶ୍ରମରେ) ଯା (ଯେଉଁନରନାରାୟଣ) ଲୀଳା ହୋଇଥିଲା ଏମନ୍ତ ସେ ଯେହୁଁ ରାମଚନ୍ଦ୍ର ତାହାଙ୍କର ତହିଁ (ଅଯୋଧ୍ୟାରେ) ସମସ୍ତ କୁଅଁରେ ବ୍ରତବିଧାନ ହେଲା ଓଁ ନାରାୟଣ ଲୀଳା ସେଠାରେ ହେଲା । ୮୧ । (ଦଣ୍ଡଧାରଣ ମାତ୍ରେଣ ନରୋ ନାରାୟଣୋ ଭବେତ୍)

୧—ଯେ ନର୍ଜିତେନ୍ଦ୍ରିୟଗ୍ରାମା ଯତନୋ ଯତଯୁଷ୍ଟତେ । ଇତ୍ୟମରଃ ।
୨—ଅଙ୍ଗଣଂ ଚତ୍ୱରାଜିର ମିତ୍ୟମରଃ ।

ସ୍ୱତ ସୃଷ୍ଟିରେ ଶିଖଣ୍ଡ ଧରେ । ବାହ୍ନାରଲେ ନଗରଭ୍ରମଣ ଇଚ୍ଛାରେ ବାଳକିଶୋର ଭବକୁ ପ୍ରକାଶେ ତହିଁ । କାହଗ୍ରୀବହୋଇଥିଲେପୂର୍ବରେ ଯେହି ।୮୩। ବୃଷ ଧନୁଂଯୁକ୍ତ ରାମଚନ୍ଦ୍ର ସହଜେ । ବନ୍ଦାରୁ ସେ

---

୮୨ଣ ପଦ—ସ୍ୱତ (ଯଥ ଅର୍ଥରେ) ସୃଷ୍ଟି (ସଂସାର) ତହିଁରେ ବର୍ହ (ମୟୂର) ୧ଶିଖଣ୍ଡ (ବର୍ହକୁ) ଧରଇ । ୨ନଗ (ବୃକ୍ଷ ପର୍ବତ) ତହିଁରେ ଇଚ୍ଛାରେ ଭ୍ରମଣିକ ବସ୍ତାର କରଇ । ରାମଚନ୍ଦ୍ର ସୃଷ୍ଟିରେ ସ୍ୱତଃସିଦ୍ଧ ହୋଇ ବର (ଶ୍ରେଷ୍ଠ) ହ୍ର (କଷ୍ଟସ୍ଥ) ୩ଶିଖଣ୍ଡ (କାକପକ୍ଷକୁ) ଧଇଲେ । ନଗଭ (ପଥନ) ତହିଁରେ ଇଚ୍ଛାରେ ଭ୍ରମଣିକ ବସ୍ତାର କଲେ । ୮୨ ।

୮୩ଣ ପଦ—ଯେହ୍ନ ( ଯେଉଁ ରାମଚନ୍ଦ୍ର ) ପୂର୍ବରେ (ପୂର୍ବକାଳରେ) ବାହ୍ନଗ୍ରୀବ (ହୟଗ୍ରୀବ) ହୋଇଥିଲେ ତହୁଁ (ସେ ସ୍ୱର୍କାଂଶକୁ) ବାଳ (ବାଳକ ଅବସ୍ଥା) ଓ ୧ କିଶୋର (କୈଶୋର୍ଯ୍ୟ) ଅବସ୍ଥାକୁ ପ୍ରକାଶ କଲେ । ବାଳଅଶ୍ୱକୁ କିଶୋର ବୋଲି । ୮୩ ।

୮୪ଣ ପଦ—ସେ ଦଶରଥ ତନୟ ତାହାଙ୍କ ନାମତ ରାମଚନ୍ଦ୍ର ସେ ଗୋଟିଏ ରମଣୀୟ ଚନ୍ଦ୍ର ହେଲେ, ଚନ୍ଦ୍ର ଯେରୂପ ବୃଷ (ବୃଷରାଶିରେ) ଧନୁ (ଧନୁରାଶିରେ) ଯୁକ୍ତ ଥାନ୍ତି । ଏ ରାମଚନ୍ଦ୍ର ସହଜେ ବୃଷ (ଶ୍ରେଷ୍ଠ) ଧନୁରେ (ରୂପରେ) ଯୁକ୍ତ କିମ୍ବା ୧ବୃଷ (ଧର୍ମ) ତହିଁରେ ଯୁକ୍ତ ହେଲେ, ଯେଉ

---

୧—ଶିଖଣ୍ଡୋ ବର୍ହ ଚନ୍ଦ୍ରକୌ ଋତ ମେଦକା ।
୨—ଶୈଳ ବୃକ୍ଷୌ ନଗାବଗୌ ଇତ୍ୟମରଃ ।
୩—କାକପକ୍ଷଃ ଶିଖଣ୍ଡକ ଇତ୍ୟମରଃ ।
୧—ବାଳଃ କିଶୋର ଇତ୍ୟମରଃ ।
କୌମାରଂ ପଞ୍ଚମାବ୍ଦଂ ଭୁ ପୌଗଣ୍ଡଂ ଦଶମାବଧି ।
କିଶୋର ମା ପଞ୍ଚଦଶାଦ୍ ଯୌବନଂ ଭୁ ତତଃପରଂ । ଇତ ।
୧—ବୃଷୋ ଧର୍ମୌ ବୃଷଃ ଶ୍ରେଷ୍ଠୋ ବୃଷୋ ଗୌ ମୂଷକୋ ବୃଷ ଇତ ଧ୍ୱନମଞ୍ଜରୀ

ଶ୍ରୁତିରୂପ ବିଦ୍ୟାଧର ଯେ ୮୪। ବିନସ୍ତୀ ଦାସୀ ପ୍ରକାରେ ଶାରଦା ଯାର । ବିଣା କେଉଁ ବିଦ୍ୟାଆଦି ସ୍ମୃତିସାର ।୮୫। ବିଭ୍ରାଣରୁ ଦୁକୂଳ ମନକୁ ଆଣିଲ । ବଡ଼ସ୍ନେହ ପୀତାମ୍ବର ନାମେ ଜାଣିଲ ।୮୬।ବିସୋର ନୋହି. କୃପଣ ଧନର ଭାବ । ବିପ୍ରା ମାତାମାନଙ୍କର ମାନସୁଁ ଲବ ।୮୭। ବଡ଼ କି ଏ ନଗର ଜନଙ୍କ ଏ ଭାବ । ବିଖାଣି ହୋଇଲେ ଏକା ସେହି

ରାମ ଶ୍ରୁତିରୂପ (ବେଦରୂପ) ହୋଇ ବିନ୍ଧାରୁ (ବ୍ରହ୍ମାଦି ଜଗତ୍ସୃଜନବନ୍ଧ୍ୟ) ଅଟନ୍ତି ସେ ବିଦ୍ୟାଧର (ଷଡ଼୍‌ବିଂଶ ବିଦ୍ୟାକୁ) ଧାରଣ କଲେ । ୮୪ । ÷

୮୫ଶ ପଦ—ଯାର (ଯେଉଁ ରାମଚନ୍ଦ୍ରଙ୍କର) ଶାରଦା (ସରସ୍ୱତୀ) ବିନସ୍ତୀ ଦାସୀ ପ୍ରକାର ଅଟନ୍ତି ତାହାଙ୍କୁ ୧ସ୍ମୃତି (ମନ୍ୱାଦି ଶାସ୍ତ୍ର) ଆଦି ଭିନ୍ନ ସାର କେଉଁ ଶାସ୍ତ୍ର ବିଣା ହେବ ? ଅର୍ଥାତ କୌଣସି ଶାସ୍ତ୍ର ବିଣା ନୋହିବ ଏହାଦ୍ୱାରା ସକଳ ଶାସ୍ତ୍ର ପାରଙ୍ଗମତ୍ୱ ସୂଚିତ ହେଲା । ୮୫ ।

୮୬ଶ ପଦ—ଦୁକୂଳ (ପୀତବସନ) ତାକୁ ବିଭ୍ରାଣ (ପରିଧାନ) କରିବାରୁ ଜାଣିଲ ପୀତାମ୍ବର ନାମରେ ଏହାଙ୍କର ବଡ଼ ସ୍ନେହ ଏମନ୍ତ ମନକୁ ଆଣିଲ । ଏ ପଦ ଉତ୍ପ୍ରେକ୍ଷା ହେଲା । ୮୬ ।

୮୭ଶ ପଦ—କୃପଣ (ଦରିଦ୍ର) ତାହାର ଧନର ଭାବ (ପ୍ରାପ୍ତଧନର ଭାବରୁ) ଯେପରି ବିସୋର ନ ହୁଏ ସେହିପରି ବିପ୍ରା (ପିତା) ଓ ମାତା-ମାନଙ୍କର ମାନସରୁ ଲବ ମାତ୍ର ବିସୋର (ବିସ୍ମରଣ) ନୋହିଲେ । ୮୭ ।

୮୮ଶ ପଦ—ପିତା ମାତାଙ୍କର ଏପରି ବାତ୍ସଲ୍ୟ ହେବାର ବଡ଼ କି ? ଅର୍ଥାତ୍ ଏ ବଡ଼ ନୁହଇ । ନଗରସ୍ଥ ଜନମାନଙ୍କର ଏ ଭାବ ହେଲା । ଏକା (କେବଳ) ସେହି ପ୍ରସ୍ତାବ (ବାତ୍ସଲ୍ୟ ରସରଙ୍ଗ) ତାକୁ ବିଖାଣି ହୋଇଲେ (କହି ହୋଇଲେ) । ୮୮ ।

÷—ଏ ପଦ ଶ୍ଳିଷ୍ଟରୂପକ ହେଲା ଯଥା

ରାଜହଂସୋପଭୋଗାର୍ଥଂ ଭ୍ରମଚ୍ଚ ପ୍ରାର୍ଥ୍ୟସୌରଭଂ ।
ପୁଷ୍କାତି ସୁଷମାଂ କାଂଚନ୍ମୂଖପଙ୍କେରୁହଂ ତବ । ଇତି ।

୧—ସ୍ମୃତି ସ୍ତୁ ଧର୍ମସଂହିତା ଇତ୍ୟମର ।

୧—ପୂର୍ବଂ କଥିତଂ ଅଙ୍କେ ମନୋ ଧ୍ରୁବ ପ୍ରାପ୍ସ ଇତି ।

ପ୍ରସ୍ତାବ ।୮୮। ବର୍ଦ୍ଧିତ ସେ ବାଣିଜ୍ୟ ଧନର ପ୍ରକାର । ବିଦେଶେ
ହୋଇଲା ଦିନୁଁ ଦିନୁଁ ପ୍ରଚୁର ।୮୯। ବଳୀବର୍ଦ୍ଦ ଯହିଁ ଜନମୁଖ ହୋଇଲେ
ବିନ୍ୟସ୍ତ ସ୍ଥାନ ସ୍ଥାନକେ ବହୁ ସେ କଲେ ।୯୦। ବାତ୍ସଲ୍ୟ ରସ ବର୍ଣ୍ଣନେ
ରାମଭଦ୍ରର । ବଚନ ମନ ପବିତ୍ର ହୋଇଲା ମୋର ୯୧। ବୀରବର
ଉପେନ୍ଦ୍ର ଭଞ୍ଜ ମୋ ନାମ । ବସ୍ତୁ ଶୋଭିପଦେ କଲା ଏ ଛାନ୍ଦ ରମ୍ୟ ୯୨।

—o—

---

୮୯ଶ ପଦ – ବାଣିଜ୍ୟ (ବଣିକ କର୍ମ) ଯହିଁରେ ଧନର ପ୍ରକାର ଦିନକୁ ଦିନ ବିଦେଶରେ ପ୍ରଚୁର ହୋଇ ବର୍ଦ୍ଧିତ (ବଢ଼ିଲା), ଯେରୂପ ବାଣିଜ୍ୟରେ ଧନ ଦିନକୁଦିନ ବଢ଼ଇ ସେରୂପ ରାମଚନ୍ଦ୍ରଙ୍କ ପ୍ରସଙ୍ଗ ଦିନକୁଦିନ ବଢ଼ିଲା ଏ ତାତ୍ପର୍ଯ୍ୟାର୍ଥ ।୮୯।

୯୦ଶ ପଦ—ଯହିଁ (ଯେଉଁ ବିଷୟରେ) ଜନଙ୍କ ମୁଖମାନେ ବଳୀବର୍ଦ୍ଦ (ବଳଦ) ହୋଇଥିଲେ । ସେ ରାମ ଚରିତ ଧନକୁ ବହୁ ସ୍ଥାନେ ସ୍ଥାନେ (ପ୍ରତି ସ୍ଥାନରେ) ବିନ୍ୟସ୍ତ କଲେ ⁞ ।୯୦।

୯୧ଶ ପଦ—ରାମଭଦ୍ରଙ୍କର ୧ବାତ୍ସଲ୍ୟ ରସ (ସ୍ନେହଯୁକ୍ତ ଭାବ ରସ) ତାକୁ ବର୍ଣ୍ଣନା କରିବାରେ ମୋହର ମନ ବଚନ ଏ ଦୁହେଁ ପବିତ୍ର ହେଲେ, (ସ୍ମରଣରେ ମନ ବର୍ଣ୍ଣନରେ ବଚନ) ।୯୧।

୯୨ଶ ପଦ—ମୋହର ବୀରବର ପଦ, ନାମ ଉପେନ୍ଦ୍ର ଭଞ୍ଜ ମୁଁ ଏ ପଞ୍ଚମ ଛାନ୍ଦକୁ ବସ୍ତୁଶୋଭି ପଦରେ ରମ୍ୟ (ମନୋହର) କଲି ।୯୨।

—o—

---

⁞ —ଏ ପଦ ବ୍ୟସ୍ତରୂପକ ହେଲା ଯଥା—

ଭୃଙ୍ଗନୀ ମୃଣାଳିନୀ ବଦନଂ ସୁଧାଂଶୁ ଇତ୍ୟାଳଂକାରଶେଖରେ ।

ଜନମାନେ ରାମ ବାକ୍ୟାଦି ଚରିତ ପ୍ରତିସ୍ଥାନରେ ବିଖ୍ୟାତ କଲେ ଏ ତାତ୍ପର୍ଯ୍ୟାର୍ଥ ।

୧—ସ୍ନିଗ୍ଧସ୍ତୁ ବତ୍ସଲଃ ବତ୍ସଲସ୍ୟ ଭାବଃ ବାତ୍ସଲ୍ୟଂ ।

## ଷଷ୍ଠଛାନ୍ଦ ।

ରାଗ ମାଳବ, ଗୌଡ଼ାକାଣ୍ଡୀ ।

ବୁଧେ ସାବଧାନେ ଏହୁ ଗୀତିର । ବାକସ୍ତୁଷ୍ଟକ ବିସ୍ତର କର ।
ବିଶୁଦ୍ଧ ସିଦ୍ଧବନେ ମୁନି ଯାଗ । ବିସିଦ୍ଧକରଣେ ରାକ୍ଷସବର୍ଗ ।୧।
ବିଦିତ ହୋଇ ସୁବାହୁ ମାରୀଚେ । ବଚନ ଶୂନ୍ୟରୁ ଶୁଭିଲା ଉଚେ ।
ବିକୁକ୍ଷି ବଂଶେ ଜାତ ରାମ ଆଣ । ବୈବସ୍ୱତ ଏ ଗଣେ ତା ମାର୍ଗଣ ।୨।
ବିଶ୍ୱାମିତ୍ର ଶୁଣି ଉଠି ଗମିଲେ । ବେଗେ କୋଶଳଦେଶେ ସେ ଦେଖିଲେ

ଷଷ୍ଠଗ୍ରନ୍ଥ ।

୧ମ ୨ୟ ପଦ—ହେ ବୁଧେ (ପଣ୍ଡିତମାନେ) ସାବଧାନେ (ଏକମନା) ହୋଇ ଏହୁ ଗୀତ (ବୈଦେହୀଶବିଳାସ) ଏହାର ବାକସ୍ତୁଷ୍ଟ (ବଚନ ସ୍ତୁତି) ଏହାକୁ ବିସ୍ତର କର । ବିଶୁଦ୍ଧ ଯେଉଁ ସିଦ୍ଧବନ ତହିଁରେ ରାକ୍ଷସ-ବର୍ଗ (ରାକ୍ଷସସମୂହ) ମୁନି (ବିଶ୍ୱାମିତ୍ରଙ୍କ) ଯାଗକୁ ବିସିଦ୍ଧ କରଣେ (ଅସିଦ୍ଧ କରିବାକୁ) ସୁବାହୁ ମାରୀଚ (ଦୁଇରାକ୍ଷସ) ବିଦିତ (ପ୍ରକାଶମାନ ହୋଇ) ଯାଗ ବିଘ୍ନ କରନ୍ତେ, ଶୂନ୍ୟରୁ ଉଚ୍ଚରେ ଏମନ୍ତ ବଚନ ଶୁଭିଲା । ବିକୁକ୍ଷି (ସୂର୍ଯ୍ୟବଂଶୀୟ ରାଜା) ତାହାଙ୍କ ବଂଶରେ ଜାତ ରାମକୁ ଆଣ । ତାହାଙ୍କ ମାର୍ଗଣ (ଶର) ଏ ଗଣେ (ଏ ରାକ୍ଷସ ଗଣରେ)¹ ବୈବସ୍ୱତ (ଯମ) । ଯମ ଯେରୂପ ପ୍ରାଣିମାନଙ୍କ ପ୍ରାଣ ହରଇ ସେରୂପ ରାମ ବାଣ ରାକ୍ଷସଙ୍କ ପ୍ରାଣହରିବ ଏ ଭାବ ।୧।୨।

୩ୟ ପଦ—ବିଶ୍ୱାମିତ୍ର ଋଷି ଏମନ୍ତ ଆକାଶବାଣୀ ଶୁଣି ଉଠି ଗମିଲେ (ଗଲେ) । ବେଗେ ଯାଇ କୋଶଳ ଦେଶ (ଅଯୋଧ୍ୟାପୁରୀ) କୁ ଦେଖିଲେ । ବାରସ୍ୱତୀ (ପିତାମହ ପୁରୀର) ଛବିକି ସେ ପୁରୀ ବହିଅଛି ? ଯେଣୁ ଓଁକାର-ବନ୍ତ (ମୂର୍ତ୍ତିମନ୍ତ) ବ୍ରହ୍ମ (ପରବ୍ରହ୍ମ) ରାମଙ୍କୁ ଧରିଅଛି । ଏଣୁ ବାରସ୍ୱତୀ

୧—କାଳୋଦଣ୍ଡଧରଃ ଶ୍ରାଦ୍ଧଦେବୋ ବୈବସ୍ୱତୋଽନ୍ତକଃ । ଇତ୍ୟମରଃ ।

ବାରସ୍ୱର୍ଗ ଛବ ଅଯୋଧ୍ୟାପୁରୀ । ବ୍ରହ୍ମ ଆକାରବନ୍ତ ଯେଣୁ ଧରି ।୩।
କରଣେ ଶୋଭା ଦିବ୍ୟକନ୍ୟା ପରି । ବର ଖୋଜୁଅଛୁ ସମାନକରି ।
ବନ୍ଧିଅଛୁ ପୁଣି ସୁମନମାଳା । ବିପଞ୍ଚି-ବାଦିନୀ ଆଳରେ ମେଳା ।୪।

---

ପୁରୀ (ବୈକୁଣ୍ଠ) ସମାନ ହେଲା । ସେ ଅକାରବନ୍ତ ୧ବ୍ରହ୍ମାଙ୍କୁ ଧରିଅଛୁ ଏ ୨ ଆକାରବନ୍ତ ରାମ ରୂପୀ ବ୍ରହ୍ମକୁ ଧରିଅଛୁ । ଏପଦ ପ୍ରକୃତ ଶ୍ଳେଷହେଲା ୦ ।୩।

୪ଥ ପଦ—ସେ ଅଯୋଧ୍ୟାପୁରୀ ଦିବ୍ୟ କନ୍ୟା ପରି ଶୋଭା ପାଉଅଛୁ । କନ୍ୟା ଯେରୂପ କରଣେ (କରିବାରେ) ଶୋଭାପାଏ ତଦ୍ରୂପ ଏ ୧କରଣ (ପ୍ରାକାର) ଚହିଁରେ ଶୋଭା ପାଉଅଛୁ । କନ୍ୟା ଯେରୂପ ସମାନ କର (ତୁଲ୍ୟକର) ବର (ଜାମାତା) ଖୋଜୁଥାଏ ଏ ତଦ୍ରୂପ ୨ବର (ଶ୍ରେଷ୍ଠରେ) ସମାନ କର (ତୁଲ୍ୟ କର) ଖୋଜୁଅଛୁ ଅର୍ଥାତ୍ ତାହା(ଅଯୋଧ୍ୟା)ସମାନ କେହି ନାହିଁ କେବଳ ସେହି । କନ୍ୟା ଯେରୂପ ୩ସୁମନା ମାଳା (ପୁଷ୍ପମାଳା) ବନ୍ଧୁଥାଏ ଏ ତଦ୍ରୂପ ସୁମନା (୪ମାଳା) ଧୀର ସମୂହ ତାକୁ ବନ୍ଧୁଅଛୁ । କନ୍ୟା ଯେରୂପ ବିପଞ୍ଚି (ବୀଣା)ବାଦିନୀ (ବାଜିଣୀ) ସଖୀଙ୍କ ସଙ୍ଗରେ ମେଳ ହୋଇଥାଏ ଅଯୋଧ୍ୟା ୫ବିପଞ୍ଚି (ବୀଣା)ଆଦି ୬ବାଦିନୀ ଆଳରେ (ବାଦ୍ୟସମୂହରେ) ମେଳ ହୋଇଅଛୁ ।୪।

---

୧—ବେଦସ୍ତତ୍ତ୍ୱଂ ତପୋ ବ୍ରହ୍ମ ବ୍ରହ୍ମା ବିପ୍ରଃ ପ୍ରଜାପତିଃ । ଇତ୍ୟମରଃ ।
୨—ଆକାରେ ବିଦ୍ୟତେ ଯସ୍ୟ ସ ଆକାରବାନ ।
୦—ତଦୁକ୍ତମଳଂକାରଶେଖରେ—
ବିଭକ୍ତ ପଦବର୍ଣ୍ଣାନାଂ ଲିଙ୍ଗସ୍ୟ ବଚନସ୍ୟ ଚ ।
ସ୍ୱଭାବପ୍ରକୃତ୍ୟୋର୍ଭେଦେନ ଶ୍ଳେଷାଃସ୍ୟୁ ପ୍ରତ୍ୟୟସ୍ୟଚ ।
୧—ପ୍ରାକାରେ କରଣଃ ଶାଳ ଇତ୍ୟମରଃ ।
୨—ବରେ ଜାମାତରି ଶ୍ରେଷ୍ଠେ ଇତ୍ୟମରଃ ।
୩—ସୁମନା ପୁଷ୍ପମାଲତ୍ୟୋ ସ୍ତ୍ରିୟାଂ ଚ ନାବଧୀରଯୋଃ ।
୪—ମାଳା ସ୍ରକ୍ ପଂକ୍ତି ବାନନ ଇତି ଶବ୍ଦମାଳା ।
୫—ଅନ୍ତୌ ବୀଣାକୁ ବଲ୍ଲକୀ ବିପଞ୍ଚୀ ସ୍ୟାତ୍ ତନ୍ତ୍ରିଭି ସପ୍ତଭି ପରିବାଦିନୀତ୍ୟମରଃ

ବିରଳ ମୁଖର-ଡିଣ୍ଡିମ ଶୁଭେ । ବିମୋହିତ କରେ ଜଗତି ଶୁଭ୍ରେ ।
ବହୁମୂଲ୍ୟ ବାସ ଅଙ୍ଗୀକାରି ସେ । ବିହେ ନୃପର ମୋଦକୁ ବିଶେଷେ ॥୫
ବିଷ୍ଣୁ ପରିଯେ ଲକ୍ଷ୍ମୀ ଆଲିଙ୍ଗନ । ବିହାର ଚତୁର-କରେ ରଞ୍ଜନ ।

୫ମ ପଦ—କନ୍ୟା ପକ୍ଷରେ ବିରଳ ହୋଇ ମୁଖର ଡିଣ୍ଡିମ(ହୁଳହୁଳି) ଶୁଭୁଥାଏ, ଅଯୋଧ୍ୟା ପକ୍ଷରେ ବିରଳ(ନିର୍ମଳ)ହୋଇ ମୁଖର (ଶବ୍ଦାୟମାନ) ୧ଡିଣ୍ଡିମ (ବାଦ୍ୟ ବିଶେଷ) ଶୁଭୁଅଛି । କନ୍ୟା ୨ଶୁଭରେ (ଉଦ୍ଦୀପ୍ତିରେ) ଜଗତ (ଭୁବନସ୍ଥ ଜନଙ୍କୁ)ଙ୍କ (ବିଶେଷରେ) ମୋହିତ କରୁଥାଏ, ଅଯୋଧ୍ୟା ଶୁଭ୍ର (ଶୁକ୍ଳ) ଜଗତି (ଅଟ୍ଟାଳିକାରେ) ଜନମାନଙ୍କୁ ବିମୋହିତ କରୁଅଛି । କନ୍ୟା ୩ବହୁମୂଲ୍ୟ ବାସ ( ବହୁମୂଲ୍ୟ ବସ୍ତ୍ର ) ଅଙ୍ଗୀକାର କରେ, ଅଯୋଧ୍ୟା ବହୁମୂଲ୍ୟ ବାସ (ଗୃହକୁ) ଅଙ୍ଗୀକାର କରୁଅଛି । କନ୍ୟା ନୃପର ( ସ୍ୱୟମ୍ବ-ରାଗତ ଭୂପମାନଙ୍କର) ୪ମୋଦକୁ ବିଶେଷରେ ବିହେ । ଅଯୋଧ୍ୟା ନୃ-(ମନୁଷ୍ୟଙ୍କର) ପରମୋଦକୁ (ପ୍ରମୋଦକୁ) ହର୍ଷକୁ ବହୁଅଛି ।୫।

୬ଷ୍ଠ ପଦ—ପୁଣି ସେ ଅଯୋଧ୍ୟା ବିଷ୍ଣୁପ୍ରାପ୍ତ ହୋଇଅଛି । ବିଷ୍ଣୁ ଲକ୍ଷ୍ମୀ (ପତ୍ନୀଙ୍କୁ) ଆଲିଙ୍ଗନ କରନ୍ତି ଅଯୋଧ୍ୟା ୧ଲକ୍ଷ୍ମୀ (ଶୋଭା ବା ସମ୍ପତ୍ତିକୁ) ଆଲିଙ୍ଗନ କରୁଅଛି । ବିଷ୍ଣୁ ଚତୁର କରରେ ( ଚତୁର ଭୁଜରେ ) ୨ରଞ୍ଜିତ ହୋଇ ବିହାର କରନ୍ତି । ଅଯୋଧ୍ୟା ଚତୁର (ଜନମାନଙ୍କରେ) ରଞ୍ଜିତ ହୋଇ ବିହାର କରେ । ଯେହୁ (ଯେଉଁ) ବିଷ୍ଣୁ ୩ବି (ପକ୍ଷୀ) ନାୟକ ( ପକ୍ଷୀଶ୍ରେଷ୍ଠ ଗରୁଡରେ ) ସଦା ଯୁକ୍ତ ଥାନ୍ତି । ଯେହୁ (ଯେଉଁ) ଅଯୋଧ୍ୟା ବି (ବିଶେଷରେ) ନାୟକ (ନାଥ) ଦଶରଥଙ୍କ ଦ୍ୱାରା ସଦା ଯୁକ୍ତ

୧—ବାଦ୍ୟପ୍ରଭେଦା ଡମରୁ ମଡ୍ଡୁଡିଣ୍ଡିମ ଝର୍ଝରା ଇତ୍ୟମରଃ ।
୨—ଶୁକ୍ଳ ମୂର୍ଦ୍ଧ୍ନିପ୍ର ଶୁଭ୍ର ସ୍ୱୋରତ ମେଦିନୀ ।
୩—ବହୁମୂଲ୍ୟଂ ମହାଧନମିତ୍ୟମରଃ ।
୪—ପ୍ରମଦାମୋଦସମ୍ମଦା ଇତ୍ୟମରଃ ।
୧— ଲକ୍ଷ୍ମୀଃ ସମ୍ପତ୍ତିଶୋଭୟୋ ଋଦ୍ଧ ମେଦିନୀ ।
୨— ରଞ୍ଜନୋ ରାଗଜନନେ ରଞ୍ଜନଂ ରକ୍ତଚନ୍ଦନେ । ଇତି ମେଦିନୀ ।
୩—ବି ନାୟକୋ ବିଧୁ ରକେ ଖାନ୍ଦେ ନାଥେ ହରୌ ଜନେ ଇତି କୁମୁଦାକରଃ

ବିନାୟକରେ ସଦା ଯୁକ୍ତ ସେହି । ବହୁଳ ଭକ୍ତଭାବ ଖ୍ୟାତ ଯହିଁ ।୬।
ବାସ୍ତବ୍ୟ ଆପଣ ପରା କେ ଅଛି । ବଇଲେ ପଦାର୍ଥ ନ ତୁଟେ କିଛି ।
ବଣିଜାର ହସ୍ତ ସ୍ୱର୍ଗ ପ୍ରକ୍ଷିତ । ବିଶ୍ୱାବସୁ ଛନ୍ତି ସବୁ ଜାଣନ୍ତି ।୭।
ବନ୍ଧକୁମୁଦର କି ତନୁବାସ୍ତୁ । ବିଶଦ ନୀଳ ଅମ୍ବର ଉଦୟୁ ।
ବ୍ରଜଜନକର ଜାହ୍ନବୀ ଲକ୍ଷଣେ । ବିଶୁଦ୍ଧ ପୟ ଉଦୟ କରଣେ ।୮।

---

ହୋଇଅଛି । ଯହିଁ ( ଯେଉଁ ବିଷ୍ଣୁଙ୍କଠାରେ ) ବହୁଳ ହୋଇ ଭକ୍ତମାନଙ୍କ ଭାବ ଖ୍ୟାତ ହୋଇଅଛି । ଯହିଁ ( ଯେଉଁ ଅଯୋଧ୍ୟାରେ ) ୪ ବହୁଳ (ପ୍ରଚୁର) ୫ ଭକ୍ତ (ଅନ୍ନଭ) ଭାବ ଖ୍ୟାତ ହୋଇଅଛି ।୬।

୭ମ ପଦ—ବାସ୍ତବ୍ୟରେ ୧ ଆପଣ ( ହଟ୍ଟ ବିକ୍ରୟଶାଳା) ତାହାର ପରା କେ ଅଛି ? ଅର୍ଥାତ୍ କେହି ନାହିଁ । ଯହିଁରୁ ପଦାର୍ଥକୁ ବଇଲେ ( ବ୍ୟୟ କଲେ ) କିଛି ନ ତୁଟଇ ( ପୂର୍ଣ୍ଣ ହୋଇଥାଇ ) । ବଣିଜାର ( ବଣିକ ) ତାହାର ହସ୍ତ (କର) ସେ ସ୍ୱର୍ଗ ଏମନ୍ତ ପ୍ରକ୍ଷିତ ହେଉଅଛି । ସ୍ୱର୍ଗରେ ବିଶ୍ୱାବସୁ (ଗନ୍ଧର୍ବ ବିଶେଷ) ଅଛନ୍ତି ସବୁକଥା ଜାଣନ୍ତି । ବଣିଜାର ହସ୍ତ ବିଶ୍ୱ (ଗ୍ରାହକାଣି ପରିମିତ ) ସେ ବସୁଛନ୍ତି । ସବୁ ଜାଣନ୍ତି (ହାତ ଚିନା ମାତ୍ର) ଏମାନ ଜାଣିଅଛନ୍ତି ।୭।

୮ମ ପଦ—ତନୁବାସ୍ତୁ (ତନ୍ତ୍ର ) କୁମୁଦବନ୍ଧୁ ( ଚନ୍ଦ୍ର ) କି ସେ ? ଚନ୍ଦ୍ର ବିଶଦ (ଶୁକ୍ଲ) ଅଟନ୍ତି "ପୁଣି" ନୀଳ (ଶ୍ୟାମଳ) ଅମ୍ବର (ଆକାଶରେ ) ଉଦୟ ହୁଅନ୍ତି । ତନୁବାସ୍ତୁ ବିଶଦ (ଶୁକ୍ଳ ) ନୀଳ ( ନୀଳବର୍ଣ୍ଣ ) ଅମ୍ବର (ବସ୍ତ୍ରମାନଙ୍କୁ) ଉଦୟ କରନ୍ତି । ବ୍ରଜଜନଙ୍କ ( ଗୋପସମୂହ ) ଜାହ୍ନବୀ (ଗଙ୍ଗାଙ୍କର) ଲକ୍ଷଣକୁ ପାଇଅଛନ୍ତି, ଗଙ୍ଗା ଯେରୂପ ବିଶୁଦ୍ଧ ପୟ (ଶୁଦ୍ଧୋଦକକୁ)ଉଦୟ କରନ୍ତି ଗୋପସମୂହ ତଦ୍ରୂପ ବିଶୁଦ୍ଧ(ଗୋପାଳମାନେ) (ଜଳଯୁକ୍ତନୁହଇ) ଏମନ୍ତ ପୟ (କ୍ଷୀର ) ଉଦୟ କରନ୍ତି ।୮।

---

୪—ପ୍ରଚୁରଂ ବହୁଳଂ ବହୁ ଇତି ।
୫—ଭକ୍ଷା ସ୍ତ୍ରୀ ଭକ୍ତ ମନ୍ଧୋଽନ୍ନମୋଦନୋଽସ୍ତ୍ରୀତ୍ୟମରଃ ।
୧—ହଟ୍ଟ ବିକ୍ରୟ ଶାଳସ୍ୟାଦ ପଣୋ ବିପଣିସ୍ତ୍ରିୟେତି ହଲାୟୁଧଃ ।

ବଣିକ ପସର କ କଇଳାସ । ବିରଜେ ଉମା କପର୍ଦ୍ଦୀ ଆଶ୍ଳେଷ ।
ବଳସଦ୍ମ ପର ନାଗରେ ରୁଚ୍ଛ । ବ୍ୟୋମ କ ଚନ୍ଦ୍ର ତାରକା ସଙ୍ଗରୁ ।୯।
ବାରଧିକୁମାରୀ ପର ମାଳମ । ବସ୍ତାରି ସୁମନା ଭଦ୍ର ଶ୍ରୀ ଦାମ ।

୯ମ ପଦ—ଏମନ୍ତ ଜଳ୍ପୁଥାଇଁ । ବଣିକପସର କୈଳାସ କ ସେ ? କୈଳାସରେ ୧ ଉମାଙ୍କୁ ଆଶ୍ଳେଷକର କପର୍ଦ୍ଦୀ [ମହାଦେବ] ବିରାଜନ୍ତି । ବଣିକ ପସରରେ କପର୍ଦ୍ଦୀ [କଉଡ଼ି] ଉମା [ହଳଦୀ] ଆଶ୍ଳେଷରେ ଶୋଭା ପାଉଅଛୁ । ପୁଣି ସେ ବଣିକ ପସର ବଳସଦ୍ମ ପରି ହୋଇଅଛୁ, ୨ବଳସଦ୍ମ ନାଗରେ [ପନ୍ନଗ] ମାନଙ୍କରେ ରୁଚ୍ଛ ଅଟଇ । ପସର ୩ ନାଗର [ଶୁଣ୍ଠିରେ] ରୁଚ୍ଛ [ମନୋହର] ଅଥବା ୪ ନାଗରେ [ସୀସକରେ] ରୁଚ୍ଛ ପୁଣି ସେ ପସର ବ୍ୟୋମ [ଆକାଶ] କ ସେ ? ବ୍ୟୋମ ଚନ୍ଦ୍ର ଆଉ ତାରକା [ତାରକାସମୂହ] ସଙ୍ଗ ଅଟଇ । ପସର ୫ଚନ୍ଦ୍ର [କର୍ପୂର ଓ ସୁବର୍ଣ୍ଣ] ୬ ତାରକା [ଶୁଦ୍ଧ ମୌକ୍ତିକବୃନ୍ଦ] ଏମାନଙ୍କ ସଙ୍ଗ ଅଟଇ ।୯।

୧୦ମ ପଦ—ମାଳମ [ମାଳାକାର ସ୍ତ୍ରୀ] ବାରଧିକୁମାରୀ [ଲକ୍ଷ୍ମୀ]ପରି ହୋଇଅଛୁ । ଲକ୍ଷ୍ମୀବିସ୍ତାରି [ବିସ୍ତାରକାରୀ] ସୁମନା ୧ଭଦ୍ର [ଦେବଶ୍ରେଷ୍ଠ] ନାରାୟଣଙ୍କର ଶ୍ରୀଦାମ [ଶୋଭାଦାୟୀ] ଅଟନ୍ତି । ମାଳମ ସୁମନା [ପୁଷ୍ପ] ୨ଭଦ୍ର ଶ୍ରୀ [ଚନ୍ଦନ] ଏ ଦୁହିଁଙ୍କି ବିସ୍ତାର କରି ଦାମ [ଦେଉଅଛୁ] । ରଜନ [ରଜା] ଯେସନେ [ଯେମନ୍ତେ], ତେସନ କଂସାରିମାନେ ବସି ଅଛନ୍ତି । ରଜାଙ୍କ ପାର୍ଷଦଗଣ [ମନ୍ତ୍ରିଗଣ] ସାବଧାନ ହୋଇ ବେଷ୍ଟନ

୧--ଉମାତସୀ ହୈମବତୀ ହରିଦ୍ରା କୀର୍ତ୍ତିକାନ୍ତିଷୁ ଇତି ମେଦିନୀ ।
୨—ବଳସଦ୍ମ ରସାତଳ ମିତ୍ୟମରଃ ।
୩—ନାଗରଂ ବିଶ୍ୱଭେଷଜଂ ।
୪—ନାଗୋଽବଳେ ସ୍ତ୍ରୀ ପନ୍ନେଭେ ନାଗଦନ୍ତ ରଜାଦ୍ୱୟୋଃ କେସରେ ସୀସକେ ରଙ୍ଗେ ଇତି କୁମୁଦଃ ।
୫—ଚନ୍ଦ୍ରଃ ଶଶିନକର୍ପୂରେ ଚରେରୀ ହେମ୍ନି ନଂପୁଂସକ ଇତଶବ୍ଦାର୍ଣ୍ଣବେ ।
୬—ତାରେ ବା ନରଙ୍ଗନାକ୍ଷ ବଶୁଦ୍ଧେ । ଶୁଦ୍ଧ ମୌକ୍ତିକେ ।ଇତିମେଦିନୀ ।
୧—ହସ୍ତିଜାତ୍ୟନ୍ତରେ ଭଦ୍ରୋ ବାଚ୍ୟବତ୍ ଶ୍ରେଷ୍ଠ ସାଧୁନୋରଣ ବଶୁଃ ।
୨—ଭଦ୍ର ଶ୍ରୀଚନ୍ଦନୋଽସ୍ତ୍ରି ସ୍ତ୍ରୀମିତ୍ୟମରଃ ।

ବେଷ୍ଟନେ ପାର୍ଷଗଣସାବଧାନେ । ବସେ କଂସାରି ସ୍ୱଜନ ଯେସନେ ।୧୦
ବଲୋକ ବଲୋକ ମୁନି ଯେ ଗଲେ । ବାରଣରିପୁଦ୍ୱାରେ ଯାଇଁହେଲେ ।
ବେସହସ୍ତ ପ୍ରତିହାରୀ ଜଣାଇ । ବସ୍ମିଷ୍ଠଶ୍ରେଷ୍ଠଙ୍କୁ ଭେଟାଇ ନେଇ ।୧୧।
ବ୍ରହ୍ମାଙ୍କ ଇନ୍ଦ୍ର ସ୍ତୁତି କଲ୍ପପରି । ବନସ୍ମିଂଦଶରଥ ଦଣ୍ଡଧାରୀ ।
ବେଦାନ୍ତକାରୀ ସାବର୍ଣ୍ଣୀ ସେବନ । ବଶେଷ-ନେତ୍ର-ସୁଖଦ ବଜନ ।୧୨।
ବନବାସୀ ବରସର୍ବ ଲୋକତ । ବସ୍ମୟମୂର୍ତ୍ତିକ ଜ୍ୟାବାଳୀ ଯୁକ୍ତ ।

ହୋଇ (ବେଢ଼ି) ଥାନ୍ତି । କଂସାରିଙ୍କ ପାର୍ଷଗଣ (କାଂସ୍ୟାଦପାର୍ଷଦମାନ୍ଙ୍କ) ବେଷ୍ଟନ (ବେଢ଼ି) କରି ସାବଧାନ ହୋଇ ବସିଅଛନ୍ତି । "ଶବ୍ଦଶ୍ଳେଷ ଅଥ ଶ୍ଳେଷ ମିଶିଅଛି" । ୧୦ ।

୧୧ଶ ପଦ—ମୁନି (ବଶ୍ୱାମିତ୍ର) ଏମନ୍ତେ ବଲୋକି[୧] (ଦେଖି ଦେଖି) ଗଲେ । ବାରଣରିପୁଦ୍ୱାର (ସିଂହଦ୍ୱାର) ନିକଟରେ ଯାଇଁ ପ୍ରବେଶ ହେଲେ । ବେତହସ୍ତ (ବେତ୍ରଧାରୀ) ପ୍ରତିହାରୀ (ପଡ଼ିହାରି) ଜଣାଇ ବଶ୍ୱାମିତ୍ରଙ୍କୁ ନେଇ ୧ ବସିଷ୍ଠଶ୍ରେଷ୍ଠ (ଦଶରଥଙ୍କ) ସମ୍ମୁଖରେ ଭେଟାଇଲା ।୧୧।

୧୨ଶ ପଦ—ତାଙ୍କୁ ଦେଖି ଦଶରଥ ଦଣ୍ଡଧାରୀ ବ୍ରହ୍ମଙ୍କୁ ଇନ୍ଦ୍ରସ୍ତୁତି କଲ୍ପପରି ବନସ୍ମି ହେଲେ । ବ୍ରହ୍ମା ବେଦ (ଶ୍ରୁତିଙ୍କୁ) ଅନ୍ତ (ଅନ୍ତଃକରଣକୁ) କରିଅଛନ୍ତି ଅର୍ଥାତ୍ ସମ୍ପୂର୍ଣ୍ଣ ବେଦର କର୍ତ୍ତା ପୁଣି ସାବର୍ଣ୍ଣୀ (ସାବର୍ଣ୍ଣୀଦେବୀର) ସେବନ (ସେବ୍ୟ) ଅଟନ୍ତି । ବଶ୍ୱାମିତ୍ର ବେଦାନ୍ତକାରୀ (ବେଦାନ୍ତ ଶାସ୍ତ୍ର-କର୍ତ୍ତା) ସାବର୍ଣ୍ଣୀସେବନ (ସାବର୍ଣ୍ଣୀ ମନ୍ତ୍ରୋପାସକ) ଅଟନ୍ତି । ଇନ୍ଦ୍ର ବଶେଷ ନେତ୍ର (ସହସ୍ରାକ୍ଷ) ପୁଣି ସୁଖଦ (ସୁଖଦାତା) ଅଟନ୍ତି । ଦଶରଥ ବଶେଷ ନେତ୍ର ସୁଖଦ (ବଶେଷରେ ନେତ୍ରସୁଖକୁ ଦଅନ୍ତି) ଦ୍ୱିଜନ (ଦୁଇଜଣ) ବ୍ରହ୍ମା ଇନ୍ଦ୍ର, ବଶ୍ୱାମିତ୍ର ଦଶରଥ ଏରୂପ ।୧୨।

୧୩ଶ ପଦ—ବନବାସୀ ବର (ବଶ୍ୱାମିତ୍ର) ଦଶରଥଙ୍କ ସର୍ବ ଲୋକତ କରି (ଦେଖି) ଏମନ୍ତ ମନେ କଲେ ଏ ସର୍ବ ବସ୍ମୟମୂର୍ତ୍ତି । ବସ୍ମୟରୂପୀ ଜ୍ୟାବାଳୀ (ଭୂଦେବୀ) ଯୁକ୍ତ ଅଟନ୍ତି ଏ ସର୍ବ ଜାବାଳ ମନ୍ତ୍ରି ଯୁକ୍ତ ହୋଇ-

୧—ବାହୁଜଃ କ୍ଷତ୍ରିୟୋ ବସ୍ମିଷ୍ଠ ଇତ୍ୟମରଃ ।

ବାମଦେବ ଘେନ କୈଳାସ ସ୍ଥାନ । ବେଦକ ସୁମନ୍ତରେ ବଦ୍ୟମାନ ।୧୩
ବଶିଷ୍ଠ ପୁଚ୍ଛେ କିମର୍ଥେ ଆଗତ । ବ୍ୟକତ କଲେ ଗାଧିରଜା-ସୁତ ।
ବୃତ ରାକ୍ଷସେ ହୋଇ କତୁକୁତେ । ବିଧ୍ୱଂସି ସୁନ୍ଦ ଉପସୁନ୍ଦ ସୁତେ ।୧୪
ବହାୟସୁଁ ରାମବାଣୀ ଶ୍ରବଣ । ବଧି ରକ୍ଷଗଣ ହେବ ରକ୍ଷଣ ।
ବଦାନ୍ୟ ଏ ରଜା ଧର୍ମେ ଉଦ୍‌ବେଗୀ । ବତେ ଏ ଆସିଛୁଁ ରାମକୁ ମାଗି ॥

---

ଅଛୁ । ପୁଣି ସେ ସଭାକୁ କୈଳାସ ସ୍ଥାନ ଘେନଲେ (ମନେକଲେ) । କୈଳାସରେ ବାମଦେବ (ମହାଦେବ) ଥାନ୍ତି ଏ ସଭାରେ ବାମଦେବନାମା ମନ୍ତ୍ରୀ ଅଛନ୍ତି । ପୁଣି ମନେକଲେ ଏ କଣ ? ବେଦ । ବେଦ ସୁମନ୍ତ (ଉତ୍ତମ ମନ୍ତ୍ରରେ) ବଦ୍ୟମାନହେଇଥାଏ ଏ ସଭା ସୁମନ୍ତ୍ରନାମା ମନ୍ତ୍ରିରେ ବଦ୍ୟମାନ ହୋଇଅଛୁ ୦ ।୧୩।

୧୪ଶ ପଦ—ବିଶ୍ୱାମିତ୍ରଙ୍କୁ ବଶିଷ୍ଠ ପଚାରିଲେ କିମର୍ଥେ ଆଗତ ? (କି ନମିତ୍ତ ଆସିଲ) ତାହା ଶୁଣି ଗାଧିରାଜାସୁତ (ବିଶ୍ୱାମିତ୍ର) ୧ ବ୍ୟକ୍ତକଲେ (ସ୍ପଷ୍ଟକରି କହିଲେ) କତୁକୁତେ (ଯାଗକରିବାକୁ) ରାକ୍ଷସେ (ରାକ୍ଷସଙ୍କଦ୍ୱାରା) ବୃତ (ବେଷ୍ଟିତ) ହୋଇ ୨ ସୁନ୍ଦ ଓ ଉପସୁନ୍ଦ ଏ ଦୁହିଙ୍କ ସୁତ ସୁବାହୁ ମାରୀଚ ମୋ ଯାଗକୁ ବିଧ୍ୱଂସ କଲେ ।୧୪।

୧୫ଶ ପଦ—ରାକ୍ଷସେ ଯାଗକରାଇ ନ ଦେବାରୁ ବିହାୟସ (ଆକାଶ) ଉହିରୁ ଏମନ୍ତ ବାଣୀ ଶୁଭିଲା । ରାମକୁ ଆଣିଲେ "ସେ" ରକ୍ଷଗଣ (ରାକ୍ଷସଗଣ) ବଧକରି ଯାଗ ରକ୍ଷଣ (ରକ୍ଷା) ହେବେ । ଏ ରାଜା ବଦାନ୍ୟ (ଦାନଶୌଣ୍ଡ) ଅଟନ୍ତି ପୁଣି ଧର୍ମ ବିଷୟରେ ଉଦ୍‌ବେଗୀ ଅଟନ୍ତି । ବତେ (ସେ ବିଷୟରେ) ରାମଙ୍କୁ ମାଗି ଆସିଅଛୁ ।୧୫।

---

୦ ଏପଦ ଶ୍ଳେଷ ହେଲା । ମନ୍ତ୍ରବାଚକ ଜାବାଲି ଶବ୍ଦ ଯା ବ୍ୟବହୃତ ହେଲା କନ୍ତୁ ଭାଷା ଗୀତରେ ଦୋଷ ନୋହିଲା ଏହାର ପ୍ରମାଣ ପୂର୍ବରୁ ଲେଖିଅଛୁଁ ।
୧—ସ୍ପଷ୍ଟ ପ୍ରବ୍ୟକ୍ତ ସ୍ଫୁରଣ ମିତ୍ୟମରଃ ।
୨—ଗାଧିଜାଧିକର ସୁନ୍ଦସୁନ୍ଦର ମନ୍ଦରାତ ହରବ୍ରୁପଚ୍ଛକ ମିତ ପ୍ରଯୋଗଃ ।

ବଳୀ ହେଉଛ ମୁନି ! ରାଜା କହ୍ନ । ବସୁଧାଭୃତ ତ ସ୍ୱଭାବେ ମୁହିଁ ।
ବଚ ଦାନ୍ତାଳ ମାର ଦମ୍ଭ-ଶୃଙ୍ଗ । ତନା ଅପରାଧେ କରୁଛ ଭଙ୍ଗ ।୧୬
ବ ଟୀକୀଡ଼ାକୁ ଗ୍ରୁଡ଼ନାହିଁ ଯେହ୍ନ । ବାଣ ଧନୁ ଯେ କାଂଶିକାରେ ବନ୍ଧ ।
ବେଶ୍ୱେ ରହିବାକୁ ଏକା ଡରଇ । ବାଣ୍ଡ ମନେ ଦୈତ୍ୟ ନାଶିବ କେହ୍ନ ।
ବୋଲ ମୁଁ ସୈନ୍ୟ ସଜ କରି ଯିବ । ବାଦ ରଚି ତୁମ୍ଭ ଯାଗ ରଖିବ ।
ବୃଦ୍ଧିରୁ ଯୋଦ୍ଧାପଣ ମୁନି ଭଣି । ବାମା-କବଚ କ କରିବୁ ପୁଣି ।୧୮।
ବାଳକ ନ ବୋଲ ରାମଙ୍କୁ ତୁହ୍ନ । ବଳି ଷ ଦ୍ର ଦମ୍ଭ ଆକ୍ରମେ ଥାଇ ।

୧୬ଶ ପଦ—ଏମନ୍ତ ଶୁଣି ରାଜା (ଦଶରଥ) ସେ କହ (କହିଲେ) ହେ ମୁନି ! ତୁମ୍ଭେ ବଳୀ (ଛନ୍ଦ ଦରି ହେଉଅଛ । ସ୍ୱଭାବରେ ମୁହିଁ ତ ବସୁଧାଭୃତ ଅଟେଁ ଅଥ ତୁମ୍ଭେ ପବର୍ତ ହେଲ ରାମଙ୍କୁ ଦଅ ଏମନ୍ତ ଯେ ତୁମ୍ଭ ବଚନ ସେ ୨ ଦାନ୍ତାଳ (ବଜ୍ର) ହେଲା, ତାହା ମୋ ର ମେରୁ ଦମ୍ଭରୂପ ଶୃଙ୍ଗକୁ ବିନା ଅପରାଧେ ଭଙ୍ଗ କରୁଅଛ । ୧୬

୧୭ଶ ପଦ—ଯେ ଧାଟୀକ୍ରୀଡ଼ା (ଧାଟୀଖେଳ) ଗ୍ରୁଡ଼ନାହିଁ ଦ୍ୱ (ନାହିଁ) କାଂଶିକା (ଭଣ୍ଡାରଶେଷ) ତସ୍ମର୍ବଳୀ ଧନୁର୍ବାଣ ବୁଦ୍ଧିଙ୍କ ବଦ୍ଧ । ବେଶ୍ମ (ଗୃହ ଭିତରେ ଏକାଠୋଇ ରହିବାକୁ ଡରନ୍ତି ଏ କଥାକୁ ତୁମ୍ଭେ ମନରେ ବାଣ୍ଡ, ସେ ବାଳକ ଦୈତ୍ୟବର୍ଗ କେମନ୍ତେ ନାଶ କରିବ । ଏଥିଦ୍ୱାରା ବାଳକତ୍ୱ ଭୀରୁତ୍ୱ ସୂଚିତ ହେଲା ।୧୭।

୧୮ଶ ପଦ—ଆପଣ ହେଲ ମୁଁ ସୈନ୍ୟ ସଜ କରି ଯିବ । ରାକ୍ଷସଙ୍କ ସଙ୍ଗେ ବାଦ କରି ତୁମ୍ଭ ଯାଗ ରଖିବ । ଏମନ୍ତ ଶୁଣି ମୁନି ଭଣି (କହିଲେ) ମୁଁ ତୁମ୍ଭ ଯୋଦ୍ଧାପଣ ବୁଝିଅଛୁ । ପୁଣି ବାମା-କବଚ (ରାମା-ସନ୍ଧି) କରିବ କି ? ପଣ୍ଡୁ ରାମଙ୍କୁ ଭର ସ୍ତ୍ରୀମାନଙ୍କ ମଧ୍ୟରେ ଲୁଚି ରହିଲ ତୁମ୍ଭେ ରାକ୍ଷସଙ୍କୁ କରୁଅପ ମାରିବ ? । ୧୮ ।

୧୯ଶ ପଦ—ହେ ନୃପ ରାମଙ୍କୁ ତୁହ୍ନ ବାଳକ ନ ବୋଲ, ବଳି ଷୁ ଦାକାରରେ

୧—ଭୂଭୃଦ୍ ଭୂମିଧରେ ନୃପେ ଇତ୍ୟମରଃ ।
୨—ଦନ୍ତାଳାଭଶନଦ୍ୱୈ ସ୍ତ୍ରୀ ଶତ୍ୟମରଃ ।

ବଢ଼ାଇ ପ୍ରଶ୍ନ ସେ ଘାଇ ଇନ୍ଧନ । ବଧିବେ ଦୈତ୍ୟ ଶଳଭ ଯେସନା[1]୯
ବାମନ ଜେତେ ବଳୀ ଅଧୋଗତ । ବସୁଛନ୍ତି ବସୁର ଚେତୋ ମତ ।
ବସ୍ତୁ ସେବେ ଇନ୍ଦେ ଅଜନନ୍ଦନ । ବୋଲନ୍ତେ ଋଷିଏକେ ମନରେ ଘେନ
ବୃଂହୃତି କର ଯେ ଉତ୍ପୃତି ହୋଇ । ବନପତି ଶିଶୁ ଗଜ ମାରଇ ।
ଜାଉବରଷର ଛଡ଼ି ସ୍ପୃଷ୍ଟତ । ବ୍ୟାଜ ନ କର ରାମ ଚ୍ଛେଦ ତ୍ୱରିତ ।୧୧।
କୋଲୁଁ କଉଶିକ ରାଘବ ଆସି । ବେହ୍ଣବଣ ସିନ୍ଧୁରେ ଯଏ ଦଶି ।
ଖୀଚର ଲୀଳାରେ ମହାରଞ୍ଜନ । ବ୍ୟଥିତ ତମିରେ ଗ୍ରସ୍ତଜନ ।୧୨।

---

ଇନ୍ଧ ଅଚ୍ଛନ୍ନରେ ଥାଇ ଇନ୍ଧନ (କଷ୍ଟ) ପ ଜଳେ ପ୍ରଶ୍ନ ବଢ଼ାଇ ୧ ଶଳଭ-ମ ନଙ୍କ (ପତଙ୍ଗ) ନାଶ କଲା, ତଦ୍ ପ ରାମଙ୍କ ଦୈତ୍ୟ ନାଶ କରିବେ ।୯।

୧୦ମ ପଦ—ପୁଣି ଦୃଷ୍ଟାନ୍ତରେ କହିଲେ ବାମନ ଯେ କେତେ (ଖର୍ବ) ବଳୀ (ରାଜା ର) ଅଧୋଗତିକ ବସୁଛନ୍ତି (ପାତାଳକୁ ନେଉଅଛନ୍ତି) ଚେତୋ ମତରେ (ମନରେ) ବସୁତ । ଏମନ୍ତ ବସ୍ତୁ ଯେ ବୋଲନ୍ତେ ଅଜନନ୍ଦନ (ଦଶରଥ) ହୋଇଲେ ସେ ବସ୍ତୁ । ଋଷି ବୋଇଲେ ଏ କେ ? (କିଏ) ଅର୍ଥାତ୍ ଏହ ରାମ ସେହୁ ବସ୍ତୁ । ମନରେ ଘେନ ଅଥବା ଏହା କର (ସମାନ କର) ଚେତା ମନରେ ଘେନ । ୧୦ ।

୧୧ଶ ପଦ—ଏମନ୍ତ ବୃଂହୃତି (ଜ୍ଞାନ) କର । ଉତ୍ପୃତି ହୋଇ ବନ-ପତି ଶିଶୁ (ସିଂହଛୁଆ) ଗଜକୁ ବଦାରଇ । ଜାଉବର୍ଷର ଛଡ଼ି ସ୍ପୃଷ୍ଟ (ରାମଙ୍କୁ) ବାଳକ ନ ବୋଲ । ଏକଥା ବ୍ୟାଜ (କପଟ) ନ କର ତ୍ୱରିତେ (ଶୀଘ୍ର) ରାମଙ୍କୁ ଦିଅ (ନ ହୁଁ ନ କର) । ୧୧ ।

୧୨ଶ ପଦ—କୌଶିକ (ବିଶ୍ୱାମିତ୍ର) ଏମନ୍ତ ବୋଲୁ ରାଘବ (ରାମ) ରେ ରାଘବ (ମତ୍ସ୍ୟପୁଙ୍ଗବ) ହେଲେ ସେ ଆସି ବେହ୍ଣବଣ (ସନ୍ଧ୍ୟା) ରୂପ ସିନ୍ଧୁରେ ଦଶିଲେ, ମତ୍ସ୍ୟ ଯେରୂପ ୨ଖୀଚର (ଲହରୀ) ଲୀଳାରେ ମହାରଞ୍ଜନ (ଅତିରଞ୍ଜିତ), ରାମ ତଦ୍ରୂପ ଖଚର ଲୀଳା (ଅଚର ବ୍ୟାପାରରେ) ମହା-

---

୧—ସନ୍ଧ୍ୟାମ୍ପି ପତଙ୍ଗ ଶଳଭାଦ୍ୟମରଃ ।
୨—ସ୍ତ୍ରିୟାଂ ଖୀଚରବୋର୍ମିଷ୍ମ ଇତ୍ୟମରଃ ।

ବିବେକ ସ୍ୱୟମ୍ଭୂ ଅମ୍ଭୂ ଚିତ୍ତେ । ବିଧାନ ମୁନି ରାମର ଉଚିତେ ।
ବସେ ମାନ୍ୟ କରି ଆଶୀଷ ଟାଇ । ବୋଲ ରାମ ଯାଉ କୌଶିକ କହି ॥
ବାଚଂଯମଭୂତ ନୃପ ହୋଇଲେ । ବାହୁଳ ପ୍ରାୟେ ତପସ୍ୱୀ ଜଳିଲେ ।
ବିରୋଚନ ଏ ବଶିଷ୍ଠ ମନକୁ । ବୋଇଲେ ଏ ଋଷି ନେଇ ରାମକୁ ୧୪
ବକ୍ତ୍ରବକ ଚରୁ ନୃପର ଯେନ । ବାହାରିଲେ ରାମ ଲକ୍ଷ୍ମଣ ବେନ ।
ବିଳମ୍ବ ନ କରି ସରଯୂ ପାରି । ବିଗମ୍ୟ ଅରଣ୍ୟ ମଧ୍ୟେ ବିହରି ।୧୫।

ଜନ୍ମ ୨ ନିମିର ମସ୍ତ୍ରୀଠ ଦେବ ଗୁରୁ ଦେବ ଟୋଳି ଦେଉଁ କଥା ଜାତ ହୁଏ ରାଜା ଦଶରଥ ମସ୍ତ୍ରୀଙ୍କୁ ଦେଖି କ୍ୟଥିତ ହେଲେ ଗ୍ରନ୍ତ ହେଲେ ।୧୨।

୧୩ଶ ପଦ—ରାମଚନ୍ଦ୍ର ଙ୍କର ବିଶ୍ୱାମିତ୍ରଙ୍କୁ ଦେଖି ଏ ବିବେକ ହେଲା, ସ୍ୱୟଂ ଆତ୍ମଭୂ (ବ୍ରହ୍ମ) ଏ ମୁନି (ବିଶ୍ୱାମିତ୍ର) ରାମଙ୍କର ଉଚିତ ବିଧାନକୁ କଲେ । ରାମଚନ୍ଦ୍ର ମୁନିଙ୍କି ମାନ୍ୟକଲେ ତାଙ୍କଠାରୁ ଆଶିଷ (ଆଶୀର୍ବାଦ) ପାଇ ବସିଲେ ତାଙ୍କୁ ଦେଖି କୌଶିକ (ବିଶ୍ୱାମିତ୍ର) ଦଶରଥଙ୍କୁ କହିଲେ ରାମଙ୍କୁ ଯାଉ ବୋଲି କହ ।୧୩।

୧୪ଶ ପଦ—ଏମନ୍ତ ବିଶ୍ୱାମିତ୍ରଙ୍କ ବଚନ ଶୁଣି ନୃପ (ଦଶରଥ) ବାଚଂଯମତ୍ୱକୁ (ମୂକତ୍ୱକୁ) ପାଇଲେ (ଚୁପ ହେଲେ) ତାହା ଦେଖି ତପସ୍ୱୀ (ବିଶ୍ୱାମିତ୍ର) ବାହୁଳ (ଅଗ୍ନି) ପ୍ରାୟ କୋପରେ ଜ୍ୱଳିତ ହେଲେ । ବଶିଷ୍ଠଙ୍କ ମନରେ ଏ (ଦଶରଥ ବୃଦ୍ଧହୋଇ ରହିବା କଥା) ବିରୋଚନ (ରୋଚକ ନୋହିବା) ନ ଆସିଲା । ସେ ଦଶରଥଙ୍କୁ ବୋଇଲେ ଏ ଋଷି ରାମଙ୍କୁ ନେଉ (ନିଅନ୍ତୁ) ।୧୪।

୧୫ଶ ପଦ—ଏମନ୍ତ ବଶିଷ୍ଠଙ୍କ ବଚନ ଶୁଣି ନୃପର (ଦଶରଥଙ୍କର) ବକ୍ତ୍ର ବକ ଚରୁ (ମୁଖରୂପକମଳକୁ) ସ୍ୱୀକାର କରିବାର ଜାଣିଲେ । ରାମ ଲକ୍ଷ୍ମଣ ଦୁଇଭାଇଙ୍କି ସଙ୍ଗରେ ଘେନି ବାହାରିଲେ । ବିଳମ୍ବ ନ କରି ସରଯୂ ନଦୀର ପାରି ହୋଇ ବିଗମ୍ୟ (ଅଗମ୍ୟ) ଅରଣ୍ୟ ମଧ୍ୟରେ ବିହାରୀ ହେଲେ ।୧୫।

୧—ଆସ୍ତ ମସ୍ତ୍ରୀ ତ୍ରିମିନ ମଂଶତଯୋଜନ ବିସ୍ତରଃ ।
ନିମିଙ୍କ ଲୋ ଗିଳନ୍ତେ ବ ତଦ୍‌ଗିଳେ ଃସ୍ତି ରାଘବଃ ।

୨—ବ୍ରହ୍ମାତ୍ମଭୂଃ ସୁରଜ୍ୟେଷ୍ଠ ଇତ୍ୟମର ।

ଦ୍ୱୋତ୍ପର ତାମସୀ ଯେ ସେ ବାହାର । ବଡ଼ାଇ ଦେଇ ସନ୍ଧ୍ୟାଛଳେ କର
ବାରୁଣୀକୁଣ୍ଡ ବୁଡ଼ାଇ ଈନକୁ । ବିନାଶ କରିବା ଇଚ୍ଛି ଦିନକୁ ।୨୬।
କାଳ ଧରି ଦିବା ନେଇ ଅଂକର୍ଷି । ବାପୁପଚପୁ ଯିବା ତଥା ଦର୍ଶି ।
ବୋବଟେଙ୍କ ପକ୍ଷି ନାଦ ଛଳର । ବଦନେ କାଳ ପଡ଼ନ୍ତି ଦିଗର ।୨୭
ବିକଟକାଳକୁ ଯହୁଁ ଦର୍ଶନ । ବୁଡ଼ିଲା ପଦ୍ମ ପଦ୍ମନପ୍ସନ ।
ବସା ତେଜ ନିଶାଚର ପ୍ରକଟେ । ବର୍ଜି ତର୍ଜି କର୍ଲେ ହୁଁ ହୁଁ ରଟେ ।୨୮
ବିରସ ତେଜ ବାହାର ଭୁଜଙ୍ଗେ । ବିକୃତ ଭୟଙ୍କର ହେଲା ତୁଙ୍ଗେ ।

୨୬ଶ ପଦ—୧ ତାମସୀ [ଅନ୍ଧକାରୀ] ସେତ ତାମସୀ [ଯେ ଦିନ] ଦ୍ୱୋତ୍ପର ସେ ବାହାର ହେବ। ସନ୍ଧ୍ୟା ଛଳରେ କରକୁ ବଡ଼ାଇଦେଇ ବାରୁଣୀ [ପଶ୍ଚିମଦିଗ] ସେ ବାରୁଣୀ କୁଣ୍ଡ ହେଲା । ତହିଁରେ ଦିନ [ଦିବସ] ସେ ଧାନଜନ ହେଲା । ତାଙ୍କ ବିନାଶ କରିବା ଇଚ୍ଛା କରି ଈନ [ସୂର୍ଯ୍ୟ] ସେ ପ୍ରଭୁ ହେଲେ ତାଙ୍କୁ ବୁଡ଼ାଇ ଦେବା ଅର୍ଥରେ ସୂର୍ଯ୍ୟ ଅସ୍ତ ହେଲେ, ସନ୍ଧ୍ୟା ହେଲା । ୨୬ ।

୨୭ଶ ପଦ—ସେ ଯେଉଁ ତାମସୀ ସେ କାଳରେ ଦିନକୁ ଧରି ଅଂକର୍ଷି [ଆକର୍ଷଣ କରି] ବାପୁପଚପୁ କାକଶ୍ମଶାନଭୂମିରେ ତଥା [ତେମନ୍ତ] ଦର୍ଶିଲା । ପକ୍ଷିଙ୍କ ନାଦଛଳରେ ବୋବାଉ ଥିବାର [ରଡ଼ିଦେବାର] ସେ ଏତେକ ଦେଖି ଦିଗରୁ ମୁହଁ ଦେଇ ଅଛନ୍ତି । ସନ୍ଧ୍ୟା ପ୍ରସଙ୍ଗରୁ ଦିଗଅନ୍ଧାର ହେଲା ପକ୍ଷିମାନେ ବସାକୁ ଗଲେ ଏ ଭାବାର୍ଥ । ୨୭ ।

୨୮ଶ ପଦ—ବିକଟକାଳକୁ [ଭୟଙ୍କର କାଳକୁ] ଯହୁଁ ଦର୍ଶନ [ଦେଖିଲା] ତହୁଁ ପଦ୍ମ [ପଦ୍ମିନୀ] ସେ ପଦ୍ମ ଜାତୀୟା ସ୍ତ୍ରୀ ହୋଇ ସେ ପଦ୍ମନପ୍ସନ ବୁଡ଼ିଲା । ଏଥିରୁ ସନ୍ଧ୍ୟା ହେବାରୁ ପଦ୍ମମାନେ ମୁଦ୍ରିତ ହେଲେ। ନିଶାଚର ଭଲ୍ଲୁକାଦିମାନେ ବସାକୁ ତେଜି ପ୍ରକଟନ୍ତି ବର୍ଜି [ଗୁଁ ପ୍ରହାର] ତର୍ଜନ କରି ହୁଁ ହୁଁ ରଟିକୁ କଲେ [ହୁଁ ହୁଁ ଧ୍ୱନି କଲେ ।।]

୨୯ଶ ପଦ—ସେକାଳରେ ୧ ଭୁଜଙ୍ଗେ (ବିଟପ୍ ଭୁଜେ) ବିରସତେଜ [ଦର୍ପତେଜ] ବାହାର ହେଲେ ଓ ତୁଙ୍ଗେ [ଉନ୍ନତରେ] ବିକୃତ ଭୟଙ୍କର

୧— ତମିସ୍ରା ତାମସୀ ରାତ୍ରିରନ୍ଧକାରଃ ।
୧ — ଭୁଜଙ୍ଗଃ ସର୍ପବିଟଦ୍ୱୋକ୍ଷର ବିଶ୍ଵଃ ।

ବେଳିଭୁ ତା ମୂଳ ସେକାଳେ ରହି । ବଞ୍ଚିଲେ ପ୍ରଭାତ ପ୍ରବେଶ ହୋଇ
ବାସବଦିଗ ଅଭ୍ରମୁକରଣୀ । ବଜନ୍ୟ କଲା ରକ୍ତପିଣ୍ଡ ଜାଣି ।
ବାନ୍ଧି ସବିତାର ଦଶ ଆସିଲା । ବଟେଅ କର୍ଣ୍ଣେ ଶୀତବତ ସେ ହେଲା ॥
ବିଚ୍ଛେଦନ କରି ତମନ୍ତୁ କଟେ । ବିଲେପିତ ଚଞ୍ଚ ଉକତ ବଟେଶ ।
ବଞ୍ଚିଲେ ଉପେ ଲୁଚି ରବିଚର । ବନାଶକାଳ ଆରମ୍ଭ ଆନ୍ତରଂ ୩୧
ବର୍ଣ୍ଣନା ସିଦ୍ଧିକ ଆଣିଲ ସେହି ! ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ କହି ।

---

ହେଲେ । ସେ କାଳରେ ବେନି ଭାଇ (ରାମ ଲକ୍ଷ୍ମଣ) ମୁନି (ବିଶ୍ୱାମିତ୍ର) ସେ ସ୍ଥାନରେ ରହି ବଞ୍ଚିଲେ । ରାତ୍ରି ଗଲା ପ୍ରଭାତ କାଳ ଆସି ପ୍ରବେଶ ହେଲା ଏହି ଭାବ । ୨୯ ।

୩୦ଶ ପଦ—ପ୍ରଭାତରେ ସବିତାର (ସୂର୍ଯ୍ୟର) ବିମ୍ବ (ମଣ୍ଡଳ) ଦିଶି ଆସିଲା ତେଣୁ କବି ଉତ୍ପ୍ରେକ୍ଷା କଲେ ବାସବଦିଗ (ପୂର୍ବଦିଗ) ରୂପ ୧ ଅଭ୍ରମୁକରଣୀ (ହସ୍ତିନୀ) ରକ୍ତପିଣ୍ଡକୁ ବଜନ୍ୟ କଲା କି ? (ଜାତ କଲା କି ? ଜନ୍ମିଲା ସେ ରକ୍ତପିଣ୍ଡ ମୂର୍ତ୍ତିମନ୍ତ ହେବା ଅର୍ଥେ କର୍ଣ୍ଣରେ ତାହାର ବଟେଅ (ବାୟୁ ଲାଗି), ତେଣୁ ୨ଶୀତବାତ (ଶୀତଳ ପବନ) ସେ ହେଲା (ହେଲା) ॥

୩୧ଶ ପଦ—ପୁଣି ରବିମଣ୍ଡଳକୁ ଉତ୍ପ୍ରେକ୍ଷା କଲେ ତମ (ଅନ୍ଧକାର) ତମ (ବନ୍ଧୁ) ହେଲା । ତାକୁ ଚଞ୍ଚୁରେ ବିଚ୍ଛେଦନ କରିବାରୁ ରକ୍ତବର୍ଣ୍ଣରେ ବିଲେପିତ ହୋଇଅଛି କି ସେ । (ରବିଚର ଉଲୂକାଦିମାନେ) ଭୟରେ ଲୁଚି ବଞ୍ଚିଲେ । ସେମାନେ ରଜନିଚର (ରାକ୍ଷସ) ହେଲେ ତାଙ୍କର ବିନାଶ କାଳ ଆରମ୍ଭ ହେବ ଏଣୁ ଲୁଚିଲେ । ୩୧ ।

୩୨ଶ ପଦ—ସେହି (ପ୍ରଭାତ) ଏମନ୍ତ ବର୍ଣ୍ଣନା ସିଦ୍ଧିକ ଆଣିଲ । ସେକାଳେ ବିଶ୍ୱାମିତ୍ର ରାମଚନ୍ଦ୍ରଙ୍କୁ କହିଲେ ହେ ବାବୁ ଏ ଯେଉଁ ବନ ଏଥିରେ

---

୧ — ଭର୍ଣ୍ଣଦେଶୋହଭ୍ରମୁକପିଳା ପିଙ୍ଗଳାନୁପମା କ୍ରମାତ୍ ।
ତାମ୍ରକର୍ଣ୍ଣୀ ଶୁଭ୍ରଦନ୍ତୀ ଚାଙ୍ଗନା ଗଙ୍ଗନା ଦିଗ୍ଗଜସ୍ତ୍ରିୟଃ ।
୨ ଅଥ ଶୀତଳ କଳମାଦଳ ସୌରଭ ସମ୍ଭାର ସମ୍ଭୃତଃ ପବନଃ ।

ବାବୁ ଏ ବନେ ତାଡ଼କା ନିବାସ । ବାଟ ଭାଙ୍ଗି ଯିବା ବହୁବ ଦାସ ।
ବୋଲେ ରାମ ଏକାକ୍ଷୀ ଉତରେ । ବାଟ ଭାଙ୍ଗି ଗଲେ ବହୁତ ଘାରେ
ବାଧା ହେବା କେବ ମଖରକ୍ଷଣେ । ବୋଲନ୍ତେ ଆଗ ହୋଇବେ ଆପଣେ
ବିଶ୍ୱାମିତ୍ର ମଧ୍ୟେ ପଛେ ଲକ୍ଷ୍ମଣ । ବିପିନ ଦେଖନ୍ତି ଅବେକ୍ଷଣ ।
ବିରୋଚନଙ୍କର ପଶଇ ନାହିଁ । ବିଭାବରୀ ସ୍ଥାନ ସର୍ବଦା ସେହି ।୩୮।

---

ତାଡ଼କା ରାକ୍ଷସୀ ନିବାସ (ସ୍ଥାନ) ସେ ଅମ୍ଭଙ୍କୁ ଦେଖିଲେ ଦାସ (ହିଂସା) ବହୁବ (ଢେର) ବାଟବୁ ଭାଙ୍ଗି ଯିବା (ବାଟରେ ନ ଯିବା) ।୩୬।

୩୭ଶ ପଦ—ତାହା ଶୁଣି ରାମଚନ୍ଦ୍ର ବୋଇଲେ ଏକ ରାକ୍ଷସୀ ନିମନ୍ତେ ଡରେ ବାଟ ଭାଙ୍ଗ ସେବ ଗଲେ ମଖ (ଯଜ୍ଞ) ରକ୍ଷା ବିଷୟରେ ହେତୁ ବାଧକ ହେବରେ ବେଢ଼ (କରୁପେ ବାଧା ହେବା କଷ୍ଟ ଆଉ ଆଗ ହେଲେ ।

୩୮ଶ ପଦ—ବିଶ୍ୱାମିତ୍ର ମଧ୍ୟରେ ରହିଲେ ପଛରେ ଲକ୍ଷ୍ମଣ ହେଲେ ଏରୂପ ଯାଆନ୍ତେ ସେହି ବିପିନକୁ ଅତି ଲକ୍ଷଣ ଦେଖିଲେ ଯାବ ରାଜକୁ ତରେ ୧ ବିରୋଚନ (ଚନ୍ଦ୍ର ସୂର୍ଯ୍ୟ) କର (କିରଣ) ପଶଇ ନାହିଁ (ଅତି ଘନ ହୋଇ ଅଛି । ସେହି (ବନ) ସର୍ବଦା-୨ ବିଭାବରୀ (ରାତ୍ରିର) ସ୍ଥାନ ।୩୮।

---

+—ପ୍ରଭାତେ ଧୀପପାଣ୍ଡୁତ୍ୱଂ ଚନ୍ଦ୍ରାଗାନାଂ ଚ ଚନ୍ଦ୍ରବତ୍ତଂ ।
ପ୍ରଭାତଃ କୁଟ୍ଟୁମଦର୍ଶିତ୍ୱଂ କୁକୁଟାଦେର୍ଧ୍ୱନିସ୍ତଥା ।
ପଦ୍ମନସ୍ୟ ତତଃ ସୂକ୍ଷ୍ମ । ନିଦ୍ରାଭଙ୍ଗତ୍ୱମେବ ଚ ।
ତମୂଳିତ୍ୱଂ ଚ ରକ୍ତତ୍ୱଂ ହ୍ରାନ୍ଧଣାମତଶୀତତା ।
ଉତ୍ତଞ୍ଚାଃ ଶଙ୍ଖନାଦାଦ୍ୟା ଜନସଙ୍ଗୃହିତାଦୟଃ ।
ସୂର୍ଯ୍ୟୋଦୟେ ବର୍ଣ୍ଣିତବ୍ୟୋ ଗୁଦ୍ରାନ୍ତାଗତଂ ତମଃ ।
ପ୍ରକାଶିତାରୁଣଶ୍ଚୈବ ଦିକ ପ୍ରସନ୍ନମେବ ଚ ।
ମିଥୁନ ଚକ୍ରବାକସ୍ୟ ଦେହେ ମାଡ଼ଂ ବିକାଶିତା ।
ସୂର୍ଯ୍ୟ ନ ଭସା ଶାପତ୍ୱଂ ନେତ୍ରକାନ୍ତଂ ସୁହାସ୍ଥିତା ।
ତଥାଚ ପ୍ରଦୀପାନାଂ ମୋଷଧୀ ନାମ କାନ୍ତିସ୍ତଥା ।
କୁମୁଦ ନାଂ କୁଟ୍ଟଳିତ୍ୱଂ କୁକୁଟ ପଦ୍ମହୀନତା ।
ଇନ୍ଦ୍ରାଦୟସ୍ତେ ବର୍ଣ୍ଣନୀୟା—ଇତାଲଂକାରେ ।
୧—ବିରୋଚନୋଃ ଦହନେ ଚନ୍ଦ୍ରେ ପ୍ରହ୍ଲାଦ ନନ୍ଦନେ ।

ବାଟକ ଏ ଯେନ ଚୈତ୍ରକପନ୍ତ । ବିଲୋକନ ନୋହେ ମେଚକକାନ୍ତ ।
ବିନୋଦ ସ୍ୱଚ୍ଛେ କରନ୍ତି ଗଣ୍ଡକ । ବାଲ୍ମୀକି ବିଦାରୁଛନ୍ତି ଭଲ୍ଲୁକ ।୩୫
ବରାହ ପ୍ରତତି ସ୍ୱନରୁ ଜାଣି । ବିଡ଼ାଳଆଦି ଧାତ୍ରାଗ୍ରରୁ ଆଣି ।
ବାରି ହୋଏ ଗଜ ଦଶନ ଯେନ । ଦନ୍ତାନ୍ତେ ପାଦ ନ ଦିଶେ ଅବନୀ ॥
ବୃକ୍ଷବଲ୍ଲୀ ଘନ ଘର୍ଷଣୁ କରି । ବାୟୁ ଯେ ମଶକ ମଶାରି ସରି ।
ବିଶ୍ରୀ ରାବିବ ପକ୍ଷୀ ଆସୁ । ବିଧାନ ଗୁଣ ଟଙ୍କାର ଏ ବିଶୁ ।୩୭ ।
ବନ ଉପରେ କି ବଜ୍ର ପଡ଼ିଲା । ବିଶ୍ରାମସ୍ଥାନ ତାଡ଼କା ଗୁଡ଼ିଲା ।

---

୩୫ଶ ପଦ—ଏ ଯେନ (ଅନ୍ଧକାର ହେବା ଯେନ) ଚୈତ୍ରପନ୍ତ (ଚୈତ୍ରସମୂହ) ବାଟକ ହୋଇଅଛନ୍ତି । ୧ମେଚକକାନ୍ତ (କୃଷ୍ଣକାନ୍ତି) ବିଲୋକନ ନୋହେ (ଦୃଶ୍ୟ ହେଉନାହିଁ) । ସ୍ୱଚ୍ଛେ (ସ୍ୱଚ୍ଛନ୍ଦରେ) ଗଣ୍ଡକ (ଗଣ୍ଡାମାନେ) ବିନୋଦ କ୍ରୀଡ଼ାକୁ କରୁଅଛନ୍ତି । ଭଲ୍ଲୁକେ (ଭାଲୁମାନେ) ବାଲ୍ମୀକ (ହୁଙ୍କା) ବିଦାରୁ ଅଛନ୍ତି । ୩୫ ।

୩୬-୩୭ ପଦ—ସ୍ୱନରୁ (ଶବ୍ଦରୁ) ବରାହ ପ୍ରତତିଙ୍କ ନାଣି (ଏଠାରେ ବରାହ ଅଛି ବୋଲି ଜାଣୁଛନ୍ତି) ଧାତ୍ରାଗ୍ରରୁ (ଆହ୍ଲାଦ ଲାଗିବାର) ବିଡ଼ାଳାଦି ପଶୁ (ଏ ବନରେ ଅଛନ୍ତି ଏମନ୍ତ ମନେ ଅଣିବେ) । ଗଜମାନେ ଦଶନ ଯେନ (ଦନ୍ତ ଦ୍ୱାରା) ବାରି ହେଉଅଛନ୍ତି । ପାଦ ଦନ୍ତାନ୍ତେ ଅବନୀ ଦିଶୁନାହିଁ । ଏହା ଦ୍ୱାରା ଘୋର ଅନ୍ଧକାର ସୂଚିତ ହେଲା । ବୃକ୍ଷବଲ୍ଲୀ (ଲତା) ଘନ ଘର୍ଷଣରୁ କରି (ଘର୍ଷି ହେବାରୁ) ବାୟୁ ମଶକ ମଶାରି ସରି (ଖଟରେ ମଶାରି ସମାନ ଅଟଇ) ମଶାକ ଖଟରେ ପରଦା ପଡ଼ିଥିବାରୁ ମଶା ପଶି ପାରଇ ନାହିଁ ତଦ୍ରୂପ ଘନଘର୍ଷଣରେ ସେ ବନରେ ପବନ ପଶି ନ ପାରଇ, ସେ ବନର ବାହାରେ ପ୍ରସରୁଛି । ଏମନ୍ତ ବନରେ ରାବିବ ପକ୍ଷୀ (ତାଡ଼କା) ଆସୁ ଏମନ୍ତ ବିଶ୍ୱକ ଗୁଣ ଟଙ୍କାର ବିଧାନ କଲେ । ୩୬-୩୭ ।

୩୮ଶ ପଦ—ଲକ୍ଷ୍ମଣ ଶୁଣି ତାଡ଼କା ଏମନ୍ତ ମଣିଲା । ବନ ଉପରେ ବଜ୍ର ପଡ଼ିଲା କି ? ଏମନ୍ତ ମଣି ତାଡ଼କା ଭ ଦାର ବିଶ୍ରାମ ସ୍ଥାନରୁ ଗୁଡ଼ିଲା ।

---

୧—କ ନଃ ଶ୍ୟାମଳ ଚୈତନ୍ୟ ଇତ୍ୟ ରଃ ।

ବିହନି ଆସିଲ୍ଲ ମନରୁ ବେଗେ । ବଢ଼ମେଘଖଣ୍ଡକୁ ବାୟୁ ଯୋଗେ ।୩୮
ବିକ ପତ୍ର ନାମା ସର୍ପ ଫୁତ୍କାର । ବ ଚକ୍ଷୁ ବନ୍ଧୁକୁ ନିଃଶ୍ୱାସ ତାର ।
ବନ୍ଧୁକିବ୍ରଧର ଶୃଙ୍ଗ କି ହେବୁ , ବୀନ୍ଧ କ ଝର ଖାଳ ତହିଁ ଦେବୁ ।୩୯।
ବିସ୍ଥୃତ ମୁଖ ଗହ୍ୱର ସଦୃଶ । ବ୍ୟାଘ୍ର କଳ୍ପ ପ୍ରାପ୍ତେ ସେ ମଧ୍ୟ ଘୋଷ
ବିସ୍ତାରେ ରେରେକାର ଶୁଭୁଅଛି । ବହ୍ନିଯୋଗ ପ୍ରାପ୍ତେ ଜିହ୍ୱା ଜଳୁଛି
ବିକ୍ଷରୂପା ଆସି ପରବେଶ । ବୃକ୍ଷ ପ୍ରଦାରେ ବନ୍ଧି ମହାରୋଷ
ବୋଇଲା ମୋ ଦନ୍ତ ଲଙ୍ଗଳ ଈଷ । ବପ୍ରକ୍ଷେତ୍ରେ ହେବା ଜଟିଳ ଗୃଷ ।୪୧

---

ମନରୁ (ମନଠାରୁ) ବେଗରେ ବିହନି ସେ ବିକ୍ଷେପ କରି ଆସିଲ୍ଲ । ଏମନ୍ତ ତାକୁ ଥାଉଁ ବଡ଼ ମେଘ ଖଣ୍ଡ ବାୟୁ ଯୋଗରେ ଅଟନ୍ତି କି ? । ୩୮ ।

୩୯ଶ ପଦ—ତାହାର ନାମା ବିଲ ପରି ହୋଇଅଛି, ନିଃଶ୍ୱାସ ସର୍ପ-ଫୁତ୍କାର ପରି ବହୁଅଛି । ଅତି ଶୀଘ୍ର ଆସିବାରୁ ତାହାର ଦେହ (ଚକ୍ଷୁ ଦେଶ) ବନ୍ଧୁକିବ୍ରଧର (ପର୍ବତର) ଶୃଙ୍ଗ କି ? ଯଥା (ଯେରୂପ) ଝରରୁ ପ୍ରବାହ ବହେ ତଦ୍ରୂପ ତାହା ଦେହରୁ (ଦେହରୁ) ଝାଳ ବହୁଅଛି । ୩୯ ।

୪୦ଶ ପଦ—ବିସ୍ଥୃତ (ବିସ୍ତାରି କରିଥିବା) ମୁଖ ଗହ୍ୱର (କନ୍ଦର) ସଦୃଶ ହୋଇଅଛି । ସେ ମଧ୍ୟ (ସେହି ମୁଖ କନ୍ଦର ମଧ୍ୟରେ) ବ୍ୟାଘ୍ରଘୋଷ (ଶବ୍ଦ) କଳ୍ପ ପ୍ରାପ୍ତ ବିସ୍ତାରରେ ରେରେକାର ଧ୍ୱନି ଶୁଭୁଅଛି । ଜିହ୍ୱା ବହ୍ନି-ଯୋଗ ପ୍ରାପ୍ତ ଜଳୁଛି । ୪୦ ।

୪୧ଶ ପଦ—ବିକ୍ଷରୂପା (ବିକୃତରୂପା) ତାଡ଼କା ଆସି ଶ୍ରୀରାମଙ୍କ ସମ୍ମୁଖରେ ପ୍ରବେଶ ହୋଇ ମହାରୋଷରେ ବନ୍ଧି ବୃକ୍ଷ ପ୍ରହାର କରି, ବୋଇଲା ମୋହର ଦନ୍ତ ଲଙ୍ଗଳ ମୁକ୍ତ ଈଷ ହେଲା ତୁମ୍ଭେ ୨ ବପ୍ର (ଶସ୍ୟକ୍ଷେତ୍ର) ହେବ ତତ୍ତୁ ଗୃଷ କରିବ ଅର୍ଥାତ୍ ତର୍ବଣ କରିବି । ୪୧ ।

---

୧—ପ୍ରବାହେ ଜର୍ଝରେ ଝର ଘଡ୍ୟମରଃ ।
୧—ଈଷା ଲଙ୍ଗଳଦଣ୍ଡଃ ସ୍ୟାଦିତ୍ୟମରଃ ।
୨—ପୁଂନପୁଂସକୟୋ ବପ୍ରଃ କେଦାରଃ କ୍ଷେତ୍ରମିତ୍ୟପି ।

ବ୍ୟାନ ସହ ପ୍ରାଣ କର୍କଟ ବତ । ବାହାର ହୋଇବ ମନ୍ଦ ଆୟୁତ ।
ବୋଲି ସେ ଚଳ ଉଞ୍ଚାଇଲା ବେଳେ । ବଧୁଅର୍ଦ୍ଧଶରପ୍ରୟୋଗକଲେ ॥
ବିଶାଳ ତୁଙ୍ଗ ଶାଳମହୀରୁହ । ବିଚ୍ଛେଦନ୍ତେ ପ୍ରାୟେ ପଡ଼ିଲା ଦେହ ।
ତାହାର ତହୁଁ ଦିବ୍ୟରୂପ ହେଲା । ବିମାନ ଆରୋହୀ ସ୍ୱର୍ଗକୁ ଗଲା ।୪୩
ବୃଷ୍ଟି କଲେ ପୁଷ୍ପ ବାଦ୍ୟ ବଜାଇ । ବିବୁଧନିକର ଆକାଶେ ରହି ।
ବନ ଯେ କାଳିକା ଦେଖା ଆକାର । ବାହୁରୁ ତ ଉକ୍ତ ଭାଙ୍ଗିଲା ତାର ୪୪

---

୪୨ଶ ପଦ—୧ ବ୍ୟାନ ସହ (ବ୍ୟାନ ପବନ ସହିତ) ପ୍ରାଣ ପବନ କର୍କଟବତ୍ (କଙ୍କଡ଼ା ତୁଲ୍ୟ) ୨ମନ୍ଦ (ଖରାପ) ତାହାର ଅବସ୍ଥା ହେବ । ଅଥବା ଆୟୁଷ କ୍ଷୀଣ ହେବ । ବୋଲି ତାଡ଼କା ଚଳ (ତଟପଟକ— ସ୍ତୁପୁଡ଼ା) ଉଞ୍ଚ କରିବାବେଳରେ ବଧୂଅର୍ଦ୍ଧଶର (ଅର୍ଦ୍ଧଚନ୍ଦ୍ର ବାଣ) ରାମ ପ୍ରୟୋଗ କଲେ (ପେଷିଲେ) ।୪୨।

୪୩ଶ ପଦ—ବିଶାଳ (ପୃଥୁଳ) ତୁଙ୍ଗ (ଉନ୍ନତ) ୧ଶାଳମହୀରୁହ (ଶାଳ ଗଛଟିଏ) ବିଚ୍ଛେଦନ୍ତେ ପ୍ରାୟେ ତାଡ଼କାର ଦେହ "ତଳରେ ଦ୍ୱିଖଣ୍ଡ ହୋଇ ଛିଡ଼ି" ପଡ଼ିଲା । ତହୁଁ (ତାହାର ଦେହରୁ) ଦିବ୍ୟରୂପ (ଅଲୌକିକ ସ୍ୱରୂପ) ବାହାର ହେଲା । ୨ବିମାନ (ଦେବଯାନ) ଆରୋହଣ କରି ସ୍ୱର୍ଗକୁ ଗଲା ।୪୩।

୪୪ଶ ପଦ – ତାଡ଼କା ନାଶ ହେବାରୁ ଆନନ୍ଦରେ ବିବୁଧନିକର (ଦେବସମୂହ) ଆକାଶରେ ରହି ବାଦ୍ୟମାନଙ୍କୁ ବଜାଇ ପୁଷ୍ପବୃଷ୍ଟି କଲେ । ଯେଉଁ କାଳିକାଦେବୀଙ୍କ ୧ଆକାର (ଅନୁରୂପ) ହେଲା ତାହାର ବାହୁରୁ ତାଡ଼କା (ତାଡ଼କା ରୂପ ତତ୍ତ୍ୱ) ଭାଙ୍ଗି ଗଲା ? କବି ଏମନ୍ତ ଉତ୍ପ୍ରେକ୍ଷା କଲେ ।୪୪।

---

୧—ବ୍ୟାନଃ ସର୍ବଶରୀରଗଃ ।
୨—ମନ୍ଦୋ ମୂର୍ଖେ ଦରିଦ୍ରେ ଚ ଅଲ୍ପେ ଚ ଶନୈଶ୍ଚରେ ।
୧—ଶାଳଃ ସର୍ଜତରୌ ସ୍ୟାତ୍ ତତ୍ତ୍ୱଶାଖିତଃ ।
୨ ବ୍ୟୋମଯାନଂ ବିମାନୋଽସ୍ତ୍ରୀ ବ୍ୟୋମରଃ ।
୧—ଆକାର ଇଙ୍ଗିତାକୃତ୍ୟୋରିତି ମେଦିନୀ ।

ବେଦବଂଶର ବନାଶ ଜ୍ଜଦ୍‌ବେଗ । ବଧ୍ୱଂସିଦୈତ୍ୟରଖିଳବତସୋଯୋଗ ।
ବଗଳିତ ତାପ ହୋଇଲା ଆଗ । ବୃଜମା ଘଲା କର ସ୍ୱର୍ଗଭୋଗ ।୪୫।
ବପକ୍ଷ ପକ୍ଷ ନାହିଁ ମୋ ଷଢାସ୍ତ୍ରୀ । ବସ୍ତ୍ରୁ ଏ ସ୍ୱୟଂ ଅବତୀର୍ଣ୍ଣ ମହୀ ।
ବପୁଟେ ଲୀନ ଅବତାରମାନ । ବସନ୍ତି ପୁରୁଷଲକ୍ଷଣେ ମୀନ ।୪୬।
ବଖ୍ୟାତ ହେଲେ ମନ୍ଦର ତାଡନେ । ବନ୍ଦ୍ୟବଳେ ଏ ନିପୁଣ ଗୁଣେ ।

---

୪୫ଶ ପଦ—ବେଦବଂଶୀ ( ବଣ୍ଣିଥିବଙ୍କର ) ଉଦ୍‌ବେଗ ( ଭୟ ) ବିନାଶ ହେଲା । ଏ ସ୍ୱୟ ହସ୍ତସ୍ତ ଦୈତ୍ୟମାନଙ୍କୁ ବିଧ୍ୱଂସି ( ବିନାଶ କରି ) ମୋ ସାଥ ରହିଲେ ଏଥିରେ ସଂଶୟ ନାହିଁ । ଆଗ ମୁଁ ବିଗଳିତତାପ (ବିଗତ ସନ୍ତାପ) ହେଲି । ଅଥବା ବିଗଳିତ୧ତାପ (ଆଧିଦୈବାଦିତାପବର୍ଜ୍ଜିତ) ହେଲି । ବୃଜମା (ଧ୍ୱଜକା) ସକ୍ଷୀ ଏହାଙ୍କ ହସ୍ତରେ ମଲବାରୁ ସ୍ୱର୍ଗଭୋଗ କରନ୍ତୁ ଗନ୍ତ ଏହା ମୁଁ ପ୍ରତ୍ୟକ୍ଷରେ ଦେଖିଲି ।୪୫।

୪୬ଶ ପଦ - ଏହାଙ୍କର ବିପକ୍ଷ ପକ୍ଷ (ଶତ୍ରୁ ମିତ୍ର) ନାହିଁ ମୋ ଷଢାସ୍ତ୍ରୀ (ମୋକ୍ଷଦାତା) ଅଟନ୍ତି, ସ୍ୱୟଂ ବିଷ୍ଣୁ ଏ, ମହୀରେ ଅବତୀର୍ଣ୍ଣ ହୋଇଅଛନ୍ତି ଏଣୁ ଏହାଙ୍କର ବପୁ (ଶରୀରରେ) ଅବତାରମାନେ ଲୀନ ହୋଇ ଅଛନ୍ତି । ପୁରୁଷ ଲକ୍ଷଣେ (ମହାପୁରୁଷ) ଲକ୍ଷଣରେ ଧ୍ୱଜା ମୀନରେଖା ମୀନ (ମୀନ ଅବତାର) ହେଲେ ସେ ବସନ୍ତି (ରହିଅଛନ୍ତି) ୦ ।୪୬

୪୭ଶ ପଦ - ମନ୍ଦ ମୃଢ଼) ତାଡ଼ିବାର ତାଡ଼ନେ (ଅଘାତରେ) ୧ ମନ୍ଦର (ପର୍ବତ) ତାଡ଼ନ ହେଲା "ଏଣେ" କୂର୍ମାବତାର ବିଖ୍ୟାତ ହେଲା ପୁଣ (ପୁଣି) ଏ ବଦାନ୍ୟ ବଳେ (ଶ୍ରେଷ୍ଠ ଯୁଦ୍ଧରେ) ନିପୁଣ (କୁଶଳ) ଅଟନ୍ତି ଏଣୁ ବଦାନ୍ୟବରେ (ଶ୍ରେଷ୍ଠ ଦାନ୍ତ ରୂପରେ) ନିପୁଣ ହେବାରୁ ଏଥିରେ ବରାହ ଅବତାର ସୂଚିତ ହେଲା । ଏ ବସନରେ (ପିନ୍ଧା ଲୁଗାରେ) ୨ ହିରଣ୍ୟ

---

୧—ତାପଃ ସନ୍ତାପକୃଚ୍ଛ୍ରେ ସ୍ୟେ ଦୁଃଖେ ବର୍ଣ୍ଣଃ ।
୦—ସଂଗ୍ରହଂ ଭାବମୂର୍ତ୍ତିଂ—ମହାପୁରୁଷ ଭର୍ବ ପ୍ରକଟିତ ମିନ୍ମକରଧ୍ୱଜାଲକ୍ଷଣାଦିତ
୧ – ପୃଷ୍ଠଭ୍ରାମ୍ୟତମନ୍ଦମନ୍ଦରଗିରିଗ୍ରାବାଗ୍ରକଣ୍ଡୂୟନ ନିଦ୍ରାଳୋଃ କମଠାକୃତେ—
ର୍ଭଗବତଃ ଶ୍ୱାସାନିଳାଃ ପାନ୍ତୁ ବଃ
୨—ହିରଣ୍ୟଂ ହେମରୂପ୍ୟକମିତ୍ୟମରଃ ।

ବସନ ହିରଣ୍ୟ-ପ୍ରଭା ଗଞ୍ଜନ । ବଳୀଶିରେ ପାଦ ଦେଇ ଗମନ ।୪୭
ବିଜିତ ତେଜରେ ସହସ୍ରକର । ବର୍ଣ୍ଣିତ କୃଷ୍ଣ କରି ଅଙ୍ଗୀକାର ।
ବଳସଙ୍ଗ ହୋଇଅଛି ସହଜେ । ବୁଦ୍ଧିରୁ ବୁଦ୍ଧିରେ ପୁଣ ଉପୁଜେ ।୪୮
ବିଭ୍ରାଜମାନ ସାୟକରେ ଅତି । ହର୍ଷିତ କରୁଛି ଗନ୍ଧର୍ବଗତି ।
ବର୍ତ୍ତମାନ ଭୂତ ଭବିଷ୍ୟ ଯେନ । ବୀକ୍ଷଣେ ଅବତାର ଏହି ଚିହ୍ନ ।୪୯

---

(ସୁବର୍ଣ୍ଣର) ପ୍ରଭା ଗଞ୍ଜନ କରୁଅଛନ୍ତି । [୩] ବସନ (ଆଚ୍ଛାଦନ ବସ୍ତ୍ର) ହିରଣ୍ୟକଶିପୁର ଦେହ (ଧାତୁ) ଖଣ୍ଡନ ଅଛନ୍ତି । ଏଥିରେ ନୃସିଂହ ଅବତାର ସୂଚିତ ହେଲା । ଏ ବଳୀ (ବଳୀରାଜା) ଶିରେ ପାଦ ଦେଇ ଗମନ କରିଥିଲେ ଭଗବାନ ବାମନରୁ ବଳୀ (ବଳରାମଙ୍କ) ଶିରେ ପାଦ ଦେଇ ଗମନ କଲେ ଏଣେ ବାମନାବତାର ସୂଚିତ ହେଲା ।୪୭

୪୮ଶ ପଦ—ବିଜିତ (ଜିଣି ଅଛନ୍ତି) ତେଜରେ ସହସ୍ରକର (ସୂର୍ଯ୍ୟ) ଏ ସହସ୍ରକର (ସହସ୍ରାର୍ଜ୍ଜୁନ) ବିଜିତ (ଜିଣିଛନ୍ତି) ଏଣେ ପରଶୁରାମାବତାର ସୂଚିତ ହେଲା । ବର୍ଣ୍ଣିରେ ତ କୃଷ୍ଣ ଅଛନ୍ତି ଏବଂ କୃଷ୍ଣାବତାରକୁ ଅଙ୍ଗୀକାର କରିଅଛନ୍ତି । [୧]ବଳ (ସାମର୍ଥ୍ୟ) ବଳ (ବଳରାମ) [୨]ସହଜରେ ସଙ୍ଗ ହୋଇ ଅଛନ୍ତି । ପୁଣି ବୁଦ୍ଧିରେ ବୁଦ୍ଧତ୍ୱ (ପଣ୍ଡିତତ୍ୱ) ବୁଦ୍ଧତ୍ୱ (ବୁଦ୍ଧାବତାରତ୍ୱ) ଉପୁଜିଛି । ଏଣେ ବୁଦ୍ଧାବତାର ସୂଚିତ ହେଲା ।୪୮

୪୯ଶ ପଦ—ସାୟକ (ଶର) [୧]ସାୟକ (ଖଡ୍ଗ) ହେଲା ତହିଁରେ ଅତିଶୟ ବିଭ୍ରାଜମାନ ଅଛନ୍ତି [୨] ଗନ୍ଧର୍ବଗଣ (ଗନ୍ଧର୍ବ ପୁରୁଷ ପ୍ରମୁଖ ଗଣ) ଗନ୍ଧର୍ବ ଘଟ (ବାଜି ଘୋଟକ ଗମନ) ତାକୁ ହର୍ଷିତ କରୁଅଛନ୍ତି ଏଣେ କଳ୍କୀ ଅବତାର ସୂଚିତ ହେଲା । ଏରୂପ ମତ୍ସ୍ୟ କୂର୍ମ ବରାହ ନୃସିଂହ ବାମନ ପରଶୁରାମ କୃଷ୍ଣ ବଳରାମ ବୌଦ୍ଧ କଳ୍କୀ ଦଶ ଅବତାର ସୂଚିତ ହେଲା । ବୀକ୍ଷଣେ (ଦେଖିବାରେ)

---

୩—ବସନଂ ଛାଦନେ ବସ୍ତ୍ରେ ଇତି ମେଦିନୀ ।
୧—କାଳିନ୍ଦୀଭେଦନୋ ବଳ ଇତ୍ୟମରଃ ।
୨—ସଦ୍ବନସ୍ତୁ ଷଣ୍ଢବେ ଚ ହନ୍ତେ ତୃପ୍ତେ ଇତି ମେଦିନୀ ।
୧—ଶରେ ଖଡ୍ଗେ ଚ ସାୟକ ଇତ୍ୟମରଃ ।
୨—ଗନ୍ଧର୍ବୋ ମୃଗଭେଦେ ସ୍ୟାତ୍ ପୁଂସ୍କୋକିଲତୁରଙ୍ଗୟୋଃ ଇତି ମେଦିନୀ ।

ବପ୍ତାହ୍ନଗୁଁ ଦଶରଥ ନୃପ୍ରତ । ବିଦ୍ୟାଗୁରୁ ହୋଇ ରହୁ ମେ କାନ୍ତି ।
ବିବେକୀ ଋଷି ସ୍ନାନବିଧି ସାର । ବିଜୟା ଜୟା ମନ୍ତ୍ର ଦାନକର ।୫୦
ବିଶାଳକଣ୍ଟକ ସୀମରେ ସ୍ଥିତ । ବିଗୃହୁଁ ଅସ୍ତ୍ରଶସ୍ତ୍ର ଉପଗତ ।
ବୀରେଶ୍ୱର ରାମ ସଙ୍ଗରୁଁ ସତ । ବିଦନ୍ତ ମୁନି ସେଦେଶ ଚରିତ ।୫୧
ବାସର ନଶିଏ ତହିଁରେ ରହି । ବହିଲେ ପ୍ରସ୍ଥିତ ହରଷହୋଇ ।
ବାନପଦେ ଏଗ୍ରନ୍ଥ ମନୋହର । ବିରଚେ ଉପେନ୍ଦ୍ର ବୀରବର ।୫୨

—o—

ଏହି (ରାମଚନ୍ଦ୍ର) ଏହାଙ୍କ ଚରିତ୍ର ଭୂତ ଭବିଷ୍ୟ ବର୍ତ୍ତମାନ (ତ୍ରିକାଳର) ଅବତ ରାମଙ୍କ ଯେନ ଅବତାର ଅଟନ୍ତି o । ୪୯ ।

୫୦ଶ ପଦ—ସୂର୍ଯ୍ୟବଂଶରୁ ଦଶରଥ ନୃପତି ବପ୍ତା (ପିତା) ହେଲେ ; ଏହାଙ୍କର ବିଦ୍ୟାଗୁରୁ ହୋଇ ମନୋହର କାନ୍ତି ରହୁ । ଏହାନ୍ତ ବିଶ୍ୱ କର୍ଷି ଋଷି (ବିଶ୍ୱାମିତ୍ର) ସ୍ନାନ ବିଧି ସାରି ତାଙ୍କୁ ବିଜୟା ଜୟା ନାମକ ଦୁଇ ମନ୍ତ୍ର ଦାନ କଲେ ।୫୦।

୫୧ଶ ପଦ– ବିଶାଳ ନାମକ କଣ୍ଟକର ସୀମାରେ ସ୍ଥିତ ହେଲେ ସେ ବିଶ୍ୱାମିତ୍ର ଦେବା ମନ୍ତ୍ରକୁ ବିଗ୍ରହରେ (ମନରେ ସ୍ମରଣରେ) ଅସ୍ତ୍ର (ଶର) ଶସ୍ତ୍ର (ଖଡ୍ଗାଦି) ସବୁ ଉପଗତ ହେଲେ । ବୀରେଶ୍ୱର (ବୀରଶ୍ରେଷ୍ଠ) ରାମ ବିଶାଳ-କଣ୍ଟକ ଚରିତ ସଙ୍ଗରେ ସତ (ସାଧୁ) ମୁନି (ବିଶ୍ୱାମିତ୍ର) ବିଦନ୍ତି(କହିଲେ) ।

୫୨ଶ ପଦ – ତହିଁରେ (ସେହି କଣ୍ଟକ ସୀମାରେ) ବାସର ନଶିଏ (ଅହୋରାତ୍ର) ରହି ପ୍ରସ୍ଥାନରେ ହର୍ଷ ହୋଇ ପଥ (ମାର୍ଗ) ବହିଲେ (ବହି ଚଲେ) । ଏ ଷଷ୍ଠଗ୍ରନ୍ଥ ବାନପଦରେ ଉପେନ୍ଦ୍ର ନାମା ବୀରବର କବି ବିରଚିଲେ ।୫୨।

— — —

o ଯସ୍ୟ ନ୍ୟସ୍ତବ ଶ୍ରୁନକନ୍ଦୀମ୍ନ କଳଃ ପୃଷ୍ଟେ କାନନ୍ତକଂ ।
ଦନ୍ତାଗ୍ରେ ଧରଣୀ ନଖେ ଦିତିସୁତାଧୀଶଃ ପଦେ ମେଦିନୀ ।
କ୍ରୋଧେ କ୍ଷତ୍ରଗଣଃ ଶରେ ଦଶମୁଖଃ ପାଣୌ ପ୍ରଳମ୍ବ ସୁରୋ ।
ଧ୍ୟାନେ ବିଶ୍ୱମସାବଧାର୍ମିକକୁଳଂ କସ୍ମୈ ବିଦଶ୍ମୈ ନମଃ । ଇତିଦର୍ପଣେ ।

# ସପ୍ତମ ଛାନ୍ଦ ।

ରାଗ ପଞ୍ଚମମଞ୍ଜରୀ ।

ବଟେନ୍ଦ୍ରୋଜା ସୁଧାଂଶୁ ଗୁରୁ ସଙ୍ଗତ ସମାନ ।
ଦେବଭ୍ରାତା ମୁନି ସଙ୍ଗେ ଦେଖେ ସିଦ୍ଧବନ ।୧।
ବୃକ୍ଷତତି ତପିପନ୍ତି ତହିଁ ଏକାକୃତି ।
ବଲ୍କଳ ପିଧାନ କରି ଜଟା ଧରିଛନ୍ତି ।୨।
ବେଦ-ସାର ମୂଳ ସଦା ସୁମନା ଫଳଦ ।
ବାସ ବୃତ ପର୍ଣ୍ଣଚୟ ଅଛଥିର ହୃଦ୍ୟ ।୩।

---

ସପ୍ତମ ଛାନ୍ଦ ।

୧ମ-୨ୟ ପଦ — ୧ ବଟେନ୍ଦ୍ରୋଜା [ଇନ୍ଦ୍ର] ସୁଧାଂଶୁ [ଚନ୍ଦ୍ର] ଏହୁହେଁ ଗୁରୁ [ବୃହସ୍ପତିଙ୍କ] ସଙ୍ଗତ [ସଙ୍ଗ] ସମାନରେ ଦେବଭ୍ରାତା [ଲକ୍ଷ୍ମଣ ଦୁହେଁ] ମୁନି [ବିଶ୍ୱାମିତ୍ରଙ୍କ] ତୁଲ୍ୟରେ [ସହିତରେ] ସିଦ୍ଧ-ବନକୁ ଦେଖିଲେ । ତହିଁରେ [ସେ ବନରେ] ବୃକ୍ଷତତି [ତରୁ ସମୂହ] ତପିପନ୍ତି [ତପସ୍ୱି ବୃନ୍ଦ] ଏ ଦୁହେଁ ଏକାକୃତି [ଏକାକାର] ହୋଇ ଅଛନ୍ତି । ବୃକ୍ଷତତି ଯେରୂପ ୨ ବଲ୍କଳ [ବକଳ] ୩ ପିଧାନ [ଆଚ୍ଛାଦନ] କରିଅଛନ୍ତି ଓ ୪ ଜଟା ଧରିଅଛନ୍ତି ତପିପନ୍ତି ତଦ୍ରୂପ ବକଳ ପିନ୍ଧିଅଛନ୍ତି, ଜଟା ବାନ୍ଧିଅଛନ୍ତି । ୧ । ୨ ।

୩ୟ ପଦ ବୃକ୍ଷତତି ଯେରୂପ ୧ ବେଦସାର [ବେଦଶ୍ରେଷ୍ଠ] ମୂଳ [ମୂଳରେ ଯାହାଙ୍କର] ଏବଂ ସଦା ସୁମନାଫଳଦ [ପୁଷ୍ପଫଳଦାତା] ଅଟନ୍ତି ତଦ୍ରୂପ ତପିପନ୍ତି ବେଦୀ [ବେଦବନ୍ତ] ଅଟନ୍ତି, ୨ ସାର [ସଜ୍ଞ]

---

୧—ବଟେନ୍ଦ୍ରୋଜା ପାକଶାସନ ଇତ୍ୟମରଃ ୨ ବଳ୍କଂ ବଲ୍କଳମସ୍ତ୍ରିୟାଂ ।
୩— ଅପିଧାନ ତିରୋଧାନ ପିଧାନ ଚ୍ଛାଦନାନି ଚ ଇତ୍ୟମରଃ ।
୪—ସୂତ୍ରେ ନିଗ୍ରନ୍ଥେ ଜଟା ଇତ୍ୟମରଃ ।
୧—ମୂଳଂ ମୂଲେ ଶାସ୍ତ୍ରିକ ରକ୍ତବେଦଃ ବେଦ୍ୟଂ ବେଦ୍ୟାଂ ସିଦ୍ଧଃ ଜ୍ଞାନଗୋଷ୍ଠିତ
୨—ସ ଦେ ବଳେ ସ୍ଥିରାଂଶେ ଚ ମଜ୍ଜେ ପୁଂସି ଜଳେ ଧନେ । ନ୍ୟାଯ୍ୟେ
କ୍ଳୀବଂ ତ୍ରିଷୁ ବରେ ଇତି ମେଦିନୀ ।

ବନାଧାର ପ୍ରାପ୍ତେ ଲତାତଳ ମନୋହର ।
ବଶ୍ରାମିଛନ୍ତି କମଳ ହଂସ ତାପ ଦୂର ।୪।
ବିଘଟିତ ଘନପୁଷ୍ପ ଭ୍ରମନ୍ତେ ତନ୍ଦ୍ରିତ ।
ବନୋଦଜନମାନଙ୍କ ହରୁଅଛି ଚିତ୍ତ ।୫।

ମୂଳ [ଯାହାଙ୍କର] ଅଥବ ୩ ବେଦ [ପରିଷ୍କୃତା ଭୂମି] ସାର [ଯଜ୍ଞ] ଏ ଦୁହେଁ ମୂଳ ଯାହାଙ୍କର ସଦା ସୁମନା [ଉତ୍ତମ ମନ ଯାହାଙ୍କର] ଫଳିତ [ଉଜ୍ଜ୍ୱଳ ଫଳଭାଗୀ] ଅଟନ୍ତି । ବୃନ୍ଦତଳ [ବେଦୂର ବାସ] [ଯୌନ ଯୁକ୍ତ] ୪ ପର୍ଣ୍ଣଚୟ [ପତ୍ର ସମୂହ ଦ୍ୱାରା] ବୃତ [ସବୃ] ଅନେକର [ଦର୍ଶିକ] ହୃଦ୍ୟ [ମଜ୍ଜା] ଯାହାଙ୍କର ଅଥବା ଅନେକର [ଅନ୍ୟଥା ନିଙ୍କଟ] ହୃଦ୍ୟ [ପ୍ରିୟ] ତଦ୍ରୂପ ତପିଜନ୍ମ ବାସ [ଗୃହରେ] ଆବୃତ କରି ଅଛନ୍ତି ଯେ ସମସ୍ତଙ୍କୁ, ଅନ୍ୟଥିର [ନଷ୍ଟ] ହୃଦ [ହୃଦୟ] ଅଟନ୍ତି ୩।

୪ର୍ଥ ପଦ -- ହେ ବନରେ ଲତାମାନଙ୍କ ତଳେ ବନୋଧାର [ଜଳାଧାର] ପ୍ରାପ୍ତ ମନୋହର ହୋଇଅଛି । ଜଳାଧାରରେ କମଳ [ପଦ୍ମମାନେ] ଯେରୂପ ବଶ୍ରାମି [ଦହି] ଅଛନ୍ତି, ହଂସଙ୍କର ୨ ତାପ [କଷ୍ଟ] ଦୂର ହୋଇଥିଏ ତଦ୍ରୂପ ଲତା ତଳରେ ୩ କମଳ [ମୃଗମାନେ] ବଶ୍ରାମ କରୁଅଛନ୍ତି, ହଂସ [ମୁନିଙ୍କର] ତାପ [ସନ୍ତାପ] ଦୂର ହୋଇଅଛି ।୪।

୫ମ ପଦ—ବନାଧାର ବିଘଟିତ [ବିଶେଷରେ ଘଟିତ] ଘନପୁଷ୍ପ [ଜଳ] ଭ୍ରମ [ଅବର୍ତ୍ତ] ସହିତ ହୋଇଥିଏ । ବନୋଦ [ବନ୍ୟ] ଜନମାନଙ୍କର ଚିତ୍ତ ହରୁଅଛି । ଲତାତଳ ତଦ୍ରୂପ ବିଘଟିତ ଘନ [ସାନ୍ଦ୍ର]

୩—ବେଦଃ ପରିଷ୍କୃତା ଭୂମିର୍ଯଜ୍ଞମଦ୍ଧ୍ୱଃ ।
୪—ଦଳଂ ପର୍ଣ୍ଣଂ ଛଦଃ ପୁଂସ ମଭୃତ୍ୟାମ୍ ।
୧—ଜଳାଶୟା ଜଳଧାରା ଜିତ୍ୟମରଃ ।
୨—ତାପଃ ସନ୍ତାପକୃଚ୍ଛ୍ରେଷ୍ଟେ ଶତ ବର୍ଣ୍ଣଃ ।
୩—କମଳଂ ସଲିଲେଣଷ୍ଟୁ ଜଳେଜେ କ୍ଲେମି ଭେଷଜେ । ବୃଦ୍ଧଭେଦେ ଽପି କମଳମିତି ମେଦିନୀ ।

ବନର କେଉଁ ପ୍ରଦେଶ ଅବନ୍ତ ପ୍ରକାର ।
ବହନ ଅନୁଭବରେ ଶିଖୀ ଶୋଭାକର ।୭।
ବରୁଣ ଦେବବଲ୍ଲିର ଉଦୟ କରନ୍ତି ।
ବନ୍ଧୁ ସୁମନାସନ୍ତୋଷକର ହୋଇଅଛି ।୮।

ପୁଷ୍ପ ନଙ୍କର ୧ ଭ୍ରମର [ଭ୍ରମରମାନଙ୍କ] ସହିତ ହୋଇଅଛି । ଦ୍ଵ [ପକ୍ଷ] ୨ ନୋଦା [ପ୍ରୀତମନ୍ତ ଜନ] ଏମାନଙ୍କ ଚଉ ହୁଇଅଛି । ୫ ।

୭ମ ପଦ । ସେହିବନର କେଉଁ ପ୍ରଦେଶ ଅବନ୍ତ [ଦେବମାତା] ୧ ପ୍ରକାର ହୋଇଅଛି । ଅବନ୍ତ ବହନ [ବାଲକର] ୨ ଅନୁଭବରେ ଶିଖୀ [ଅଗ୍ନି] ଶୋଭାକୁ କରନ୍ତି । ଏକ ପ୍ରଦେଶ ବହନ [ଗିରି-ମଲ୍ଲିକା] ତାହାଙ୍କ ଅନୁଭବରେ [ଅନୁଜ୍ଞାରେ] ୩ ଶିଖୀ [ଭ୍ରମରମାନଙ୍କ] ଶୋଭାକର [ଶୋଭାକାରୀ] ହୋଇଅଛନ୍ତି । ଅଥବା ବହନ [ଗିରିମଲ୍ଲିକା] ତାହାର ଅନୁଭବରେ ଶିଖୀ [ମୟୂରମାନଙ୍କ] ଶୋଭାକୁ କରନ୍ତି । ୭ ।

୮ମ ପଦ—ପୁଣି ଅବନ୍ତ ବରୁଣ [ବରୁଣ ଦେବତା] ଦେବବଲ୍ଲିର [ରଜ] ତାହାଙ୍କ ଉଦୟ [ବୃଦ୍ଧି] କରୁଅଛନ୍ତି । ପୁଣି ବନ୍ଧୁ ସୁମନା [ବନ୍ଧୁ ଦେବତାଙ୍କ] ସନ୍ତୋଷକର ହୋଇଅଛି । ତତ୍ର ବନ ପ୍ରଦେଶ ବରୁଣ [ବରୁଣବୃକ୍ଷ] ଦେବବଲ୍ଲିର [ଦେବଦାରୁ ବୃକ୍ଷ] ଏହାଙ୍କ ଉଦୟ କରନ୍ତି ପୁଣି ବନ୍ଧୁ ସୁମନା [ପୁଷ୍ପଙ୍କ ଦ୍ୱାରା କିମ୍ବା ସୁମନା [ସୁଜନଙ୍କ-ଦ୍ୱାରା] ଅଥବା ସୁମନା [ମାଳତୀଲତାଦ୍ୱାରା] ସନ୍ତୋଷକର ହୋଇଅଛି ।

୧—ଷଟ୍‌ପଦଭ୍ରମରାଳ୍ୟ ଇତ୍ୟମରଂ ।
୨—ନୁଦ (ପ୍ରୀତୌ) ଧାତୁଃ । ଘଞେ ଘଣ । ଅନ୍ୟେଽର୍ଥେଽପି ନମୋ ନମନଶେଷାଶୁଦେଶୁବାଦ୍ୟବନୋଦନେ ଇତ ପ୍ରୟୋଗଃ ।
୧—ପ୍ରକାରେ ଭେଦସଦୃକ୍ଷ୍ୟୋରିତ୍ୟଶଃ ।
୨—ଅନୁଭଃ ପ୍ରଭାବେ ସ୍ୟାନ୍ନିଶ୍ଚୟେ ଭାବବୋଧନେ ଇତ ମେଦିନୀ ।
୩—ଶିଖା ବହ୍ନୌ ବଲୀବର୍ଦ୍ଦେ ଶରେ କେତୁଗ୍ରହେ ଦ୍ରୁମେ ମୟୂରେ କୁକ୍କୁଟେ ପୁଂସୀତି ମେଦିନୀ ।
୪—ବାସନ୍ତୀ ଗିରିମଲ୍ଲିକା ଇତ୍ୟମରଃ ।

ବନର କେଉଁ ପ୍ରଦେଶ ବିଶ୍ଚ ଛବ ଧରି ।
ବିଜନିତ ଦୈତ୍ୟ ଗଣ-ରୂପ ଅଛି କରି ।୮।
ବିସ୍ତାରିଛି ପବନ ଲୀଳାକୁ ନିରନ୍ତର ।
ବିଶେଷିତ ମୁନିନଗରେ ସେ ମନୋହର ।୯।
ବନର କେଉଁ ପ୍ରଦେଶେ ରଞ୍ଜନେ ରଞ୍ଜନ ।
ବିନତା ପ୍ରାପ୍ତ ଅରୁଣ ସୁପର୍ଣ୍ଣ ସୁମନ ।୧୦।

---

୮ମ ପଦ—ସେହି ବନର କେଉଁ ପ୍ରଦେଶ ବିଶ୍ଚ (ବୈଚିତ୍ର୍ୟ ଭାର) ଛବିକି ଧରିଅଛି । ବିଶ୍ଚ ୧ ରୂପ (ସ୍ୱଭାବରେ) ଦୈତ୍ୟଗଣ (ଦନୁଜସମୂହ) ବିଜନିତ (ଜାତ କରିଅଛି) କିମ୍ବା ରୂପ (ସୌନ୍ଦର୍ଯ୍ୟ) ଭରିଅଛି । ତଦ୍ରୂପ ବନପ୍ରଦେଶ ୨ ଦୈତ୍ୟ (ମୁରାମାଂସୀ) ୩ ଗଣରୂପ (ଅର୍କ) ଏ ବୃକ୍ଷଙ୍କି ବିଜନିତ (ଜାତ) କରିଅଛି ।

୯ମ ପଦ—ବିଶ୍ଚ ପବନ (ଦେବତାର) ୧ ଲୀଳା ନିରନ୍ତର ବିସ୍ତାରିଛି । ସେ (ବିଶ୍ଚ) ବିଶେଷତରେ ମୁନି (ଜଣୋପରିକ୍ଷିଙ୍କ) ନଗର (ପୁର) ତହିଁରେ ମନୋହର, ବନପ୍ରଦେଶ ତଦ୍ରୂପ ପବନ ଲୀଳା ବିସ୍ତାରିଛି ପୁଣି ବିଶେଷରେ ୨ ମୁନି ୩ ନଗ (ଅଗସ୍ତି ବୃକ୍ଷ) ଦ୍ୱାରା ମନୋହର ହୋଇଅଛି ।

୧୦ମ ପଦ—ବନର କେଉଁ ପ୍ରଦେଶ ବିନତା ପ୍ରାପ୍ତ ହୋଇଅଛି । ବିନତା ସୁମନେ (ହୃଷ୍ଟମନରେ) ୨ ସୁପର୍ଣ୍ଣ (ଗରୁଡ଼) ଅରୁଣ (ଗରୁଡ଼ାଗ୍ରଜ) ଏ ଦୁହିଙ୍କି ରଞ୍ଜନ (ଅନୁରାଗଜନକ) ତହିଁରେ ରଞ୍ଜନ (ମନୋହର), ବନପ୍ରଦେଶ ତଦ୍ରୂପ ସୁପର୍ଣ୍ଣ (ହୃଷ୍ଟପତ୍ର) ୩ ଅରୁଣ

---

୧—ରୂପଂସ୍ୱଭାବେ ସୌନ୍ଦର୍ଯ୍ୟ ଇତି ମେଦିନୀ ।
୨—ଦୈତ୍ୟା ଗନ୍ଧକୁଟି ମୁରା
୩—ଗଣରୂ ପବିକଙ୍କଣା ଇତ୍ୟମରଃ ।
୧—ଲୀଳା କେଳି ବିଳାସଯୋରିତି ମେଦିନୀ ।
୨—ବାଚଂୟମନସ୍ତୁ ଗସ୍ତ୍ୟଦ୍ରୁ ଶୁଭନାଦସୋ ମୁନିଦ୍ରୁମଃ ; ଇତି ନିକାଣ୍ଡଶେଷଃ ।
୩—ଶୈଳ ବୃକ୍ଷୌ ନଗାବଗାବଦ୍ଧ୍ୟମରଂ ।

ବନର କେଉଁ ପ୍ରଦେଶ କଦ୍ରୁ ହବ ବନ୍ତ ।
ବହୁସ୍ତବର ହୋଇଛି ନାଗଙ୍କେଶ୍ୱରହିଁ । ୧୧ ।
ବନର କେଉଁ ପ୍ରଦେଶ ସଙ୍ଗୀତର ଶାଳା ।
ବ୍ୟୋମଲସିକା ନର୍ତ୍ତନେ ହୋଇଅଛି ମେଳା । ୧୨ ।
ବରଳ ଟଙ୍କ ଗାନେ ଖ୍ୟାତ ସାତସ୍ୱର ।
ବତାଳ ହୋଇଣ ସଗ ଜାତ ମନୋହର । ୧୩ ।

(ଅବ୍ୟକ୍ତରାଗ) ସୁମନ (ପୁଷ୍ପ) 'ସୁକ୍ତ' ରଞ୍ଜନ (ରକ୍ତଚନ୍ଦନ) ତାହିଁରେ ରଞ୍ଜନ ଅଟଇ ।୧୦।

୧୧ଶ ପଦ—ବନର କେଉଁ ପ୍ରଦେଶ କଦ୍ରୁ (ନାଗମାତା) ଙ୍କ ବନ୍ଧୁ ଅଛି । ଯହିଁ (ଯେଉଁ କଦ୍ରୁଠାରେ) ୧ ନାଗେଶ୍ୱର (ନାଗଶ୍ରେଷ୍ଠ) ବହୁସ୍ତବର (ନାଗମାନେ ଜାତ ହେବାରୁ ବହୁସ୍ତବର) ହୋଇଅଛି । ତଦ୍ରୂପ ବନପ୍ରଦେଶ ନାଗେଶ୍ୱର (ବୃକ୍ଷ) ବହୁସ୍ତ (ବରସ) ହର ହୋଇଅଛି । ଅର୍ଥାତ୍ ଆନନ୍ଦଜାତକ ହୋଇଅଛି । + ।୧୧।

୧୨ଶ ପଦ—ବନର କେଉଁପ୍ରଦେଶ ସଙ୍ଗୀତଶାଳ (ସଙ୍ଗୀତମନ୍ଦିର) ପ୍ରାପ୍ତ ଅଟଇ । ଯେରୂପ ସଙ୍ଗୀତଶାଳ ୧ ବ୍ୟୋମଲସିକା (ଶୂନ୍ୟନର୍ତ୍ତକୀର) ନର୍ତ୍ତନ (ନୃତ୍ୟ) ମେଳା ହୋଇଥାଏ ତଦ୍ରୂପ ବନପ୍ରଦେଶ ୨ ବ୍ୟୋମଲସିକା (ଭରଦ୍ୱାଜପକ୍ଷୀର) ନର୍ତ୍ତନ ମେଳା ହୋଇଅଛି ।୧୨।

୧୩ଶ ପଦ—ବରଳ (ନର୍ମନ) ଟଙ୍କ (ଗନ୍ଧର୍ବ ପୁରୁଷଙ୍କ) ଗାନ ପରି ବାନ ଯାହାଙ୍କର ସେରୂପ ଗାୟକଙ୍କ ଗାନରେ ଖ୍ୟାତ ହୋଇଥାଏ ୧ ସାତସ୍ୱର (ସପ୍ତସ୍ୱର) ଅର୍ଥାତ ପଞ୍ଚମସ୍ୱର ଯହିଁରେ ସେରୂପ ସଙ୍ଗୀତ-ମନ୍ଦିର

---

୧—ପୁଂସି ଯଃ କେଶରୋ ନାଗକେଶରଃ କାଞ୍ଚନାହ୍ୱୟ ଇତ୍ୟମରଃ ।
+ ପାଞ୍ଚପଦ ଉତ୍ତାରୁ ଏକାଦଶପଦ ପର୍ଯ୍ୟନ୍ତ ଉପମା ଦେଖାଉଛନ୍ତି—
ତମାଲପତ୍ରାଭରଣା ସ୍ରଜଟେ ବଳସଦବସ୍ତୁ । ଇତ୍ୟଲଂକାରଶେଖରେ ।
୧—ବ୍ୟୋମସ୍ଥଶୈ ସ୍ୱକାଶେ ନର୍ତ୍ତକୀ ଲସିକା ସମେ ଇତ୍ୟମରଃ ।
୨—ଭରଦ୍ୱାଜ ବ୍ୟୋମ ଲସିକା ଇତି ।
୧—ନିଷାଦର୍ଷଭଗାନ୍ଧାରଷଡ୍ଜମଧ୍ୟମଧୈବତାଃ । ପଞ୍ଚମଶ୍ଚେତ୍ୟମୀ ସପ୍ତ ଇତ୍ୟମରଃ ।

ବସନ୍ତ ବାସ କରିଛୁ କେଦାରଙ୍କୁ ମେଳ ।
ବିଚଳିତ ଯହିଁରେ ସଦା ସୁମରଦଳ । ୧୪ ।
ବର୍ଣ୍ଣୁଥିଲେ ସରିବାର ନୁହେ ଏ ଚରିତ ।
ବିଶ୍ରାମ କଲେ କୌଶିକମଠେ ରଘୁସୁତ । ୧୫ ।

ଭୂମି ବନପ୍ରଦେଶ ବିରଳ ୨ ଗନ୍ଧର୍ବ (ପୁଂସ୍କୋକିଳ) ତାହାଙ୍କ ଗାନେ (ଗୀତରେ) ସ୍ୱାତସ୍ୱର (ପଞ୍ଚମସ୍ୱର) ଖ୍ୟାତ ହୋଇଅଛି କିମ୍ବା ସାତ (ସୃଷ୍ଟ) ସ୍ୱର ଯହିଁରେ । ସଙ୍ଗୀତ ମଧୁର ବିତାଳ (ଅକାଳ) ନୋହି ଗନ୍ଧ (ଗାନ୍ଧର୍ବ) ଜାତକର (ଜନ୍ମକାରକ) ରୂପେ ଖ୍ୟାତ ହୋଇଥିଲେ. ତଦୁପ ବନପ୍ରଦେଶ ତେଜ (ଅଡ଼ାଳ) ନୋହି (ନ ହୋଇଛି) ଅର୍ଥାତ୍ ତହିଁରେ ତଳ ବୃକ୍ଷ ଅଛନ୍ତି ଅଗଣ (ଅନୁଗତ) ଖ୍ୟାତ କରି ଜାତକର ହୋଇଅଛି ।୧୩।

୧୪ଶ ବନପ୍ରଦେଶ ବସନ୍ତ (ବସନ୍ତଋତୁର ବା ସ୍ଥଳଦୀବସନ୍ତର) ବାସ (ସ୍ଥାନ) ଅଟଇ, କିନ୍ତୁ ଭେଦ ର (ପର୍ବତ) କିମ୍ବା ୧ କେଦାର (ଆ-ବାଳ-ମନ୍ଦା)ମେଳ ହୋଇଅଛି । ଯହିଁରେ (ଯେଉଁ ବନପ୍ରଦେଶରେ) ହେ ଜନମା ନ ୨ସୁମ (ପୁଷ୍ପ) ତାହାର ଦଳ (ପାଖୁଡ଼ାମାନେ)"ପବନରେ" ବିଚଳିତ ହୋଇଅଛନ୍ତି ଏରୂପ ସଙ୍ଗତଶକ୍ର ମଧ୍ୟ ବସନ୍ତ ରାଗର ବାସ ଅଟଇ, କିଛି କେଦାର (ରାଗର) ମେଳ ହୋଇଥାଏ । ଯହିଁରେ ସୁ-ମର୍ଦ୍ଦଳ (ଭଲ ମର୍ଦ୍ଦଳ) ବିଚଳିତ ହୋଇଥାଏ, ବାଦ୍ୟ ବାଜୁଥାଏ ୧୪।

୧୫ଶ ପଦ—ସେହି ହିତବନ ବର୍ଣ୍ଣୁଥିଲେ ତ ସରିବାର ନୁହଇ । ସେ ବନରେ କୌଶିକ (ବିଶ୍ୱାମିତ୍ର ରଘୁସୁତ (ରାମ ଲକ୍ଷ୍ମଣଙ୍କୁ) ଘେନି ଆପଣା ଆଶ୍ରମରେ ବିଶ୍ରାମ କଲେ ।୧୫।

୨—ଗନ୍ଧର୍ବୋ ମୃଗଭେଦେ ସ୍ୟାତ୍ ପୁଂସ୍କୋକିଳ ଭୃଙ୍ଗୟୋଃ ।
ଅନ୍ତର୍ଭବଦେହେ ଚ ଗାୟକେ ଖେଚରେଽପି ଚ ଇତି ବିଶ୍ୱଃ ।
୩—କେଶାବ ବନୁଗତେ ଚ ଗାନ୍ଧାରଦୌ ନୃତେଽପି ଚ ଇତି ମେଦିନୀ ।
୧ କେଦାରଃ ପର୍ବତେ ଶମ୍ଭୌ ଭୂମିଭେଦାଳବାଳୟୋଃ ଇତି ବିଶ୍ୱଃ ।
୨—ସୁମ ପ୍ରସୂନଂ କୁସୁମଂ ସୁମଂ ଚ ସୁମନା ଅପି ଇତି ବାଚସ୍ପତିଃ ।

ବାନପ୍ରସ୍ଥ ବୃଦ୍ଧମାନେ ଭେଟନ୍ତେ ମିଳିଲେ ।
ବ୍ରହ୍ମଚାରୀ ଦଣ୍ଡୀ ଆସି ଆଶିଷ ଦେଲେ । ୧୬ ।
ବୋଧି ବିବିଧ ଅଶନେ ମନ ତାହାଙ୍କର ।
ବସିଲେ ରାତ୍ରିରେ ଚନ୍ଦ୍ରକରେ ଅଙ୍ଗଣର । ୧୭ ।
ବିଗତଭୟ ହୋଇଣ ରାକ୍ଷସଙ୍କ ହେତୁ ।
ବୋଇଲେ ରଘୁନନ୍ଦନ ଆରମ୍ଭ ହେଉ କ୍ରତୁ । ୧୮ ।
ବଚନ ପ୍ରକାଶରୁ ଋଷି ଆନନ୍ଦ ହୋଇଲେ ।
ବିବିଧ ବିଧି ସମିଧେ ଯଜ୍ଞ ଆରମ୍ଭିଲେ । ୧୯ ।

---

୧୬ଶ ପଦ—ରାମଚନ୍ଦ୍ର ଆସିବାର ଶୁଣି ୧ ବାନପ୍ରସ୍ଥାଶ୍ରମୀମାନେ ବୃଦ୍ଧ (ବୃଦ୍ଧାଶ୍ରମୀମାନେ) ଭେଟିବାକୁ ମିଳିଲେ । ତହୁଁ ଉତ୍ତାରୁ ବ୍ରହ୍ମଚାରୀମାନେ ଓ ଦଣ୍ଡିମାନେ ଆସି ଆଶିଷ (ଆଶୀର୍ବାଦ) ଦେଲେ ।୧୬।

୧୭ଶ ପଦ—ତହୁଁ ଉତ୍ତାରୁ ବିଶ୍ୱାମିତ୍ର ବିବିଧ ଅଶନରେ (ଭୋଜନରେ) ତାହାଙ୍କର ମନକୁ ବୋଧ କରି ରାତ୍ରିରେ ଚନ୍ଦ୍ରକିରଣରେ ୧ଅଙ୍ଗଣ(ଚତ୍ୱର) ଉପରେ ବସିଲେ ।୧୭।

୧୮ଶ ପଦ—ରଘୁନନ୍ଦନ (ରାମ) ବୋଇଲେ ହେ ମୁନେ ! ରାକ୍ଷସଙ୍କ ହେତୁରୁ ତୁମ୍ଭେ ବିଗତଭୟ ହୋଇ ( ନିର୍ଭୟ ହୋଇ ) କ୍ରତୁ (ଯାଗ) ଆରମ୍ଭ କର ବିଳମ୍ବ ନ କର । ୧୮ ।

୧୯ଶ ପଦ—ରାମ ଏମନ୍ତ ବଚନ ପ୍ରକାଶ କରନ୍ତେ ତାହା ଶୁଣି ଋଷି (ବିଶ୍ୱାମିତ୍ର) ଆନନ୍ଦ ହେଲେ । ବିବିଧଦ୍ରବ୍ୟ ( ନାନାପ୍ରକାର ଯାଗୋପକରଣ ସାମଗ୍ରୀ) ଓ ସମିଧ (ହୋମ କାଷ୍ଠରେ) ଯାଗ ଆରମ୍ଭ କଲେ ୧୯।

---

୧—ବ୍ରହ୍ମଚାରୀ ଗୃହୀ ବାନପ୍ରସ୍ଥୋ ଭିକ୍ଷୁଶ୍ଚତୁଷ୍ଟୟ ଇତ୍ୟମରଃ ।
୧—ଅଙ୍ଗଣଂ ଚତ୍ୱରାଜିରେ ଇତ୍ୟମରଃ ।

କ୍ରୁଦ୍ଧାଧରପ୍ରିୟ୍ସ୍ୱାନାଦ ଶ୍ରବଣେ ଅସ୍ତ୍ରପେ ।
ବ୍ୟଗ୍ରବନ୍ତେ ପରବେଶ ହୋଇଲେ ସର୍ମପେ । ୨୦ ।
ଙ୍ଗ୍ୱାପୁଧ ଧର କ୍ରୋଧେ ପ୍ରଜ୍ୱଳିତମୂର୍ତ୍ତି ।
ଖଶ୍ୱକେରୁ ନ ମ ପୁନଃପୁନଃ ବୋଲୁଥନ୍ତି । ୨୧ ।
ବ୍ୟାଘ୍ରଗନ୍ଧ ଆଘ୍ରାଣେ ଗୋ ପରି ପଳାଇତ ।
ବୋଲ ବେନଅର୍ଥେ ରକ୍ଷ ରକ୍ଷ ରୁଷିବ୍ରାତ । ୨୨ ।
ବାଣ ଧନୁ ଦୃଢ଼େ ଧର ଶ୍ରୀରାମ ଲକ୍ଷ୍ମଣ ।
ଗାନ୍ତି ଅନ୍ତର୍ ବାହାର ଏ ରବ ଶ୍ରବଣ । ୨୩ ।

---

୨୦ଶ ପଦ—୧ବୃଦ୍ଧା (ବୃଦ) ତାହାଙ୍କୁ ଧଣ୍ଡୁଥନ୍ତି ଏମନ୍ତ ଯେ ଅଗ୍ନି ତାହାଙ୍କ ୨ପ୍ରିୟା (ସ୍ୱାହା) ନାଦକୁ ଶୁଣି ୩ ଅସୁରପ (ରାକ୍ଷସମାନେ) ବ୍ୟଗ୍ରବନ୍ତ ହୋଇ ଆସି ସଭାଗରେ ପ୍ରବେଶ ହେଲେ ।୨୦।

୨୧ଶ ପଦ—ସେ ରାକ୍ଷସେ ଖଡ୍ଗାୟୁଧ (ଖଡ୍ଗ)ଧରିଥିଲେ କ୍ରୋଧରେ ଅତି ପ୍ରଜ୍ୱଳିତ ହୋଇ ୧ଖଶ୍ୱକେରୁ ନ ମ (ମାର) ପୁନଃ ପୁନଃ ବୋଲୁ-ଥନ୍ତି ଅର୍ଥାତ୍ ମାର ମାର ବୋଲୁଥିନ୍ତି ।୨୧।

୨୨ଶ ପଦ—ଋଷିବ୍ରାତ (ମୁନିସମୂହ) ବ୍ୟାଘ୍ର ଗନ୍ଧ ଗ୍ରହଣରେ ଗୋରୁ ପରି ବେନ ଅର୍ଥରେ ରକ୍ଷ ରକ୍ଷ (ରାକ୍ଷସ ରାକ୍ଷସ) (ରକ୍ଷାକର ରକ୍ଷାକର) ଏମନ୍ତ ବୋଲି ପଳାୟିତ (ପଳାଇଲେ) । ୨୨ ।

୨୩ଶ ପଦ—ମୁନିଙ୍କର ଏମନ୍ତ ରବ ଶ୍ରବଣ କରି ରାମ ଲକ୍ଷ୍ମଣ ଦୁହେଁ ବାଣ ଧନୁ ଏ ଦୁହିଙ୍କ ଦୃଢ଼େ ଧରି ଗାନ୍ତି (ଲତା) ଅନ୍ତରୁ ବାହାର ହେଲେ ॥

---

୧—ଏକୋ ରୁଦ୍ରୋ ନ ଦ୍ୱିତୀୟୋଽସ୍ତି ତସ୍ମାଦ ବ୍ରହ୍ମୈବୈକଂ ନେତୁ ନାସ୍ତ୍ୟସ୍ତ କିଂଚିତ୍ ଇତି ବ୍ୟାସଃ ।

ତତ ବନ୍ଧୁତା କିଂଚାରାପି ସୂତ୍ରଲୁବ୍ଧେର୍ବିଶ୍ବସୃଷ୍ଟପଦଂ ଇତି ସତ୍ୱତ୍ତେ ।

୨—"ସାନ୍ତହୋତ ପ୍ରିୟ୍ସ୍ୱାନାଦ" ଏପରି କେହି କେହି ପଢ଼ନ୍ତି । ଏହାର ଅର୍ଥ "ଅଗ୍ନେସ୍ସ୍ୱାହା" ଏମନ୍ତ ନାଦକୁ ଶୁଣନ୍ତେ ।

୩ – ନନ୍ଦ୍ୟ ଦେହପ ଆସ୍ର ଇତ୍ୟମରଃ ।୧—ତନ୍ତୁଯର୍ବିଶ୍ୱକେରୁଃ ସାଦତ୍ୟମରଃ

ବୋଲି ଏକାନ୍ତ ସ୍ଥଳର ନାମ ପୁନଃପୁନଃ ।
ବାହିନୀ ଦୁହିଙ୍କି ଘେନି ତୃଣର ସମାନ । ୨୪ ।
ବାତ ସେ ମାରୁତ ଲକ୍ଷ ଯୋଜନେ ପକାଇ ।
ବହ୍ନିବନ୍ଧୁଅସ୍ତ୍ରେ ଦେଲେ ସୁବାହୁ ଜଳାଇ । ୨୫ ।
ବଳେକ୍ଷବଳେ ଲକ୍ଷ୍ମଣ ସମସ୍ତ ସୈନ୍ୟଙ୍କର ।
ବଂଶବ୍ରଜୁଁ ତାଙ୍କୁ ସେ କୁଠାରପାଣି ପରି । ୨୬ ।
ବହୁକାଳୁଁ ଅପୂଜା ପୃଥ୍ୱୀଦେବୀ ଥିଲେ ।
ବହି ରକ୍ତଶୋଣିତେ ଜବା ମନ୍ଦାରେ ପୂଜିଲେ । ୨୭ ।

---

୨୪ଶ ପଦ—ସେ ରାମ ଲକ୍ଷ୍ମଣ ଦୁହେଁ ଏକାନ୍ତସ୍ଥଳର ନାମ ( ବନ୍ଧ ) ତାକୁ ପୁନଃ ପୁନଃ ( ବନ୍ଧ ବନ୍ଧ ) ବୋଇଲେ । ଦୁଇ ୧ ବାହିନୀଙ୍କ (ମାରୀଚ ସୁବାହୁ ସେନାଙ୍କୁ ) ତୃଣ ସମାନ ଘେନିଲେ । ୨୪ ।

୨୫ଶ ପଦ—ବାତାସ୍ତ୍ରେ ( ପବନାସ୍ତ୍ରରେ ) ମାରୀଚ ଦୈତ୍ୟଙ୍କୁ ଲକ୍ଷ ଯୋଜନ ପର୍ଯ୍ୟନ୍ତ ଉଡ଼ାଇଦେଲେ । ବହ୍ନିବନ୍ଧୁ ଅସ୍ତ୍ରେ (ଅଗ୍ନି ଅସ୍ତ୍ରରେ ) ସୁବାହୁ ରାକ୍ଷସକୁ ଜାଳିଦେଲେ । ସେ ଜଳିଗଲା । ୨୫ ।

୨୬ଶ ପଦ—କୁଠାରପାଣି ( ପରଶୁପାଣି ) ପରି ଲକ୍ଷ୍ମଣ ସମସ୍ତ ସୈନ୍ୟଙ୍କୁ ବଂଶ ୧ବ୍ରଜୁଁ ( ସୁବାହୁ ମାରୀଚ ଦୁହିଙ୍କ ବଂଶ ଜାଣିକରୁ ) କରି ବଂଶ-ବୃକ୍ଷ ସବୁ ହେଲେ ଏମନ୍ତ ବିଶେଷରେ ଛେଦନ କଲେ । ଅଥବା ଲକ୍ଷ୍ମଣ ସବୁ ସୈନ୍ୟଙ୍କୁ ୨ବଂଶ ବ୍ରଜରୁ ( ବାଉଁଶ ବଣ ସବୁକୁ ) ୩କୁଠାରପାଣି ( କାଠୁରିଆ ) ପରି ବିଚ୍ଛେଦନ କଲେ । ୨୬ ।

୨୭ଶ ପଦ—ପୃଥ୍ୱୀଦେବୀ ବହୁକାଳରୁ ଅପୂଜା ଥିଲେ ସେ ପୃଥ୍ୱୀକି ରାକ୍ଷସଙ୍କ ଶୋଣିତରେ ( ରକ୍ତରେ ) ରଙ୍ଗ କରି ବହିଲେ "ଜବା କୁସୁମ ଜାତି" ମନ୍ଦାର ପୁଷ୍ପେ ପୂଜା କଲେ କି ? । ୨୭ ।

---

୧—ଧ୍ୱଜିନୀ ବାହିନୀ ସେନା ଇତ୍ୟମରଃ ।
୧—ଲୁବଃ ସମ୍ବୃଦ୍ଧିବାଚି ପ୍ରାପ୍ତଚେଷ୍ଟାଗମନନ୍ଧ୍ୱ ଇତି ମେଦିନୀ ।
୨—ମନ୍ଦାରକପିନ୍ଧି ରାସ୍ତରେ ସ୍ପର୍ଶାସ୍ଥମେଦୂରେ ଇତି ।
୩—ବସ୍ତୁତଃ କୁଠାରପାଣିରିତି ଶବ୍ଦକଳ୍ପେ ।

ବାଷ୍ପ କ୍ଷପା ଖଆଇଲ ନେତ୍ରୁଁ ଚନ୍ଦ୍ରାନୁକୂଳେ ।
ବୃଷ୍ଟି ହେଲା ଆଜି ମୋ ପୁତ୍ରଙ୍କ ଅନୁକୂଳେ । ୨୮ ।
ବସାଇଲେ ଅଧଃସ୍ୱର୍ଗେ ହଠରେ ତ୍ରିଶଙ୍କୁ ।
ବାହୁଡ଼ି ସେ ଆରମ୍ଭିଲେ ଯଜ୍ଞକୁ ନିଃଶଙ୍କୁ ।୨୯ ।
ବାସବାଦି ଦେବେ ହବି ଭୁଞ୍ଜି ତୋଷ ହେଲେ ।
ବାହୁଡ଼ୁଁ ପୁରକୁ ରାମଭଦ୍ର ପଚାରିଲେ । ୩୦ ।
ବିପୁଳ କାମ୍ୟକବନେ ଅରେ ଭ୍ରମି ଯିବା ।
ବୋଲି ବାହାରିଲେ ମୁନି ଘେନି ବେନି ଯୁବା । ୩୧ ।

---

୨୮ଶ ପଦ ୧କ୍ଷପା (ରାକ୍ଷସ ମାତା) ଚନ୍ଦ୍ରରେ ଆକୃଷ୍ଟ ହୋଇ ନେତ୍ରରୁ ବାଷ୍ପ (ଲୋତକ) ଖସାଇଲା (ବୃଷ୍ଟି ଦେଲା) ଆଜଠାରୁ ମୋ ପୁତ୍ରଙ୍କ ଅନୁକୂଳରେ ୨ ବୃଷ୍ଟି ହେଲା । ଏଣୁ ଅଶୁଭ ଦୂର ହେଲା । ୨୮ ।

୨୯ଶ ପଦ—ହଠରେ (କୌତୁକରେ) ଅଧଃସ୍ୱର୍ଗରେ ତ୍ରିଶଙ୍କୁ ରାଜାଙ୍କୁ ବସାଇଲେ ଯେ ସେ (ବିଶ୍ୱାମିତ୍ର) ନିଃଶଙ୍କ (ନିର୍ଭୟରୂ) ବାହୁଡ଼ି (ପୁଣି) ଯଜ୍ଞକୁ ଆରମ୍ଭିଲେ । +୨୯ ।

୩୦ଶ ପଦ - ବିଶ୍ୱାମିତ୍ର ଯାଗ କରିବାରୁ ବାସବାଦି ଦେବେ (ଇନ୍ଦ୍ରାଦି ଦେବତାମାନେ) ହବିର୍ଭାଗ ଭୁଞ୍ଜି ତୋଷ ହେଲେ । ଏଣେ ଯାଗ ସମାପ୍ତି ସୂଚିତ ହେଲା । ତହିଁ ପରୁ ରାମଭଦ୍ର ବିଶ୍ୱାମିତ୍ରଙ୍କୁ ପଚାରିଲେ ଆମ୍ଭେ ପୁରକୁ (ଅଯୋଧ୍ୟାକୁ) ବାହୁଡ଼ୁ ଆପଣ ଅନୁଜ୍ଞା ଦେଉନ୍ତୁ ଏମନ୍ତ କହିଲେ । ୩୦ ।

୩୧ଶ ପଦ— ଏହା ଶୁଣି ମୁନି (ବିଶ୍ୱାମିତ୍ର) ବିପୁଳ (ବଡ଼) କାମ୍ୟକ ବନ (ନାମକ) ବନରେ ଅରେ ଭ୍ରମି (ବୁଲି) ଯିବା ଏମନ୍ତ ବୋଲି ବେନି ଯୁବା (ରାମ ଲକ୍ଷ୍ମଣଙ୍କୁ) ସଙ୍ଗେ ଘେନି ବାହାରିଲେ । ୩୧ ।

---

୧—ନୈଋତସ୍ତୁ କ୍ଷପାସୁତଃ । କ୍ରବ୍ୟାଦଃ ପଳାଶୀ ଚ ଇତି ନିଶାଚରଶେଷଃ ।
୨—ବୃଷ୍ଟିର୍ଭୂକମ୍ପାକରଃ କେତଦକ୍ଷୁନ୍ତ ସୂର୍ଯ୍ୟସ୍ୟ ଭଦ୍ର ନ୍ୟୋୟାଢ଼ଃଶମ୍ଭେ ।
+ ଏ ବିଶେଷଣ ଦ୍ୱାରା ବିଶେଷ୍ୟ ବିଶ୍ୱାମିତ୍ର ଆସିଲେ ଏଣୁ କବି ଅର୍ଥ ଗୁଣରେ ସୂଧର୍ମିତା ପୁଣ ରଖିଲ,—ଯଦୁକ୍ତଂ ଅଳଂକାରେ,—ଭାବକତ୍ୱଂ ସୂକ୍ଷ୍ମଦତ୍ତ୍ୱଂ ପର୍ଯ୍ୟାୟୋକ୍ତିଃ ସୂଧର୍ମିତା ।

ବାଟେ ସେ ବନରେ ପଡ଼ିଥିଲା ଋଷ୍ୟଶିଳା ।
ବଳେଣ ଉଁ ରାମଚରଣ ଲାଗି ସେ ଅବଳା । ୩୨ ।
ବିସ୍ମୟ ହୋଇ ଅନାଇଁ ଯାବ, ଋଘୂପତି !
ବନୀତାର ବନତାର ପକ୍ଷ ଏକାକୃତି । ୩୩ ।
ବନପ୍ରିୟ ତୋଷଦାମା ରମଣୀ ଏ ଲୋକେ ।
ବନପ୍ରିୟ ତୋଷଦାମା ରମଣୀ ଏ ଲୋକେ । ୩୪ ।
ବିରାଜ ବଟ-କନକ-କଦମ୍ବ ରୁଚିରେ ।
ବି-ରାଜ ବଟ କନକ କଦମ୍ବ ରୁଚିରେ । ୩୫ ।

୩୨ଶ ପଦ — ସେ କାମ୍ୟକବନର ବାଟେ ଋଷ୍ୟ ଶିଳା ପଡ଼ିଥିଲା, ତହିଁରେ ବଳେଣ ଉଁ (ବଳ୍ପୂର୍ବକ ଭରୁଁ) ରାମଙ୍କ ଚରଣ ଲାଗି ସେ (ଶିଳା) ଅବଳା ହେଲା ୩୨

୩୩ଶ ପଦ — ରଘୁପତି (ରାମ) ବିସ୍ମୟ (ଆଶ୍ଚର୍ଯ୍ୟ) ହୋଇ ଅନାଇ ଯିବାରୁ ବନୀ (କାମ୍ୟକବନ) ତାହାର ତାର (ଦୀପ୍ତି) ଆଉ ଏ ବନିତାର (ବାମାର) ପକ୍ଷ (କ୍ୟୁଥ) ଏ ଦୁହେଁ ଏକାକୃତି (ଏକାକାର) ହୋଇ-ଅଛନ୍ତି । ୩୩ ।

୩୪ଶ ପଦ — ଏ (ବନୀ) ୧ ବନପ୍ରିୟ (କୋକିଳଙ୍କର) ତୋଷ-ଦାମା ଅଟେ, ଲୋକରେ (ଭୁବନରେ) ୨ ରମଣୀ (ମନୋରମା) ଅଟଇ । ଏ (ବନିତା) ମଧ୍ୟ ବନପ୍ରିୟା (ମୁନିଙ୍କର) ତୋଷଦାମା ଅଟଇ । ୩ ଲୋକେ (ଜନ ମଧ୍ୟରେ) ରମଣୀୟା (କମନୀୟା) ଅଟଇ । ୩୪ ।

୩୫ଶ ପଦ — "ଏ ବନୀ" ବି ରାଜ (ପକ୍ଷି ସମୂହ) ଅଛନ୍ତି ଯହିଁରେ ଏରୂପ ବଟ (ବଟବୃକ୍ଷ) ୧ କନକ (କିଂଶୁକ ବୃକ୍ଷ) କଦମ୍ବ (ନୀପବୃକ୍ଷ) ଏମାନଙ୍କ ୨ ରୁଚିରେ (ସୁନ୍ଦରରେ) ସୁନ୍ଦର ଅଟଇ । ତଦ୍ରୂପ ଏ ବନିତା

୧—ବନପ୍ରିୟଃ ପରଭୃତଃ କୋକିଳ ଇତ୍ୟମରଃ ।
୨—ରମଣୀ ଶବ୍ଦ ରମଣୀୟ ଅର୍ଥ ହୁଅଇ ଯଥା —
ସ୍ଥାନ ବନେଷ୍ଟାର୍ପଣକୋ ରମଣୀ ସାଧାରଣୀ ବାଣୀ । ଇତି ।
୩—ଲୋକସ୍ତୁ ଭୁବନେ ଜନେ ।
୧—କନକଂ ହେମ୍ନି ପୁଂସି ସ୍ୟାତ କିଂଶୁକେ ନାଗକେଶରେ । ଇତି ମେଦନୀ ।
୨—ସୁନ୍ଦରଂ ରୁଚିରଂ ଚାରୁ ଇତ୍ୟମରଃ ।

ବାସରେ ଅଚ୍ଛନ୍ନ ଶୋଭା ଭୁଙ୍ଗ ପୟୋଧରେ ।
ବାସରେ ଆଚ୍ଛନ୍ନ ଶୋଭା ଭୁଙ୍ଗ ପୟୋଧରେ । ୩୬ ।
ବେଣୀ କେଶରେ ରଞ୍ଜନ ସିନ୍ଦୂର ଚିତାରେ ।
ବେଣୀ କେଶରେ ରଞ୍ଜନ ସିନ୍ଦୂର ଚିତାରେ । ୩୭ ।

---

• ବର (ଶ୍ରେଷ୍ଠ) କନକକଦମ୍ବ, (ସୁବର୍ଣ୍ଣସମୂହ-ଶୁଦ୍ଧ ଜାମ୍ବୁନଦ) ପରି ଯେ ୩ ରୁଚି (ଦୀପ୍ତି) ତହିଁରେ ବିରାଜି ଅଛଇ ।୩୫।

୩୬ଶ ପଦ—"ଏ ବନ୍ଦୀ" "ଅଳଙ୍କାର ବର୍ଣ୍ଣନ୍ତି" ୧ଭୁଙ୍ଗ (ପୁନ୍ନାଗ ବୃକ୍ଷ) ୨ପୟୋଧର (ନାରିକେଳ ବୃକ୍ଷ) ଏମାନଙ୍କ ଦ୍ୱାରା ବାସରେ (ବାସ-ଘରେ) ଅଚ୍ଛନ୍ନ ହୋଇଅଛି ଶୋଭା (ଦ୍ୟୁତି) ଯାହାର । ଅଥବା ୩ ବାସ (ସୌରଭ) ତହିଁରେ ଅଚ୍ଛନ୍ନ ଅଟନ୍ତି ଏମନ୍ତ ଭୁଙ୍ଗ (ପୁନ୍ନାଗ) ପୟୋଧର (ନାରିକେଳ) ଏମାନଙ୍କ ଦ୍ୱାରା ଶୋଭା ପାଉଅଛି । ତତ୍ପରେ ଏ ବନିତା ବାସରେ (ବସନରେ) ଆଚ୍ଛନ୍ନ (ଆବୃତ) ଭୁଙ୍ଗ (ଉନ୍ନତ) ପୟୋଧର (ସ୍ତନଦ୍ୱୟ) ଦ୍ୱାରା ଶୋଭା ପାଉଅଛି ।୩୬।

୩୭ଶ ପଦ—"ଏ ବନ୍ଦୀ" ୧ବେଣୀ । (ଦେବତାଡ଼ ବୃକ୍ଷ) କେଶର (ନାଗକେଶର) ୨ସିନ୍ଦୂର (ତନ୍ନାମକ ତରୁ ବିଶେଷ) ୩ରଞ୍ଜନ (ରକ୍ତ-ଚନ୍ଦନ ଗଛ) ଏମାନଙ୍କ ଦ୍ୱାରା ୪ଚିତା (ଆଚ୍ଛନ୍ନା) ହେବାରୁ ଶୋଭା ପାଉ-ଅଛି । ତତ୍ପରେ ଏ ବନିତା କେଶ (ବାଳ) ତଦ୍ଦ୍ୱାରା କୃତ ବେଣୀ, ସିନ୍ଦୂର ଚିତ (ସିନ୍ଦୂର ତିଳକ) ଏ ଦୁଇରେ ରଞ୍ଜନ (ଅନୁରାଗ) ଜାତ କରୁଅଛି ୩୭

---

୩—ରୁଚିଃ ସ୍ତ୍ରୀ ଦୀପ୍ତୌ ଶୋଭାୟାମଭିଷ୍ୱଙ୍ଗାଭିଲାଷୟୋ ଇତି ମେଦିନୀ ।
୨—ପୁନ୍ନାଗେ ପୁରୁଷସ୍ତୁଙ୍ଗ ଇତ୍ୟମରଃ ।
୨—ପୟୋଧରଃ କୋଷକାରେ ନାରିକେଳେ ସ୍ତନେଽମ୍ବୁଦେ ଚ । ଇତି ମେଦିନୀ ।
୩ ବାସୋ ଗୃହେ ସୌରଭେ ଚ ବାସୋ ବସ୍ତ୍ରେ ନପୁଂସକମିତି ଶବ୍ଦମାଳା ।
୧—ବେଣୀ ଖରଖଗ୍ଗ ଦେବତାଡ଼ୋ ଜୀମୂତ ଇତ୍ୟପି । ଇତ୍ୟମରଃ ।
୨—ସିନ୍ଦୂର ସ୍ତରୁ ଭେଦେ ସ୍ୟାତ୍ ସିନ୍ଦୂରଂ ରକ୍ତଚୂର୍ଣ୍ଣକେ ଇତି ମେଦିନୀ ।
୩—ରଞ୍ଜନଂ ରକ୍ତଚନ୍ଦନଂ ।
୪—ଚିତାଚ୍ଛନେ ଚ ଲିଙ୍ଗକାସ୍ୟାଂ ଚିତାସଂହତି ଚିତ୍ୟୟୋଃ ଇତି ବିଶ୍ୱଃ ।

ବଳା, ମଲ୍ଲିକଢ଼ି, ଫୁଲ ମଣ୍ଡନ ଅତୁଳ ।
ବଳା, ମଲ୍ଲିକଢ଼ି, ଫୁଲ ମଣ୍ଡନ ଅତୁଳ । ୩୮ ।
ବଲେକ ବଲେକେଁ ପୂଜ୍ୟା କଲେ ଦାଶରଥି ।
ବରାଙ୍ଗନା ହେଲ ଶିଳା କି ବିଷୟ ଏଥି ? । ୩୯ ।
ବଶି ମିତ୍ର ବୋଲେ ଆହେ ମିତ୍ରବଂଶି ଶୁଣ ।
ବିଧାତା ଭଗ୍ନେ ଉର୍ବଶୀ ସୁନ୍ଦରିମା ଠାଣ । ୪୦ ।
ବିଧାନ ସର୍ବଲାବଣ୍ୟ ଧାମା କରି କରୁଁ ।
ବୃନ୍ଦାର ଘନୁ ମାଗିଲେ ଦେଖି ଏହା ଗୁରୁ । ୪୧ ।

---

୩୮ଶ ପଦ—"ଏ ବନ୍ଧୀ" ୧ ବଳା (ବାଡ଼ୁ ଅଁଳା ଗଛ) ମଲ୍ଲୀ (ମଲ୍ଲିକା ଲତା) ୦ଏମାନଙ୍କ କଢ଼ି ଫୁଲ (ପୁଷ୍ପ) ମଣ୍ଡନରେ ଅତୁଳ (ତୁଲ୍ୟ) ନାହିଁ । ତଦ୍ରୂପ ଏ ବନିତା ବଳା (ପାଦାଳଂକାର) ମଲ୍ଲିକଢ଼ି (ଅଳଙ୍କାର ବିଶେଷ) ୨ ଫୁଲ (କର୍ଣ୍ଣାଳଙ୍କାର) ଅତୁଳ (କଟକ—ଅଳଙ୍କାର ବିଶେଷ) ଏମାନଙ୍କ ଦ୍ୱାରା ମଣ୍ଡନ (ଭୂଷଣ) ହୋଇଅଛୁ ୦ । ୩୮ ।

୩୯ଶ ପଦ—ସେ ବନିତାଙ୍କୁ ଦାଶରଥି (ରାମ) ୧ ବିଲେକ ବିଲେକ (ବୃକ୍ଷ ବୃକ୍ଷ) ପୂଜ୍ୟାକଲେ (ପଚାରିଲେ) ଶିଳା (ପଷାଣ) ବରାଙ୍ଗନା (ଉତ୍ତମ ସ୍ତ୍ରୀ) ହେଲ ଏଥିରେ କି ବିଷୟ ଅଛୁ ?

୪୦, ୪୧ଶ ପଦ—ବିଶ୍ୱାମିତ୍ର ବୋଇଲେ ମିତ୍ରବଂଶି (ଆହେ ସୂର୍ଯ୍ୟବଂଶି) ଶୁଣ । ବିଧାତା ଉର୍ବଶୀ (ସ୍ୱର୍ଗ ଅପ୍ସରା) ତାହାର ସୁନ୍ଦରିମା ଠାଣ (ସୌନ୍ଦର୍ଯ୍ୟ-ଗର୍ବ) ଭଗ୍ନ ନିମିତ୍ତ ସର୍ବଲାବଣ୍ୟ ଧାମା (ସକଳ ଲାବଣ୍ୟ ବିଧାମା) କରି ବିଧାନ କରୁଁ ତାହାର ଗୁରୁ (ମଦନ ରମ) ଦେଖି ବୃନ୍ଦାର (ଇନ୍ଦ୍ର) ଘନୁ (ସ୍ତ୍ରୀଯୀ) ଏ ଭୂଦେହ ମାଗିଲେ । ୪୦, ୪୧ ।

---

୧—ବଳା ବଟ୍ୟଳାଜୋ ଘୋଣ୍ଟା ଇତ୍ୟମରଃ ।
୨—ଫୁଲ୍ଲଂ ପୁଷ୍ପ ବିକଶିତେ ଇତି ।
୦—ସ୍ୱଭଙ୍ଗ ଶେଷ ହେଲ ।
୧—ଷାପ୍‌ସାର୍ଥେ ଦ୍ୱିରୁକ୍ତିଃ ।

ବୁଲି ଧରଣୀ ଯେ ଆଗେ ଆସିବ ଚପଳେ ।
ବାମଲୋଚନା ତାହାକୁ ପ୍ରାପତ ବୋଇଲେ । ୪୨ ।
ବଚସ୍ଫୁରୁଁ ଭ୍ରମିଗଲେ ଦୁଇ କ୍ରଦବୋତ୍ତମ ।
ବ୍ୟଜନ ଗ୍ଳନ କରୁଥିଲେ ଗଉତମ । ୪୩ ।
ବୋଇଲେ ତୁମ୍ଭେ ନ ଗଲ କପାଁ ଏ ନମିତ୍ତେ ।
ବ୍ରହ୍ମ ପ୍ରଦକ୍ଷିଣ କରି ସେ କର ଯୋଡନ୍ତେ । ୪୪ ।
ବନ୍ଦ କରୁଛନ୍ତି ତାଙ୍କୁ ହୋଇ ପୁରୋହିତ ।
ବଡ଼ ଅଭିମାନ ପାଇ ରବି ପୁରୁହୂତ । ୪୫ ।

---

୪୨ଶ ପଦ -ତାହା ଶୁଣି ବ୍ରହ୍ମା ବୋଇଲେ ଯେ ଧରଣୀକି ଚପଳେ (ଶୀଘ୍ର) ଆଗେ ବୁଲି ଆସିବ ତାହାକୁ ଏ ବାମଲୋଚନା ପ୍ରାପ୍ତ ହେବ (ମିଳିବ) । ୪୨ ।

୪୩ଶ ପଦ—ବ୍ରହ୍ମାଙ୍କ ମୁଖରୁ ଏମନ୍ତ ବଚ (ବଚନ) ସ୍ଫୁରୁଁ (ସ୍ଫୁରନ୍ତେ) ଦୁଇ ଦେବୋତ୍ତମ (ଇନ୍ଦ୍ର ସୂର୍ଯ୍ୟ) ଧରଣୀ ବୁଲିବାକୁ ଗଲେ, ଗୌତମ (ଋଷି) ୧ ବ୍ୟଜନ (ତାଳବୃନ୍ତ) ଗ୍ଳନ କରୁଥିଲେ (ପଖା ପକାଉଥିଲେ ) । ୪୩ ।

୪୪ଶ ପଦ— ବ୍ରହ୍ମା ତାଙ୍କୁ ଚାହିଁ ବୋଇଲେ ଏ ନମିତ୍ତେ ( ଏ କନ୍ୟା ପାଇଁ) ତୁମ୍ଭେ କପାଁ ନ ଗଲ । ଏହା ଶୁଣି ଗୌତମ ବ୍ରହ୍ମପ୍ରଦକ୍ଷିଣ କରି (ବ୍ରହ୍ମାଙ୍କ ଚତୁପାଖ ବୁଲିଆସି) କର ଯୋଡନ୍ତେ (ଯୋଡ଼ହସ୍ତ ହୋଇ ରହନ୍ତେ) । ଏହଦ୍ୱାରା ବ୍ରହ୍ମଗର୍ଭସ୍ଥ ଭୂମଣ୍ଡଳ ପର୍ଯ୍ୟଟନର ସୂଚିତ ହେଲା ।୪୪।

୪୫ଶ ପଦ ବ୍ରହ୍ମା ଆପେ ପୁରୋହିତ ହୋଇ ତାଙ୍କୁ (ଗୌତମ ଅହଲ୍ୟାକୁ) ବନ୍ଦ କରୁଅଛନ୍ତି ଏ ସମୟରେ ପୃଥ୍ୱୀ ପର୍ଯ୍ୟଟନ କରି ରବି (ସୂର୍ଯ୍ୟ) ପୁରୁହୂତ (ଇନ୍ଦ୍ର) ଆଇଲେ ତାହା ଦେଖି ବଡ଼ ଅଭିମାନ (ଅପମାନ) ପାଇ ବାହୁଡ଼ି ଗଲେ । ୪୫ ।

---

୧— ବ୍ୟଜନଂ ତାଳବୃନ୍ତକ ମିତ୍ୟମରଃ ।

ବ୍ରାହ୍ମଣଜାୟା ହେବାରୁ ତପନ ନିବର୍ତ୍ତି ।
ବିରହୀ ସେହୁ ବିଷୟେ ମହେନ୍ଦ୍ର ପ୍ରବର୍ତ୍ତି । ୪୬ ।
ବଶୀକରଣ ମନ୍ତ୍ରକୁ ସେବନୁ ଜପିଲେ ।
ବାଞ୍ଛାବଟ ତଳେ ରମା ସଙ୍ଗ ମନାସିଲେ । ୪୭ ।
ବସନ୍ତ, କୋକିଳ, ଅନଙ୍ଗକୁ ଉଚ୍ଚାଟନେ ।
ବରଗିଲେ ଅତିଯତ୍ନ କରି ଏହି ବନେ । ୪୮ ।
ବାଡବେୟଠାରୁ ପାଲଟାଇ ମନୋହର ।
ବକ୍ରବିକାରକୁ ମାର କରିଣ ଅନ୍ତର । ୪୯ ।
ବନନ୍ତି ଏକାନ୍ତେ ଦେଖି ଯେତେଭାବେ ହେଲେ ।
ବିସମ୍ମତ ସମ୍ମତେ କିଛି ନ ଜାଣିଲେ । ୫୦ ।

---

୪୬ଶ ପଦ—ତପନ (ସୂର୍ଯ୍ୟ) ବ୍ରାହ୍ମଣଜାୟା (ବାରୁଣୀ) ହେବାରୁ ନିବର୍ତ୍ତିଲେ ମହେନ୍ଦ୍ର (ଇନ୍ଦ୍ର) ସେ (ଅହଲ୍ୟାଙ୍କ) ବିଷୟେ ବିରହୀହୋଇ ପ୍ରବର୍ତ୍ତିଲେ । ୪୬ ।

୪୭ଶ ପଦ—ସେବନୁ (ଅହଲ୍ୟା ବିଶ୍ରବନଠାରୁ) ବଶୀକରଣ ମନ୍ତ୍ର ଜପିଲେ ପୁଣି ବାଞ୍ଛାକଳ୍ପତଳରେ ରମା (ଅହଲ୍ୟା) ସଙ୍ଗ ମନାସିଲେ । ୪୭ ।

୪୮ଶ ପଦ—ଅହଲ୍ୟା ଉଚ୍ଚାଟନବିଷୟରେ ବସନ୍ତ (ଋତୁ) କୋକିଳ ଅନଙ୍ଗ (କନ୍ଦର୍ପ) ଏମାନଙ୍କୁ ଅତି ଯତ୍ନକରି ଏହି (କାମ୍ୟକ) ବନକୁ ବର-ଗିଲେ (ପେଷିଲେ) । ୪୮ ।

୪୯ଶ ପଦ—ବାଡବେୟ (ଅଶ୍ୱିନୀକୁମାର) ମାନଙ୍କଠାରୁ ୧ ମନୋହର (ସୁନ୍ଦରରୂପକୁ) ପାଲଟାଇଲେ (ଧାରଣ କଲେ) ବକ୍ରବିକାର (ମୁଖ-ବିକୃତ) ଅନ୍ତର (ଦୂର) କଲେ ।୦।୪୯

୫୦ଶ ପଦ ଇନ୍ଦ୍ର ଯେତେ ଭାବରେ ବନେ ଅହଲ୍ୟାଙ୍କୁ ଏକାନ୍ତେ ବନନ୍ତି ହେଲେ (ନମସ୍କାର କଲେ) ତାହାଙ୍କର ବିସମ୍ମତ (ଅସମ୍ମତ) ସମ୍ମତ (ଅଙ୍ଗୀକାର) ଏ ଦୁଇ କଥାରୁ କିଛି (କଥାଏ) ନ ଜାଣିଲେ । ୫୦ ।

---

୧—କନ୍ୟା ବରୟତେ ରୂପଂ ଇତ୍ୟନୀ ସ୍ମୃତ ।
୦—ସେ ଅଶ୍ୱବଦନା ଏହି ନ୍ୟାୟରୁ । ତେଣୁ ମୁଖଶୋଭା ଗ୍ରହଣ କରିନଥିଲେ ।

ବରବେଶ ବନ୍ଧୁ ରସେ ମାନସ ଉଲ୍ଲାସୁଁ ।
ବୃଷଦଂଶ ରୂପେ ପଳାୟିତ ଋଷି ଆସୁଁ । ୫୧ ।
ବଳପର ବନସ୍ଥୀ ଗୌତମ୍ଙ୍କ ପଶୁରନ୍ତେ ।
ବିଗ୍ରହେ ସହସ୍ରଭଗ ବହ ଲିଙ୍ଗ ହତେ । ୫୨ ।
ବେଳ ଉପାଶହେମାଙ୍ଗୀ ପାଷାଣ ବପୁକ ।
ବର୍ଷ୍ମମୃଦ୍ଧର-ଧର ଗିରେ ବାସ କଲେ ଯାଇଁ । ୫୩ ।
ବାଜି ତବ ପଦ-ଗଣ୍ଡି ଲଭିଲା ସୁଗତି ।
ବନ୍ଦିଲା ଶ୍ରୀରାମେ ଶୁଣି ସେ ମୁନି ଭାରତୀ । ୫୪ ।

---

୫୧ଶ ପଦ—ବର (ଗୌତମଙ୍କ) ବେଶଧର ବେଶ ବନ୍ଧୁ ଦେବ (ଶୃଙ୍ଗାର ରସ) ଛନ୍ଦରେ ଅହଲ୍ୟାଙ୍କ ମାନସକୁ ଉଲ୍ଲାସ କରନ୍ତେ ସେହି ସମୟରେ ଋଷି (ଗୌତମ) ତପସ୍ୟାରୁ ଆସନ୍ତେ ତାଙ୍କୁ ଦେଖି ଇନ୍ଦ୍ର ୧ବୃଷଦଂଶ (ମାର୍ଜାର) ରୂପ ଧରି ପଳାୟିତ (ପଳାଇଲେ) । ୫୧ ।

୫୨ଶ ପଦ—ଗୌତମ ଧ୍ୟାନ ବଳରେ ଜାଣି ବଳପର (ଇନ୍ଦ୍ରଙ୍କୁ) ପଶୁରନ୍ତେ ସେ ନତମସ୍ତୀ ହେଲେ (ପ୍ରଣାମ କଲେ) । ତା ଦେଖି କ୍ରୋଧରେ ମୁନି ଶାପ ଦେଲେ "ତୋହର ଲିଙ୍ଗଶ୍ଚ୍ୟୁତ ହେଉ" ବିଗ୍ରହେ (ଦେହରେ) ସହସ୍ରେ ୧ଭଗ (ଯୋନି) ହେଉ । ୫୨ ।

୫୩ଶ ପଦ—ଏମନ୍ତ ଇନ୍ଦ୍ରଙ୍କୁ ବୋଲି ଉପାଶ ହେମାଙ୍ଗୀ (ଅହଲ୍ୟାଙ୍କୁ) ପାଷାଣ ବପୁକ ୧ ବର୍ଷ୍ମମୃଦ୍ଧରଗିରେ (ହିମାଳୟ ନିକଟରେ) ଯାଇଁ ବାସ କଲେ (ରହିଲେ) । ୫୩ ।

୫୪ଶ ପଦ—ଏ ସୁଗତି (ସୁନ୍ଦରମନା ଅହଲ୍ୟା) ତବ ପଦ (ପାଦ) ବାଜିବାରୁ ଗଣ୍ଡି (ମୁକ୍ତିକ) ଲଭିଲା । ଏମନ୍ତେ ମୁନି ଭାରତୀ (ବିଶ୍ୱାମିତ୍ର କଥା) ଶୁଣି ସେ (ଅହଲ୍ୟା) ଶ୍ରୀରାମଙ୍କୁ ବନ୍ଦାଇଲେ । ଜାଣିଲେ ଏ ସାକ୍ଷାତରେ ବିଷ୍ଣୁ । ୫୪ ।

---

୧—ଓତୁ ବିଡ଼ାଳେ ମାର୍ଜାରେ ବୃଷଦଂଶକ ଆଖୁଭୁକ୍ ଇତ୍ୟମରଃ ।
୧—ଭଗଂ ଶ୍ରୀ ଯୋନି ବୀର୍ଯ୍ୟେଚ୍ଛା ଜ୍ଞାନବୈରାଗ୍ୟକୀର୍ତ୍ତିଷୁ ଇତି ମେଦିନୀ ।
୧—ହିମାଳୟୋ ନାମ ନଗାଧିରାଜଃ ଇତି କୁମାରସମ୍ଭବେ ।

ବଢ଼ନ୍ତ ପଥରେ ହୋଇ ଉଦ୍ଧତସନେହୀ ।
ବିଶ୍ୱାମିତ୍ର ପୁଣି ହସହସ ହୋଇ କହି । ୫୫ ।
ବିଶ୍ୱମୋହିନୀ କନ୍ୟା ଏ ଦେଖିଲ ଯେତେକ ରମ୍ୟ ।
ବିଦେହ ଦେଶେ ଧରାରୁ ସୁନ୍ଦରୀଏ ଜନ୍ମ । ୫୬ ।
ବଜ୍ର ବନ୍ଧି ଥିଲ ଶିଳା ଏହାକୁ କରାଇ ।
ବିତର୍କି ଏ ସୀତାର ଚରଣଘଷା ଏହି । ୫୭ ।
ବର ସମେ ସୁସମେ ଜଗତେ ନାହିଁ ଯେଣୁ ।
ବ୍ୟୋମକେଶ ଧନୁଭଗ୍ନ ସ୍ୱୟମ୍ବର ତେଣୁ ।୫୮।

---

୫୫ଶ ପଦ—ସେ ଅହଲ୍ୟା ଗୌତମଙ୍କ ପାଶକୁ ଯିବାରେ ଉଦ୍ଧତ-ସ୍ନେହ ହୋଇ ପଡ଼ିବାରୁ ବଢ଼ନ୍ତ (ସ୍ତୁତ୍ୟ ହେଲେ) ଅର୍ଥାତ ସ୍ନେହପାତ୍ରୀ ହେଲେ । ପୁଣି ବିଶ୍ୱାମିତ୍ର ରାମଙ୍କୁ ହସ ହସ ହୋଇ କହିଲେ । ୫୫ ।

୫୬ଶ ପଦ—ବିଶ୍ୱବିମୋହିନୀ (ଜଗନ୍ମୋହିନୀ) ଏ ୧ କନ୍ୟାଙ୍କୁ ଯେତେକ ରମ୍ୟ (ସୁନ୍ଦର) ଦେଖିଲ ବିଦେହଦେଶ (ମିଥିଳାରେ) ଧରାରୁ (ପୃଥ୍ୱୀରୁ) ସୁନ୍ଦରୀଏ (ଏକ ସୁନ୍ଦରୀ) ଜନ୍ମ ହୋଇଅଛନ୍ତି ୫୬ ।

୫୭ଶ ପଦ—ବଜ୍ର (ବିଧାତା) ବନ୍ଧି (ବିଶେଷରେ ଜାଣିମାର ଅଛନ୍ତି) "ଯେ ହେତୁ" ଏହାକୁ (ଅହଲ୍ୟାକୁ) ଯାହା ଶିଳା କରାଇଥିଲ ଏଣୁ ବିଜ୍ଞ ବେଇଲ ବିତର୍କି (ଏମନ୍ତ ତର୍କୁଥାଇ) ସେ ଯେଉଁ ସୀତା ତାହାର ଚରଣଘଷା ପଥର ଏ । ୫୭ ।

୫୮ଶ ପଦ—ବ୍ରହ୍ମାଣ୍ଡରେ ଯେଣୁ ତାହାର ୧ ସୁସମେ ସମେ (ଶୋଭା-ସମାନରେ) ବର ନାହିଁ ଏଣୁ ବ୍ୟୋମକେଶ (ମହାଦେବ) ତାହାଙ୍କର ଧନୁ ସ୍ୱୟମ୍ବର କଲେ । ଯେ ଏ ଧନୁକୁ ଭାଙ୍ଗିବ ଏ କନ୍ୟାକୁ ବର୍ତ୍ତି ହେବ ଏମନ୍ତ ପଣ । ୫୮ ।

---

୧—କନ୍ୟା କୁମାରିକା ନାର୍ଯ୍ୟୌଷଧ ବିଶଃ ।
୧— ସୁଷମଂ ସାଧୁ ଶୋଭନଂ ଉତ୍ୟମରଃ ।

ଗାଢ଼ଧୂ ପ୍ରକାଶ ତବ ହେଲ୍ଲ ଅତିଶୟେ ।
ବଲ୍ଲଭ ହୁଅ ତା ଯାଗ ରକ୍ଷା ଫଳୋଦୟେ । ୫୯ ।
କଦ୍ରକରବଂଶୀ ବୋଲେ ଅଛୁ ପରିମୀଣ ।
ବ୍ରହ୍ମାଣ୍ଡ ସାର-ସୁନ୍ଦରୀ ରମ୍ଭା ଅପସରୀ । ୬୦ ।
ଦ୍ୟୁତି ଜ୍ୟୋତିରିଙ୍ଗଣ ଦ୍ୟୁତେ ଦେଖାଇ ।
ବିଲୁପ୍ତ ପ୍ରଭାତ ପ୍ରଭା ଯେମନ୍ତ କରଇ । ୬୧ ।
ବୈଦେହୀ ଜାତରୁ ରମ୍ଭା ତଥା କହେ ଋଷି ।
ବାଷଠିପଦେ ଏ ଗ୍ରନ୍ଥ ଉପଇନ୍ଦ୍ର ଭାଷି । ୬୨ ।

———

୫୯ଶ ପଦ—ତବ (ତୁମ୍ଭର) ଗାଢ଼ଧ (ଗାଢ଼ିଭ୍ରୁ) ଅତିଶୟରେ ପ୍ରକାଶ ହେଲ୍ଲ ସୁବାହୁ ମାରୀଚ ଇତ୍ୟାଦିଙ୍କି ମାରିବାରୁ ଗାଢ଼ିତ୍ୱପ୍ରକାଶପାଇ-ଥିଲା ଏବେ ଶିବଧନୁ ଭାଙ୍ଗିଲେ ଅତିଶୟ ହେବ । ଆମ୍ଭ ଯାଗ ରକ୍ଷା କରିବାରେ ଯେ ଫଳେ।ଦୟ ହେଲ୍ଲ ତେଣୁ ସେ ସୀତାଙ୍କର ବଲ୍ଲଭ (ପ୍ରିୟ) ହୁଅ । ଏମନ୍ତ ଆଶୀର୍ବଚନ କହିଲେ । ୫୯ ।

୬୦ଶ ପଦ—ଏମନ୍ତ ବିଶ୍ୱାମିତ୍ରଙ୍କ ବଚନ ଶୁଣି ଋଦ୍ରକରବଂଶୀ (ରାମ) ବୋଇଲେ ପରମୀଣ ରମ୍ଭା ଅପସରୀ ବ୍ରହ୍ମାଣ୍ଡରେ ସାର ସୁନ୍ଦରୀ ହୋଇଅଛୁ ତାହାଠାରୁ ସୀତା କି ଅଧିକ ସୁନ୍ଦରୀ ? । ୬୦ ।

୬୧ଶ ପଦ—[୧] ଜ୍ୟୋତିରିଙ୍ଗଣ (ଖଦ୍ୟୋତ) ଦ୍ୟୁତେ ଦ୍ୟୁତି (ପ୍ରଭାକୁ) ଦେଖାଇ ଯେମନ୍ତ ପ୍ରଭାତରେ ପ୍ରଭା ଲୁପ୍ତ କରଇ ତାହାର ପ୍ରଭା ତାହା ଇଚ୍ଛାରେ ନାଶ ଯାଇ । ୬୧ ।

୬୨ଶ ପଦ—ଏବେ ବୈଦେହୀ (ସୀତା) ଜାତ ହେବାରୁ ରମ୍ଭା ତେମନ୍ତ ହେଲାଣି ଏମନ୍ତ ବିଶ୍ୱାମିତ୍ର କହିଲେ । ଏ ସପ୍ତମଗ୍ରନ୍ଥକୁ ବାଷଠି ପଦରେ ଉପେନ୍ଦ୍ର ନାମା କବି ଭାଷିଲେ (କହିଲେ) । ୬୨ ।

———

୧—ଖଦ୍ୟୋତୋ ଜ୍ୟୋତିରିଙ୍ଗଣଃ ।

# ଅଷ୍ଟମଛାନ୍ଦ

## ରାଗ କାଳୀ ।

ବଜ୍ରଯୂ୍ୀ-ଶର ! ବଜପୂକର ଯିବା ମିଥିଲପୁର । ବାହାର ହୋଇ ଦ୍ୱାର ତହିଁ କହନ୍ତି ମୁନିବର । ବଇଦେହୀ ଯେ ସୁନ୍ଦରୀବ୍ରଜେ ଅମୂଲ୍ୟ ଚୂଡ଼ାମଣି । ବର୍ତ୍ତମାନ ସେ ଭୂତ ଭବିଷ୍ୟେ ନାହିଁ ନୋହିବ ପୁଣି ।୧।

ବଶୀକରଣମୂର୍ତ୍ତି ଧାରଣ ଉଚ୍ଚାଟନ ତା ଗୁରୁ । ବହୁ ସୁନ୍ଦରୀ ସେ ପୁର-ନ୍ଦରୀ ତାହାଙ୍କୁ ବୋଲିବାରୁଁ । ବିହିଲ ବିହି ପ୍ରଭା ଏ କାହିଁ ଶୋଭା ସଂଗ୍ରହ ପାଇ । ବଣା ବିବେକ ପଣ୍ଡିତଲୋକମାନଙ୍କୁ କରି ଦେଇ । ୨ ।

---

୧ମ ପଦ -- ହେ ବଜ୍ରସ୍ବୀଶର (ଜମ୍ବୁମୁକ୍ତଶୂର) "ହେତୁ" "ବଜସ୍ବି ବର ଯନ୍ତ୍ର" ଶ୍ରୀରାମଚନ୍ଦ୍ର ବଜସ୍ବ କର (ପ୍ରସ୍ଥାଣ କର) ମିଥିଳା ପୁରକୁ ଯିବା ଏମନ୍ତ ବୋଲି ବାହାର ହୋଇ ଦ୍ୱାର ତହିଁ (ଦ୍ୱାରଦେଶ ଦ୍ୱାର କରିବା କାଳରେ) ବାଟରେ ମୁନିବର (ବିଶ୍ୱାମିତ୍ର) କହୁଅଛନ୍ତି, ବୈଦେହୀ (ସୀତା) ୧ସୁନ୍ଦରୀ-ବ୍ରଜେ (ସୁନ୍ଦରୀ ସମୂହରେ) ଅମୂଲ୍ୟ ଚୂଡ଼ାମଣି (ଶିରୋମଣି) ବର୍ତ୍ତମାନ (କାଳରେ) ସେହି ଏକା ଅଛି ଭୂତ (କାଳରେ) ଭବିଷ୍ୟ (ଭବିଷ୍ୟତ କାଳରେ) ତାହା ପରି ନାହିଁ ପୁଣି ନୋହିବ । ଅର୍ଥାତ୍ ହେବେ ନାହିଁ ମୁନି ତ୍ରିକାଳଜ୍ଞାତା ଏଣୁ ଏମନ୍ତ କହିଲେ ।୨।

୨ୟ ପଦ— ସେ ସୀତା ବଶୀକରଣରୂପ ମନ୍ତ୍ରକୁ ମୂର୍ତ୍ତି ମନ୍ତ୍ରରେ ଧାରଣ କରିଅଛି ଅର୍ଥାତ ତାହାର ମୂର୍ତ୍ତିକୁ ଦେଖିଲେ ସମସ୍ତେ ବଶୀଭୂତ ହେଉଅଛନ୍ତି । ପୁଣି ତାର ଗୁରୁ (ମନୋରମ) ଉଚ୍ଚାଟନ ଅର୍ଥାତ ତାହାର ମନୋରମକୁ ଦେଖି ଲୋକେ ଉଚ୍ଚାଟନ ହେଉଅଛନ୍ତି । ଆଉ ସୁନ୍ଦରୀଙ୍କ ମଧ୍ୟରେ ପୁରନ୍ଦରୀ ଏ

---

୧—ନବଯୌବନ ସମ୍ପନ୍ନା ସୁନ୍ଦରୀତ୍ୟଭିଧୀୟତେ । ଇତି ସୁନ୍ଦରୀଲକ୍ଷଣଂ ।
ସୁନ୍ଦରୀ ତନ୍ବୀ ସରୋଜ ନୟନା । ସୁନ୍ଦରୀ ରମଣୀ ରାମା ଇତ୍ୟମରଃ ।
୨—ଧ୍ୟାନମସ୍ଥ ଦୃଷ୍ଟ ପାତ ପ୍ରମୁଚିତ କାଳାଧ୍ୱ ବ୍ରହ୍ମକର୍ଷେ ଷ । ଇତି ନାଟକେ ।

ବିଗ୍ରହକାନ୍ତି କି ଝଟକନ୍ତି କନକ ଅନାଇଲି । ବାନ ବଢ଼ାଇ ଅଗ୍ନି କି ଦହି ଶିଳେ କଷାଇ ହେଲି । ବଣିକଶ୍ରେଣୀ ଅସମ ଜାଣି ହେଲେ ପ୍ରହାରଦାମା । ବସାଇ ଭୁଲେ ରଡ଼ିଏ ବୋଲେ ତେଡ଼ିକ ଲକ୍ଷ୍ୟ ଘେନ ।୩।

ବିଚରନ୍ତେ ଜ୍ୟୋତି ଲହି ସେ ଖଣ୍ଡ ବିଦ୍ୟୁ ଲକ୍ଷଣ ଏତେ । ବୁଜି ଈକ୍ଷଣ ହୁଏ ତତ୍‌କ୍ଷଣ ଯାହା ଦର୍ଶନମାତ୍ରେ । ବଢ଼ାଇ ପୀନ କଣ୍ଟକାପର୍ଣ୍ଣ ମଧ୍ୟରେ ଦହିର ଲୁଚି । ବାସସମ୍ମେଳ କେତକୀପ୍ରାୟ କେତେ ମନକୁ ରୁଚି

---

ଏମନ୍ତ ବୋଲିବାରୁ ବନ୍ଧ (ମୁକ୍ତ) ସେ । ସେ ଅଥବା ବଧ୍ୱସନ୍ଦେଶରେ (ବିଧାତା ନିର୍ମିତ ମୂଢ଼ଙ୍କ ମଧ୍ୟରେ) ପୂରନ୍ଦର୍ଶି ସେ ଏମନ୍ତ ବୋଲିବାରୁ (ବୋଲୁଅଛନ୍ତି) ଶୋଭାସଂଗ୍ରହ (ଶୋଭା ସଂଚୟକୁ) ପାଇ ବହୁ ବଣିକ[୧] ପ୍ରସ୍ତୁଏ କାହିଁ (କାହାଠାରେ ଏହି ପ୍ରଶ୍ନ ନାହିଁ) । କିମ୍ବା ବହୁ ଜାଣି ଏମନ୍ତ ଶୋଭା ସଂଗ୍ରହ ପାଇ ସ୍ତ୍ରୀଏ ବାହୁନ୍ତି । ଯାହା କି ପଣ୍ଡିତ ଲୋକମାନଙ୍କର ବିବେକକୁ ଏ ବଣା କରି ଦେଉଅଛୁ (ପଣ୍ଡିତମାନେ ବିବେଚନା କରି ପାରୁ ନାହାନ୍ତି) ।୨

୩ୟ ପଦ—ତାହାଙ୍କ ବିଗ୍ରହ (ଶରୀର) କାନ୍ତି (ଶୋଭା) କି ଝଟକନ୍ତି (ଅନବରତମାନ୍ ହୋଇ ଝଟକୁ ଅଛନ୍ତି) ତାଙ୍କୁ କନକ (ସୁବର୍ଣ୍ଣ) ଅନାଇଲି (ଦେଖିଲି) ମୁଁ ଏପରି ହେବି ବୋଲି ଅଗ୍ନିରେ ଅଙ୍ଗ ଦହି (ଦଗ୍ଧକରି) ବାନ (କାନ୍ତି) ଶିଳେ (କଷଟି ପଥରରେ) କଷାଇ ହେଲି । ବଣିକଶ୍ରେଣୀ (ବଣିଆ ସମୂହ) ଅସମ (ସୀତାଙ୍କ କାନ୍ତିକି ସମାନ ନୋହି-ବାର) ଜାଣି ପ୍ରହାରଦାମା (ତାଡ଼ନ ଛେଦନ ଦାନ୍ତା) ହେଲେ । ଭୁଲରେ (ଭୁଲପାହଚେ) ବସାଇ ଭୁଲ ରଡ଼ିଏ (ଲକ୍ଷେ ପ୍ରମାଣ ଏ) ଏମନ୍ତ ବୋଇଲେ ତେଡ଼ିକ ଲକ୍ଷ୍ୟ ଘେନିଲେ ସୀତାଙ୍କ କାନ୍ତିକି ଏ ଭଳିଏ ସଦୃଶ ଏମନ୍ତ ଘେନିଲେ) ।୩।

୪ର୍ଥ ପଦ—ବିଦ୍ୟୁ (ବିଜୁଳିର) ଲକ୍ଷଣ ଏତେ ଯାହା ଦର୍ଶନମାତ୍ରେ ତତ୍‌କ୍ଷଣ ଈକ୍ଷଣ (ଚକ୍ଷୁ) ବୁଜି ହୋଇଯାଏ ସେ ବିଜୁଳି ଖଣ୍ଡ (ଭର୍ତ୍ତ) ଲହି (ପାଇ) ବିଚରନ୍ତେ ଜ୍ୟୋତି ହୋଇଅଛି (ଦେଖାଇଦେଇ ଲୁଚୁଅଛି) ଏଣୁ

---

୧—ସ୍ୟୁଃ ପ୍ରଭାରୁଗ୍ରୁଚିସ୍ତ୍ୱିଡ଼୍‌ଭାଭାଶ୍ଛବିଦ୍ୟୁତିଦୀପ୍ତୟଃ ଇତ୍ୟମରଃ ।

ବାହ୍ଲୀକଚୂର୍ଣ୍ଣ କରି ସେବନ ମନକୁ ମନାଇଲା । ବରବର୍ଣ୍ଣିନୀ ଜଗଦ୍‌ବନ୍ଦନା ଏଣୁକି ବୋଲାଇଲା । ବରବର୍ଣ୍ଣିନୀ କହ୍ବିରୋଚନା ବୋଲଇ ତର୍କ ହୁଏ । ବିଲକ୍ଷ୍ୟ ସ୍ମରପ୍ରିୟା ନିସ୍ତରି ରତି ନାମକୁ ପାଏ ।୫।

---

ବିକଳ୍ପ ସମାନ ନୋହେ, ସୀତାଙ୍କ କାନ୍ତି ତର, ତଥୁ କିଛି ନେଇ ଅଛି ଅଧରେ ବେଢ଼ିଛଇ । କେତକୀ ଫୁଲ ସୀତାଙ୍କ କାନ୍ତିକି ଦେଖି ଅସ୍ତମାନରୁ ବଡ଼ାଇ ସ୍ଥାନ ହୋଇ କଣ୍ଟକପର୍ଣ୍ଣ ( କଣ୍ଟାପତ୍ର ମଧ୍ୟରେ) ଦରେ (ଭୟରେ) ଲଚି ରହିଲା । ବାସ (ସୌରଭ) ମେଳ (ସଙ୍ଗ) ହେବାରୁ କେତକ (କନ୍ଧ) ମନକୁ ରୁଚି ଥିଲା ୦ ।୪।

୫ମ ପଦ—ସୀତାଙ୍କ କାନ୍ତି ସମହେବ ବୋଲି ବାହ୍ଲୀକ (କୁଙ୍କୁମ) ଚୂର୍ଣ୍ଣ ହୋଇ ସେବନ (ସେବା) କରି ମନକୁ ମନାଇଲା, ଏଣୁ ଜଗଦ୍‌ବନ୍ଦନା ସୀତା ୧ବରବର୍ଣ୍ଣିନୀ (କୁଙ୍କୁମପ୍ରାପ୍ତ ବର୍ଣ୍ଣ ଯାହାଙ୍କର) ବୋଲାଇଲେ । ବର (ଶ୍ରେଷ୍ଠବର୍ଣ୍ଣ) ଯାହାଙ୍କର ଏମନ୍ତ ଯେ ରୋଚନା (ଗୋରୋଚନା) ବର(ଶ୍ରେଷ୍ଠ) ବର୍ଣ୍ଣିନୀକୁ କହି (ସ୍ତୁତିକରି) ରୋଚନା ବୋଲାଇଲା କି ଏମନ୍ତ ତର୍କ ହେଉଅଛି । ସ୍ତ୍ରୀମାନଙ୍କ ତନୁ କ୍ୟାଚି ରୋଚନାଦରେ ବର୍ଣ୍ଣିନ ହୁଏ ୨ ସେ ସୀତାଙ୍କ ବିଲକ୍ଷ୍ୟ ହେବାରେ (ଲକ୍ଷ୍ୟନୋହିବାରେ) ସ୍ମର ପ୍ରିୟା ( ରାଗଲତା, କନ୍ଦର୍ପପତ୍ନୀ )ରତି ନାମକୁ ପାଏ, କାରଣ ସୀତାଙ୍କ ସୁନ୍ଦରପଣକୁ ରତି ଏ ପ୍ରମାଣ, ଏଣୁ ରତିନାମକୁ ପାଏ । ସର (ସ୍ମରଣ କର, କନ୍ଦର୍ପ) ୫।

---

୦ – କେତକୀଫୁଲ ଦେଖିବାରୁ ପୂନରୁକ୍ତି ଦୋଷ ହେଲା ଏମନ୍ତ କେ ଅବା ବୋଲିବ ତାହା ନୋହେ ଏଠାରେ ପ୍ରୟୋଗ ଅଛି ଯଥା –

ଭରଜଲଭଙ୍ଗୁରସ୍ତନଭରା । ଅନନ୍ଦଲହରୀ ।

କଣଭଙ୍ଗୁରମାଲେ ଶତ ମାଘେ ।

ବପ୍ରକ୍ରୀଡ଼ାପରିଣତଗଜପ୍ରେକ୍ଷଣୀୟଂ ଦଦର୍ଶ ଇତି ମେଘଦୂତେ ।

ଏହିରୂପ ହେଲା । ପୁଷ୍ପେ ଜାତ୍ୟାଦିଭ୍ୟସ୍ତଥା ସ୍ରଗ୍ଦାମ୍ନୀ ବ୍ରୀହ୍ୟାଦିଫଳେ ଇତ୍ୟମରଃ ।

କେତକ୍ୟାଃ ପୁଷ୍ପଂ କେତକମିତି ବ୍ୟୁତ୍ପତ୍ତିଃ ।

୧—ବର ବାହ୍ଲୀକ କୁଙ୍କୁମମିତ୍ୟମରଃ ।

୨—ଗୁଁ ରୋଚନା ଗୌର ଶରୀର ଯଷ୍ଟି ରତି ଉଦ୍‌ବଣେ ।

ବହୁଁ ସମୁଦ୍ରମନ୍ଥନ ଚନ୍ଦ୍ର ଜନମ ଯେଉଁକାଳେ । ବହ୍ନିନକ୍ଷୀଣ କଳଙ୍କ ନାଶ ନିର୍ମଳ ହୋଇଥିଲେ । ବଦନେ ଜାନକୀର ସମାନ ମନ ଜାଣିଛି ବହୁ । ବିମ୍ବବେଷ୍ଟନ ଦେନାଲ ବର୍ଣ୍ଣ ଘରେଷ୍ଟି କାଟିଦେଇ ।୬।

କନକ ଆଦରଶ କି ବାଦଭଙ୍ଗ ହୁଅନ୍ତେ ଯୋଖ । ବସ୍ତାର ଆହା କି ଝଳ ଆହ୍ଲାଦ ସୁବାସ ମୁଖ । ବହଳ ଚଳ ସୁଧାକଲ୍ଲୋଳ ଲାବଣ୍ୟ ସରିତରେ । ବିକାଶ ହାସ ଜଗନ୍ନାଥ ଦାସ ସୀତାକୁ ନିରନ୍ତରେ ।୭।

---

୬ଷ୍ଠ ପଦ । ସୁର ଅସୁର ମିଶି ସମୁଦ୍ର ମନ୍ଥନ କରନ୍ତେ ଚନ୍ଦ୍ର ଜନ୍ମ ହେଲେ ଯେଉଁ ସମୟରେ ସେ ସମୟରେ ସେହି ଚନ୍ଦ୍ର କ୍ଷୀଣ ଅଙ୍ଗ କଳଙ୍କ ଏ ଦୁଇରେ ହୀନ ହୋଇଥିଲେ ( ନିଷ୍କଳଙ୍କ ଓ ପୂର୍ଣ୍ଣ ହୋଇଥିଲେ ) "ହେ ମନେ ଭଲେ ମୁଁ ଜାନକୀ ବଦନର ସମାନ" ଏମନ୍ତ ଚନ୍ଦ୍ର-ମନ ଜାଣିଛି (ନିଶ୍ଚିତାର୍ଥ ଜ୍ଞାନ) ବହୁ ( ବିଧାତା ) ଜାନକୀ ବଦନକୁ ଚନ୍ଦ୍ର ସମାନ ହୋଇବ ବୋଲି ବିମ୍ବବେଷ୍ଟନ ଯାହା ଲେଖୁଥିଲେ ତାହା ନୋହିଲା, ବର୍ଣ୍ଣର ଘରେ କାଟି ଦେଇ ଅଛି, "ଯେଉଁ ବର୍ଣ୍ଣ ଲେଖୁ ଲେଖୁ ଭୁଲ ହୁଅଇ ତାକୁ ବିମ୍ବ ବେଷ୍ଟନ ( ମୁଣ୍ଡ ନା କରି ) କାଟିଦେଇ ମଧ୍ୟରେ ଛିପ ଦିଅନ୍ତି" ଚନ୍ଦ୍ରରେ ଯାହା କଳଙ୍କ ଅଛି ବିଧାତା ସେ ଘରେଷ୍ଟି କାଟି ଦେଇଅଛି ।·। ।୬।

୭ମ ପଦ । କନକ (ପଦ୍ମ) ଆଦର୍ଶ (ଦର୍ପଣ) ଏ ଦୁହେଁ ଦଇବ ବଶ ସୀତାଙ୍କ ମୁଖ ଭଳିରେ ଯୋଖ ହୁଅନ୍ତେ କି (ସମାନ ହୁଅନ୍ତେ କି ?) "ସମାନ ନୋହିଲେ"। ପଦ୍ମରେ ସୁବାସ ପୂର୍ଣ୍ଣ ଅଛି, ଦର୍ପଣରେ ଆହ୍ଲାଦ ପୂର୍ଣ୍ଣ ଅଛି, ସୀତାଙ୍କ ମୁଖରେ ଆହ୍ଲାଦ ସୁବାସ ଦୁଇ ପୂର୍ଣ୍ଣ ଅଛି, ଏମନ୍ତ ଇଙ୍ଗିତ ଗର୍ଭରେ ବିସ୍ତାର କରୁଅଛନ୍ତି "ଏମନ୍ତ ଶେଷ"। ଲାବଣ୍ୟ ସରିତରେ (ଲାବଣ୍ୟ ତରଙ୍ଗିଣୀରେ ) ବହଳ ଚଞ୍ଚଳ ) ଚଳ ( ପ୍ରଚଳ ) ସୁଧାରସ ସମ୍ବନ୍ଧ ୧ କଲ୍ଲୋଳ (ମହାତରଙ୍ଗ) ପର ବିକାଶ ଯେଉଁ ସୀତାଙ୍କ ହାସ ସେ ଜଗନ୍ନାଥ ଦାସ କହଇ ।୭।

---

·।· —ତଥା ଚ ନୈଷଧେ: ବୃତ୍ତଅନ୍ତ ତତ୍ରୈ କୁତୂର୍ଚ୍ଛେ ଯଦ ଯଦା ।
ତଦୋ ଚ ଖଣ୍ଡନ ଃ ସଂଶବେଶକେ ତଦାରବ୍ଧ ବିଧୁଃ ଚୂର୍ଣ୍ଣଲକ୍ଷ୍ମଂ ବିଧେୟ ରଥି । ଇତି
୧ – ମହତ୍ସୁ ଲୋଲ କଲ୍ଲୋଳାବିତ୍ୟମରଃ ।

ବିଧୂ ବିଧୂର ଟବଟୁ ଚୂରୁ ଦେବରଦ୍ରବ୍ୟ ଦର୍ଭ । ବିକଶିତରେ ସେ ଈଷିତରେ ନ ଲଭିଲ ସନ୍ଦର୍ଭ । ବିକଶିତ ଯେ କୁମୁଦପୁଞ୍ଜେ ଦିନେ ସଙ୍କୋଚ କରି । ବୁଡ଼ଣାମାରେ ପଡ଼ି ଜଳରେ ଦୃଢ଼ ଆୟୁଷୁ ଖାଇ ।୮

ବସ୍ତାରିତ ତା ଲୋଚନ ଗତାଗତ କରନ୍ତେ ତେଜେ ଲା ବଳନ୍ତୁ ଭୃଙ୍ଗ ସରୋଜେ ସଙ୍ଗହୋଇ ଶିଖେ ସେ ଲୀଳା । ବାତେ ଚଳଇ ନଳୋତ୍ପଳହିଁ ସେ କିବ ଲକ୍ଷ୍ୟ ହେଜ । ବାଳକ କରେ ସାରଣୀ କରେ ଖେଳା ତତ୍ରୁଣ ତେଜ ।୯।

---

୮ମ ପଦ – ସୀତାଙ୍କ ହାସକୁ ସମାନ ହୋଇବ ଭଙ୍ଗୀରୁ (ଅହଂକାରରୁ) ବିଧୁର (ବିଶ୍ଳେଷ ହୋଇ ବିଧୁ (କପୂର) ଚୂର (ବିଚୂର୍ଣ୍ଣ) ହେଲା । ପବିତ୍ର ଦ୍ରବ୍ୟ (ଶୁଭ୍ର ପଦାର୍ଥ) ଦର୍ଭ (କୁଶ) ବିକଶିତରେ (ପ୍ରଫୁଲ୍ଲ-କୁସୁମରେ)ଈଷିତ(ଲେଶ)ମାତ୍ରକେ ସୀତାଙ୍କ ହାସସନ୍ଦର୍ଭ (ହାସପରିଚୟ ଚିହ୍ନ) ଲଭିଲା । କେଉଁଠାକ ଅଟନ୍ତି ଏମନ୍ତ ଯେ କୁମୁଦପୁଞ୍ଜ (ଶ୍ୱେତପଦ୍ମବୃନ୍ଦ) ସେ ଦିନେ (ଦିବସରେ) ସଂକୋଚକୁ କରି ସୀତାଙ୍କ ହାସସମ ନ ହୋଇ-ବାରୁ ଜଳରେ ମାରରେ ପଡ଼ି ବୁଡ଼ିଲେ ମରିବା ନିମିତ୍ତ, ଏମନ୍ତ ହେଲେ ମଧ୍ଯ ନ ମଲ ଦୃଢ଼ ଆୟୁଷରୁ ଖାଇଲେ ।

୯ମ ପଦ—ବିସ୍ତାରିତ (ବିସ୍ତାରିତ) ତାହାଙ୍କ ଲୋଚନ ଗତିରେ ତେଜ ଲା ଯାତା ଗତାଗତ କରୁଅଛି ତାହା ବୁଝି ବଳିନ (ନାଳ୍‌ଜ) ଭୃଙ୍ଗ ସରୋଜ (ପଦ୍ମ) ସଙ୍ଗ ହୋଇ ସେ ଚଞ୍ଚଳଲୀଳାକୁ ଶିଖୁଅଛି, ତାହା ସେ କାହୁଁ ଲଭିବ ? ସେ କିବ ( ନେତ୍ରଚଞ୍ଚଳତା ଭେଦ କିବ ) ହେଇକର ଲକ୍ଷ୍ୟ ହେବା ନିମନ୍ତରେ ନୀଳୋତ୍ପଳ, ବାତେ ( ପବନଦ୍ୱାରା ) ଚଳୁଅଛି ସେ ଡାହୁଁ ଲକ୍ଷ୍ୟ ହେବ ? ସେ ନେତ୍ରଚଞ୍ଚଳତା ସାମ୍ୟକୁ ପାଇବ ହୋଇ ସାରଣୀ ବାଳକଙ୍କ କରରେ ଖେଳା କରୁଅଛି, ତାଙ୍କୁ ତେଜୁନ (ଯୁବମନେ) ଚଞ୍ଚଳକୋ । ଏ ସାରଣୀ ସୀତାଙ୍କ ନେତ୍ରଚଞ୍ଚଳତା ଗତାଗତ କରୁଥିବା ସମାନ ନୁହଇ ହୋଇ ବାଳକେ ଅଙ୍କାନରେ ଖେଳ ଉ ଅଛନ୍ତି ।୯।

---

୧—ତରୁଣୀ ଯୁବମ୍ନଚଞ୍ଚଳାବର୍ତ୍ତୀମନଃ ।

ବନ୍ଧୁଭ୍ରୂଲତା ନିକଟେ ସ୍ଥିତା ଗୁଣହିଁ କମାଣେ ରହି । ବିଶିଖ ଗତି କରୁଅଛନ୍ତି ପକ୍ଷ୍ମରେଖକୁ କହି । ବର୍ଣ୍ଣ ନିବଦ୍ଧ ଶାଳିତ ସାଧୁ ହୋଇଁ ଲୋକଲ ଶଙ୍ଖେ । ବନ୍ଧୁ ରୂପ ଏ ଆନ ପରାଇପୁ ପଥ୍ୟା ଆପଣା ସୁରେଖେ ।୧୦।

ବିପିନଘନେ ପଶି ବହନେ ଚଞ୍ଚଳେ ହାରି ମୃଗ । ବଂଶରେ କେହୁ ସେ ସମଧାସ୍ତୀ ମର ଇନ୍ଦୁରେ ଯୋଗ । ବାଞ୍ଛିତ କର୍ମହୀନର ଶ୍ରମ କଲେ ପ୍ରାପତ କାହିଁ । ବିମଳପଦାର୍ଥକୁ ସବଦ ସମଳ କଲ ସହିଁ ।୧୧।

ବସିଲେ ଭୂକେ ଦଇବବଳେ ଗୁଞ୍ଜିକ ରକ୍ତପ୍ରଦେ । ବନମିଂଷେରେ

---

୧୦ମ ପଦ ସେ ସୀତାଙ୍କ ନେତ୍ର ପକ୍ଷ୍ମ (ଲୋମକୁ) ବନ୍ଧୁ ବନ୍ଧୁ ଭ୍ରୂଲତାର ନିକଟରେ ସ୍ଥିତ ହେବାର ଗୁଣହିଁ ବିଶିଖ (ବାଣ) ପକ୍ଷ (ପକ୍ଷିକୁ) ବନ୍ଧୁ କମାଣ (ଧନୁରେ) ରହୁ ନେତ୍ର ଚଞ୍ଚଳ ଦେଖି ଗତି କରୁଅଛନ୍ତି । ସେ ଲୋଚନ ନିବଦ୍ଧ ବର୍ଣ୍ଣ ହେବାରୁ ବିଶିଖ ହୃଙ୍କୁ ଲ କଲା ଶଙ୍ଖ ଏ ତିନ ବର୍ଣ୍ଣରେ ସାଧୁ (ହୃଦୟ) ହୋଇ ବନ୍ଧୁରୂପା (ନଷ୍ଟବଶେଷ) ଆପଣା ସୁଖରେ ଆନନ୍ଦ ହୋଇ ପ୍ରସ୍ତ ଶାଳିତ (ଚଞ୍ଚିତ) ଦେଲେ । ନେତ୍ର ଶୋଭାକୁ ସେ କାହୁଁ ପାଇବେ ? ନେତ୍ର ଶରରୂପରେ ବର୍ଣ୍ଣିତ ଅଟେ ।୧୦।

୧୧ଶ ପଦ—ମୃଗ ଚଞ୍ଚଳ,ସୀତାଙ୍କ ନେତ୍ର ଚଞ୍ଚଳ,ତହିଁରେ ସେ ହାରି ଯାଇଁ ଘନ (ଶାନ୍ଦ୍ର) ବିପିନ (ବନରେ) ପ୍ରବେଶରେ ପଶିଲା । ସେହୁ ମୃଗବଂଶରେ କେହୁ ସୀତାଙ୍କ ବଦନଶ୍ରୀଙ୍କୁ ଧାରି (ଚନ୍ଦ୍ର) ମର ଇନ୍ଦୁ (ଚନ୍ଦ୍ରରେ) ଯୋଗ ହେଲା ତଥାପି ସମ ନୋହିଲା । ଦର୍ମହୀନ ଲୋକ ଶ୍ରମ କଲେ ବାଞ୍ଛିତ (ମନୋରଥ) କାହିଁ ପ୍ରାପ୍ତ ହୋଏ ? କେବେ ନହୁଇ । ଯାହା ବିମଳ ପଦାର୍ଥ (ଚନ୍ଦ୍ରକୁ) ସବଦା ସମଳ(ସକଳଙ୍କ) କଲା ଏତିକି ଫଳ ହେଲା ।*।୧୧।

୧୨ଶ ପଦ—ଦୈବବଳରେ ଭୂକେ (ଭୂକପାଳରେ) ବସିଲେ ଗୁଞ୍ଜା (କାଇଞ୍ଚ) ରକ୍ତ (ସୁବର୍ଣ୍ଣ) ସର ହୋଏ କି ? କଦାପି ହେମସଙ୍ଗେ ସମ ନୋହେ । ତଦ୍ରୂପ ଚନ୍ଦ୍ର ଅଙ୍କରେ ଶଶା ବସି ମଧ୍ୟ ସୀତାଙ୍କ ନେତ୍ର ଶ୍ରୀଅଙ୍କୁ

---

*—ଚୂଡାମଣିର ଶେଖରେ—
ମୃଗାଃ ନୂତପାଥୋଜ ତପୂନଃସ୍ପଷ୍ଟେଃ ।
ନେତ୍ରଂ ଚକୋରଡନ୍ନେତ୍ର ବେତକାଳୀନୂଗଶୁଣୈଃ ।ଇତି ।

ମୀନସମାଜେ, ଖଞ୍ଜନ କମ୍ପେ ଭୟେ । ବୁଡ଼ାଇ ରାଗକୁଣ୍ଡରେବେଗବେଗ
ଅପାଙ୍ଗ ତାଳି । ବଡ଼ିଶ ପରି ନଏ ଓଟାରି ମନ-ମୀନକୁ ବାଳୀ ।୧୨।

ଚିକ୍କଣ କରି ଅଳକ ଫଣି ଏଥିକି ସମ ନୋହି । ବେତାଳ ଭଇ-
ରବକୁ ଧାଇଁ ଖଡ୍ଗ ପ୍ରହାରବହି । ବାମ ଲଲାଟ ପଟ୍ଟରେ ପତ୍ର ଆଳତା
କି ଲକ୍ଷିବା । ବିଗଳିତାଙ୍କ ଅର୍ଦ୍ଧଶଶାଙ୍କ ଯୋଖିବା ନ ଯୋଖିବା ।୧୩।

ବିଫଳ ନହେବ ଟୋକିବା ଶିବ ତପସ୍ୟା ଗଙ୍ଗାକୂଳ । ବଚନେ ନାହିଁ
ସର୍ବାଙ୍ଗେ ପୂର୍ଣ୍ଣହେବା ଉପମା ତୁଳ । ବସୋଷ୍ଠ ଥିଲା ଜରଜରିଲା ନୋହେ
ସେ ଶମ୍ଭୁ ଅଙ୍ଗେ । ବସ୍ତ୍ର ପଦାତ ଦୋଳ ଲକ୍ଷିତ ହାଟକ ଧାତସଙ୍ଗେ ।୧୪

ସମାନ ନୋହିବ । ମୀନ ସମାଜ ( ମୀନ ସମୂହ ) ନେତ୍ର ସାମ୍ୟକୁ ନ ପାଇ ଅନିମିଷ ( ନିର୍ନିମେଷ ) ହେଲେ । ଖଞ୍ଜନ ( ଖଞ୍ଜରୀଟ ପକ୍ଷୀ ) ଭୟରେ କମ୍ପିଲା ନେତ୍ର ସମାନ ନୋହିବ ବୋଲି ଅପାଙ୍ଗ ( ନେତ୍ର ପ୍ରାନ୍ତକୁ ) ଅନୁରାଗକୁଣ୍ଡରେ ବୁଡାଇ ବେଗ ବେଗ(ଅତିବେଗରେ)ଯାହା ତାଳଇ ୧ବଡ଼ିଶ ( ମତ୍ସ୍ୟଭେଦନ ବନଶକଣ୍ଟକ ) ପରି ମନମୀନକୁ ସେ ବାଳୀ ଓଟାରି ନେଉଛି । ୧୨ ।

୧୩ଶ ପଦ— ଅଳକ ( ଲଲାଟକୁ ) ଚିକ୍କଣ କରି ( ଦେଖି ) ଫଣି ଏଥିକି ସମାନ ନ ହେଲା ଏହେତୁ ବେତାଳ ଭୈରବ ଦୃଷ୍ଟିକୁ ଧାଇଁ ଖଡ୍ଗ ପ୍ରହାର ବହି ( ସହ୍ୟକଲା ) ଏମନ୍ତ ତର୍କ ଥାଇ ୧ଲଲାଟପଟ୍ଟରେ ପତ୍ରବାମ କରିଅଛି ସେ ଲଲାଟ ମଧ୍ୟ ବୋଲାଇଛି । ସେ ଲକ୍ଷଣ ଆଉ ସବୁଙ୍କ ଲଲାଟରୁ ଅଛି କି ଲକ୍ଷ୍ୟ ହେବ । ବିଗଳିତାଙ୍କ(କଳଙ୍କ) ଅର୍ଦ୍ଧଶଶାଙ୍କ ( ଅର୍ଦ୍ଧଚନ୍ଦ୍ରକୁ ) ଲଲାଟ ସଙ୍ଗେ ଯୋଖିବା, ଯୋଖିତ ନାହିଁ ।୧୩।

୧୪ଶ ପଦ—ଗଙ୍ଗାକୂଳରେ ତପସ୍ୟା କରି ଶିବଙ୍କୁ ତୋଷିବା ଚନ୍ଦ୍ରର ବିଫଳ ହେବ । ଅଙ୍ଗ ସର୍ବାଙ୍ଗରେ ଉପମା ତୁଲରେ ଦେବା ବଚନେ ନାହିଁ (ବଚନରେ ତ ନ ହୁଏ) ପୁଣି 'କବି' ବୋଇଲେ—ବସୋଷ୍ଠ ଥିଲା (ମୁଁ ଧାରୋଷ୍ଠ ଥିଲି) ଶମ୍ଭୁ ଅଙ୍ଗଶ୍ଳେଷରେ ଜରଜର(ତ୍ରସ୍ତ)ହେଲା ନୋହଇ । ବସ୍ତ୍ର ପଦାତ(ରଙ୍ଗ.ତ)

୧—ବଡ଼ିଶଂ ମତ୍ସ୍ୟଭେଦନମିତ୍ୟମରଃ ।

୧— ଲଲାଟ ମଳିକଂ ଗୋଧିରିତ୍ୟମରଃ ।

ବଡ଼ମା-ଚନ୍ଦ୍ର ଶୋଭାର ଶ୍ରୁତ ବିଶ୍ରାମ ଖଟ ଦେଲା । ତେଲି ପାଟଳୀ ପାତେବାକୁଁ ଟଳିଲାର ଉପମା ଝଳା । ବର୍ଜିତ ସାରଧାର୍ଦ୍ଧଲୁକାର ସ୍ୱତସାନ ହେଲା । ବୁଦ୍ଧିକ ପାଶ କରନ୍ତେ ପାଶ ତଳରେ ବୁଡ଼ିଗଲା ।୧୫।

ବ୍ୟତିରେକ ଏ ଦୃଷ୍ଟିତ ମୁଁହେ ଖଣ୍ଡି ଉପମାରୁଣ୍ଡି । ବିମ୍ବ ନିର୍ମଳ କୃତ ମଣ୍ଡଳ-ଖଣ୍ଡ ମଣ୍ଡଳଗଣ୍ଡ । ବୋଲନ୍ତୁ ଅଛୁ ଦର୍ପଣ ଛିଟୁ କରକଳଙ୍କେ ଯେହି । ବନ୍ଧ୍ୟ କି ଖଡ଼ ଗପାଳ ପଦଗ କରେ କଳଙ୍କ ବନ୍ଧି ।୧୬।

ଲଜ୍ଜିତ ହୋଇ ହାର ସଙ୍ଗରେ ହାରଇ । ଅର୍ଦ୍ଧଚନ୍ଦ୍ର ଗଙ୍ଗାକୂଳରେ ତପସ୍ୟା କରି ଶିବଙ୍କୁ ତେ ଶିବାର କପାଳ ହେବ ୦ । ୧୪ ।

୧୫ଶ ପଦ —ଶୋଭାର ବଡ଼ମାଚନ୍ଦ୍ର (ବଡ଼ୁପ ପୁଷ୍ପ) ଅଟେ ଏମନ୍ତ ଶ୍ରୁତ (ଶ୍ରବଣର) ଖଟ ହୋଲା ବିଶ୍ରାମ (ବିଶ୍ରାମସ୍ଥାନ) ତାକୁ କେ ପାଇ ଲକ୍ଷ୍ୟ ଦେବା ? । ଅଥବା ଶ୍ରୁତ ଶୋଭାର ବଡ଼ମା ଚନ୍ଦ୍ର ବିଶ୍ରାମଖଟ ହୋଲା । ପାଟଳ (ପାଟଳୀ ପୁଷ୍ପର) ଉପମା ଝଳକ (ଝଳା ନାହିଁ) କ ତୋରୁ ପା ବୋଲି (ଶ୍ରୁତ ଉପମାକୁ ପା ଏମନ୍ତ ବୋଲନ୍ତେ) ଟଳିଲ ସେ । ଧୀ ସ ଲଙ୍କାର ବର୍ଜିତ ତାର ହେଲେ, ହ୍ରସ୍ୱ ହୋଇ ହ୍ରସ୍ୱ ହୁଅନ୍ତେ ସାନ ହେଲା ଏଣୁ କର୍ଣ୍ଣୋପମା ନୋହିଲା । ପାଶକୁ କର୍ଣ୍ଣୋପମା ହୋଇବାରୁ ବୁଦ୍ଧିକ ପାଶକରନ୍ତେ ସେତଳରେ ବୁଡ଼ିଗଲା ଏଣୁ ଉପମାଯୋଗ୍ୟ ନୋହିଲା । ୧୫ ।

୧୬ଶ ପଦ—ଉପମାରୁଣ୍ଡ (ଉପମା ସମୁକୁ ଦଣ୍ଡି (ଦଣ୍ଡନକରି) ଦୃଷ୍ଟିତ ଭଲ (ଗୃହୀଁଲ) ସେ ଏ ବ୍ୟତିରେକ ହୋଇଛି । ସେହିପରି ସେ ଦେଖ, ନିର୍ମଳ କୃତ ମଣ୍ଡଳ ବିମ୍ବ (ନିର୍ମଳ କୃତ ଅଟେ ମଣ୍ଡଳ ଯହିଁର ଏମନ୍ତ ଯେ ଚନ୍ଦ୍ରର ବିମ୍ବ) ତାକୁ ମଣ୍ଡଳଗଣ୍ଡ (ଗଣ୍ଡମଣ୍ଡଳ) ଖଣ୍ଡ (ଖଣ୍ଡନ) କରୁଅଛୁ ଅର୍ଥାତ୍ ଗଣ୍ଡମଣ୍ଡଳକୁ ଦେଖି ଚନ୍ଦ୍ର ମଣ୍ଡଳ ଖଣ୍ଡିତ ହେଉଅଛୁ । ଦର୍ପଣଙ୍କୁ ତୁଲ୍ୟ ଗଣ୍ଡମଣ୍ଡଳ ବୋଲନ୍ତାନାହିଁ । ସେହି ଦର୍ପଣ ବେ ଲଜ୍ଜାରୁ । କରକଳଙ୍କରେ ସେ ଦର୍ପଣ ଛୁଟୁ (ଛୁଟି ହୋଇଅଛି) ଝଡ଼ଟପାଳ (ଝଣ୍ଟିପାଳ) ଗଣ୍ଡମଣ୍ଡ

୦—ସ୍ୱସ୍ମସିଦ୍ଧିଃ କଥଂ ପରନ୍ ସାଧୟତ । ଇତି ଭାବଃ ।
୧—ବିମ୍ବୋଽସ୍ମୀ ମଣ୍ଡଳଂ ବିମ୍ବି ତ୍ୟମରଃ ।

ବଗବେଗହାର ନାସାଡମ୍ବର ଉଚ୍ଚାକଲକୁ ଶୁକ । ବିନା ଦୋଷରେ
ଶିକୁଳି ଛଳେ ଶାଙ୍କୋଳି ଦିଏ ଲୋକ । ବିହଗ ସିନା ହୋଇ ଚନ୍ଦନ
ଫାଶଲନ ନ୍ଦ୍ରଁ ପାଷ୍ଟ । ବିନତା ସୁତ ସିଦ୍ଧି ଅମୃତ ସ୍ପୃହିଁ ଖଗେନ୍ଦ୍ର ରଚ ।୧୭

ବୁଝାଇ ତିଳ ଅସମେ ତିଳସୁମନ ବିନ୍ଧ ନାମେ । ବଧିକ ? ତୂଣ
ଉପମା ପୂର୍ଣ ନିର୍ମାଣ ପଶୁଚର୍ମ । ବେଣୁ ବରୁଣ ଯେଉଁ ଜାଣ ସମୁଦ୍ର ମଧ୍ୟେ
ପଶେ । ବଂଶ ଜଗ୍ରାସିତ ମଳୟବାତ ତୁଳା ହେଲାକୁ ଶାସେ । ୧୮ ।

---

ଜର ଦନ୍ୟ ଜ ? (ବନ୍ଧମାପ୍ତ ନୋଦ୍ଧେ) ନାହିଁକି ? ପଡ଼ଗ (ପଦ ଓ)
ହରେ (ବସ୍ତ୍ରରେ) ଜଲଙ୍କ ବନ୍ଧଅଛି, ଅର୍ଥାତ୍ ପାଇକ ଭଗ ଜଲଙ୍କିତ ଦ୍ରବ୍ୟ
ଜିପଶ ଉପମ ଯୋଗ୍ୟ ଗଣ୍ଡ ସଙ୍ଗରେ ହେବ ? । ୧୭ ।

୧୭ଶ ପଦ — ଯେ ବଗବେଗହାର (ସୀତାର) ନାସାଆଡ଼ମ୍ବର (ଉଚ୍ଚ ପ) ତାକୁ ଉଚ୍ଚ କଲକୁ ଶୁକ (ଶୁକପକ୍ଷୀ) ତାହାକୁ ବିନା ଦୋଷରେ ଲୋକ ଶିକୁଳି ଛଳରେ ଶାଙ୍କୋଳି ଦେଉଅଛି । ସେ ବିହଗ ସିନା (ଜାତରେ ପକ୍ଷୀ ବୁଦ୍ଧିହୀନ) ଚନ୍ଦନ (ଉନ୍ନତସ୍କନ୍ଧ) ହୋଇ ସେ କଥାକୁ ପଶୁ ପକ୍ଷୀ ନାହିଁ ଏହି ନ୍ୟାୟରୁ ଦଣ୍ଡ ପାଇଲା । ବିନତାସୁତ (ଗରୁଡ଼) ଅମୃତକୁ ସ୍ପୃହି ବିନତାସୁତ ସିଦ୍ଧି କରନ୍ତେ ଖଗେନ୍ଦ୍ର ହୋଇ ରହିତ ହେଲେ । ୧୭ ।

୧୮ଶ ପଦ ତିଳସୁମନ (ତିଳପୁଷ୍ପ) ସୀତାଙ୍କ ନାସାକୁ ଅସମହେବାରେ ବିନ୍ଧ (ବିଧାତା) ନାମରେ ତିଳ ବୋଲି ବୁଝାଇଅଛି । ଅଥବା ତିଳପୁଷ୍ପ ଆପଣା ନାମରେ ତିଳକୁ ବିନ୍ଧ (ବଧାର ଭଗ), ବୁଝାଇଅଛି । (ଲୋକେ ତିଳପୁଷ୍ପ ବୋଲୁଅଛନ୍ତି) ପୁଣି ପଶୁଚର୍ମରେ ନିର୍ମାଣ ହୋଇଅଛି ଯେ ୧ତୂଣ (କାଣ୍ଡଧାରଣୀ) ତାହା ଉପମା ବଧିକ ? (ନାସାସଙ୍ଗରେ ସମାନ ହେବାକୁ ବଧିକ ନୁହଇ) । ଆପଣ ଜାଣି "ବେଣୁ ନାସାସମାନ ନୋହିବାରୁ" ବରୁଣ-(ପ୍ରଚେତା) ବେଣୁ (ବଂଶୀ) ଯେଉଁ ସମୁଦ୍ର ମଧ୍ୟରେ ପଶିଲା । ତାହାର ଶ୍ୱାସ (ନିଶ୍ୱାସ) ତା [illegible]ରେ ମଳୟବାତ (ମଳୟପବନ) ତୁଳା (ସମାନ) ହେଲାକୁ ବ୍ୟାଳ (ସର୍ପ) ଦ୍ୱାରା ଗ୍ରାସିତ ହେଲା । ୧୮ ।

---

୧—ନୃପୋପରସ୍କର ତୂଣୀର ଉତ୍ୟମରଃ ।

ବାଳା ଅଧର-ଅରୁଣ ସାର ଛବି ବନ୍ଦିବାସୁର । ବାଳ ଅରୁଣ ଯେନ ଅରୁଣ ପଦ୍ମାନୁରାଗେ ପରି । ବରଙ୍ଗ ସେହି ଦଣ୍ଡକେ ହୋଇ ସନ୍ତାପ ବିଭୂଷଣ । ବଦ୍ଧ ସନ୍ଧ୍ୟାରେ ମାଣିକ୍ୟ ଧାରେ, ଜ୍ୟୋତିକ ଜଳ ରଣ । ବିତୁଳ ହେବେ ମଜ୍ଜି ଅର୍ଣ୍ଣବେ ପୂର୍ଣ୍ଣିଙ୍କି ସେ ବ୍ୟବସ୍ଥା । ବାଳ ବୃଦ୍ଧର ଯଥା ।ଶୋର ଧନ ଧନକ କଥା । ବେ ଲବା କାହୁଁ ମନ୍ଦାର ଆଜ ଧରିଛି ମନ୍ଦ କାଳ । ବୈରାଗୀ ହେବ ବିମ୍ବ ଭସ୍ମ ହୋଇଲି ବୋଲି । ୨୦ ।

୧୯।୨୦ଶ ପଦ—ବାଳା (ସୀତା) ତାହାଙ୍କ ଅଧର ତାହାର ଅରୁଣ ସାର ଛବିକ ବନ୍ଧିବା ଏମନ୍ତ ସ୍ମର (ସ୍ମରଣକର୍ତ୍ତା) ବାଳଅରୁଣ (ବାଳାର୍କ) ୧ଅରୁଣ (ଅବ୍ୟକ୍ତରାଗଙ୍କୁ) ଯେମନ ଓ ଅରୁଣ (ଅନୁରୂ) ତାଙ୍କୁ ଯେମ ପଦ୍ମର ଅନୁରାଗରେ ପୂରିତ ହେଲେ ତଥାପି ସେ ଅରୁଣ ଦଣ୍ଡକରେ ବରଙ୍ଗ(ବିବର୍ଣ୍ଣ) ହୋଇ ସନ୍ତାପ ବିଭୂଷଣ ହେଲେ । ପୁଣି ସନ୍ଧ୍ୟାକାଳରେ ମଣିକ୍ୟଧାର (ମାଣିକ୍ୟଶ୍ରେଣୀ) ତାହାଠାରୁ ଜ୍ୟୋତିକ ଋଣକରି ବନ୍ଧିଲେ । ତଥାପି ବିତୁଳ (ଅତୁଳ) ହେବାରୁ ଅର୍ଣ୍ଣବ (ସମୁଦ୍ର) ତହିଁରେ ମଜ୍ଜି (ବୁଡିଗଲେ) । ପୂର୍ଣ୍ଣିହି ହେତୁ ବ୍ୟବସ୍ଥା କୁ କଲେ—ଯଥା (ଯେରୂପ) ବାଳ ବୃଦ୍ଧ ଦୁହିଙ୍କର ଧନ ଧନକ କଥା ପାଶୋରି ଯାଏ ତଥା ଜବଣ୍ଡି ନ ହୋଇ ସେହି ଆଚରଣ କରନ୍ତି ଅଛନ୍ତି ୦ । ଯାହାକୁ ବାଳକ ସମାନ ନୋହିବା ମନ୍ଦ ରପୁଷ୍ପ କାହୁଁ ସମାନ ବୋଲିବା ସେ (ମନ୍ଦାରପୁଷ୍ପ) ମନ୍ଦ (ନ୍ୟୂନ) ଅଟେ, ଏମନ୍ତ କାଳ-ମାନ୍ତୁ ଧରିଅଛି ଏଣୁ ସେ ମନେ ରମ ନୁହଇ । ବିମ୍ବ (ପକ୍ୱବିମ୍ବ ଫଳ) ବାଳାର ଅଧରସମ ନୋହିବାରୁ ବୈରାଗୀ ହେବା ବିମ୍ବିକ ଅଭିମାନପାଇ ଭସ୍ମ (ବିଭୂତ) ବୋଲି ହେଲା କି ? ଏମନ୍ତ ଭାବ । ୧୯।୨୦ ।

୧— ଅରୁଣୋଽବ୍ୟକ୍ତରାଗେ ସ୍ୟାଦର୍କେ ସନ୍ଧ୍ୟାରାଗେଽର୍କସାରଥୌ । ଇତି ମେଦିନୀ ।
୦—ପରିପଚତି ପଯୋଧୌ ପତଙ୍ଗଃ ସରସିରୁହାଂ ମୁଦିତାରକ୍ଷ ମଣ୍ଡଙ୍ଗଃ ।
ଉପବନତରୁକୋଟରେ ବିହଙ୍ଗଃ, ସୁବତିଜନେଷୁ ଶନୈଃ ଶନୈରନଙ୍ଗଃ
ଇତି ପ୍ରୟୋଗଃ ।

ବିଦ୍ରୁମ ଯହିଁ କୁଣ୍ଠ ମରାଇ ସୂଚିକା ବ୍ୟାଜେ ହୃଦ । ବନ୍ଧୁଜୀବ ଯେ
ଅଳ୍ପକେ ଭଜେ ମଳିନ ନ ସମ୍ବାଦ । ବୈଭବ ଶୁଭ ମଙ୍ଗଳେ ଶୋଭେ
ନାଗର ଯେ ସିନ୍ଦୂର । ବହାଇଲେତ ପରେ ଦଳିତ ଗୁପତ ସମ୍ପୁଟର ॥
ବକ୍ର ଦଶନ କାନ୍ତି ପ୍ରସନ୍ନ ହରଣେ କରୁଁ ଚିନ୍ତା । ବସାଇ ଶାଣେ
କଣ୍ଠିପ୍ରମାଣେ ଦଣ୍ଡ ଦିଅଇ ଧାତା । ବୋଧଇ ଶୁକ୍ତି ରବ ଉତ୍ପତ୍ତିନୋହୁଁ
ମୁଁ ଦନ୍ତଦାସ । ବିମୁକ୍ତ ହୋଇ ମୁକ୍ତା ବୋଲାଇ ତାର କ ହେଲା ନାଶ ॥

---

୨୧ଶ ପଦ—ବିଦ୍ରୁମ (ପ୍ରବାଳ) ଯେଉଁ ଅଧରକୁ ସମ ନ ହୋଇ ସୂଚିରେ ଯାହ ହୃଦୟ ଭେଦନ କରୁଅଛି ସେ ତାହା ନୁହେଁ ଅପମାନଅପେକ୍ଷା ମରଣଶ୍ରେୟ ଏମନ୍ତ ବିଚାରି କୁଣ୍ଠ ମରାଉଛି ୦ । ବନ୍ଧୁଜୀବ (ବନ୍ଧୁଳୀପୁଷ୍ପ) ଅଳ୍ପକେ ମଳିନକୁ ଭଜଇ । ଏଣୁ ତାକୁ ନ ସମ୍ବାଦ (ନ ହେଉ) । ନାଗର ମଙ୍ଗଳରେ ବୈଭବଶୁଭେ ସମ୍ପନ୍ନ (ମଙ୍ଗଳ କାର୍ଯ୍ୟରେ ଶୋଭାପାଏ) ଏମନ୍ତ ଯେଉଁ ୧ସିନ୍ଦୂର ସେ ଅଧରକୁ ସମ ହେବ ବୋଲି ୨ପରେ (ଅନ୍ୟଦ୍ୱାରା) ଦଳିତ ହୋଇଲା ତଥାପି ସମ-ନୋହେ ୩ସମ୍ପୁଟ (ଫରୁଆ) ଭିତରେ ଗୁପ୍ତ ହେଲା (ଲୁଚିଲା) । ୨୧ ।

୨୨ଶ ପଦ—ବକ୍ର (ଧାରକ) ଦଶନ (ଦନ୍ତର) କାନ୍ତି (ଦୀପ୍ତି) ପ୍ରସନ୍ନହରଣେ (ପ୍ରସନ୍ନତାକୁ ହରିବାପାଇଁ) ଚିନ୍ତା କରୁଁ ବିଧାତା ତାହାଙ୍କାଣି ଶାଣେ (କଷଟରେ) ବସାଇ କଣ୍ଠି ପ୍ରମାଣେ ଦଣ୍ଡ ଦେଉଅଛି । ଶୁକ୍ତି (ମୁକ୍ତା ସ୍ଥାନର) ରବ (ଧ୍ୱନି) ଭିତରେ ଉତ୍ପତ୍ତି ନୋହୁଁ । ଦନ୍ତଦାସ ମୁଁ ଏମନ୍ତ ବୋଧାଇ (ବୋଧ କରାଇ) ବିମୁକ୍ତ (ଅମୁକ୍ତ) ହୋଇ ମୁକ୍ତା ବୋଲାଇଲା (ଲୋକେ ତାକୁ ମୁକ୍ତା ବୋଲୁଅଛନ୍ତି) ଏଣେ ତାର (ମୁକ୍ତାର) କି ନାଶ ହେଲା ? (କିଛି ନଷ୍ଟ ନାହିଁ) । ୨୨ ।

---

୦—ସନ୍ତାଂ ମାନେ ମ୍ଳାନେ ମରଣମଥବା ଦୂରଶରଣଂ । ଇତି ହେତୋଃ ।

୧—ସିନ୍ଦୂରଂ ନକ୍ତଚୂର୍ଣ୍ଣକଂ ।

୨—ପରଃ ଶ୍ରେଷ୍ଠାରି ଦୂରାନ୍ୟୋତ୍ତରେ କ୍ଳୀବଂ ତୁ କେବଳେ ଇତି ମେଦିନୀ ।

୩—ସମୁଦ୍ଗ ଶକଃ ସମ୍ପୁଟକ ଇତ୍ୟମରଃ ।

ବାଳିକା ରଦ ଖେଦଦ କୁନ୍ଦକଳିକା ହ୍ରଦ ଫୁଟି । ଗାଳ ଦେଖାଇ ସମାନ ନୋହିବ ଡାଳିମ୍ବଫଳ ଫାଟି । ବୃକ୍ଷରେ ଲମ୍ବେ ଲପନନମ୍ରେ ଏତିକ ଲଭି କଭ । ବ୍ୟର୍ଥ ହେଲା ତଣ୍ଡୁଳମାଳା ନାହିଁ ଫଳକପ୍ରଭ ॥ ବନ୍ଦୀଇ ମିଡ ଶାରଦା ନତ ହୋଇ ବଚନଭୁଲେ । ବାଣୀଗ୍ରହଣ ସେ ସରସ୍ୱତୀ ଦୁହିଙ୍କି ଲୋକେ ବୋଲେ । ବଲ୍ଲକୀ ତାର ଭୁଲ କ ସ୍ୱରପର-ବଶେ ସେ ଜାତ । ବନପ୍ରିୟଙ୍କୁ ଯା କହୁ ଅନ୍ଧାର ଦଶ ସତ ।୨୪

୨୩ଶ ପଦ—ବାଳକା (ହେତୁ ସୀତାର) ରଦ (ଦଶନ) କୁନ୍ଦକଳିକାର (କୁନ୍ଦକେ ରଢର) ଖେଦ (ସନ୍ତାପ) ହୁଦ ହେଲା ତେଣୁ ତାହାର ହୃଦୟ ଫଟିଗଲା ପୁଣି ଦାଡ଼ିମ୍ବଫଳ (ଡାଳିମ୍ବ) ବାଲାର ଦନ୍ତକୁ ସମହେବା-ପାଇଁ ଗାଳକୁ ଦେଖାଇବା ଯଥାପି ସମ ନୋହିବାରୁ ଫାଟଲା, ଲପନନମ୍ରେ (ଅଧୋମୁଖ) ହୋଇ ବୃକ୍ଷରେ ଲମ୍ବିଅଛୁ । ଏହିକମାନ ଲଭକୁ କଭିଲ ଦୋଳାପ୍ରତ ତପସ୍ୟା କଲେ ଦନ୍ତ ସାମ୍ୟକୁ ପାଇବ । । ତଣ୍ଡୁଳମାଳା (ଚଣ୍ଡୁଳଶ୍ରେଣୀ) ବ୍ୟର୍ଥହେଲା । କ ହିଁକି ? କହିଁରେ ଦନ୍ତପ୍ରାପ୍ୟ ଫଳକପ୍ରଭ ନାହିଁ । ଏଣୁ ଉପମ ଯୋଗ୍ୟ ନୋହିଲା । ୨୩ ।

୨୪ଶ ପଦ—ଶାରଦା (ସରସ୍ୱତୀ) ନତ (ନମ୍ର) ହୋଇ ସୀତା ବଚନ ଭୁଲରେ ମିତ ହେଲେ, ତେଣୁ ବାଣୀ (ବଚନ) ଗ୍ରହଣ (ତାଗ ଦେବା) ଏ ଦୁହିଁଙ୍କୁ ଲୋକମାନେ ସରସ୍ୱତୀ ବୋଲୁଅଛନ୍ତି । ବଲ୍ଲକୀ (ବୀଣାର) ସ୍ୱର ସୀତାଙ୍କ ବଚନରତୁଲ୍ୟ ନୁହଇ । କାହିଁକି ? ପରବଶରେ ବୀଣାର ସ୍ୱର ଜାତ ହୁଅଇ (ସ୍ୱେଚ୍ଛାରେ ଜାତ ନ ହୁଏ) ଏଣୁ ସାମ୍ୟ ନ ପାଇଲା । ବନପ୍ରିୟ (କୋକିଳ) ସୀତାଙ୍କ ସ୍ୱର ଶୁଣି ତାକୁ ଅନ୍ଧାର ଦର୍ଶିତାକୁ "୧କୁହୁ ଏମନ୍ତ ଯାହା କହୁଅଛୁ" ସତ ସେ, ମିଥ୍ୟା ନୁହେ ।୨୪।

। —ଫଳାନ ଧୂମସ୍ୟାଧୂସ୍ନାନଧୋମୁଖାନ୍ ସଦାଡମେ ଦୋହଦଧୂପିନ ତ ନେମ ।
ଇତି ନୈଷଧେ ।

୧—କୁହୁଃ ସ୍ତ୍ରୀ କୋକିଳାଳାପେ ନଷ୍ଟେନ୍ଦୁକଳଦର୍ଶୟୋଃ ଇତି ମେଦନୀ ।

ବଡ଼ ମଧୁର ଦ୍ରାକ୍ଷାରୁ ଗିର ସେହୁ ଧୂର୍ଭୂରସ୍ଥାନ । ବର୍ତ୍ତି ଥିଲେ ତା ଭୁଣ୍ଡିକୁ ପିତା ଆନ ଚରିତମାନ । ବବୁଧାଙ୍କ ଅମୃତ ପାନ ହୋଏ କେବଳ ମୁଖେ । ବବେଙ୍କା ! ଯେନ ଶ୍ରବଣେ ପାନ ଯାହା କରନ୍ତ ସୁଖେ ॥

ବଭର୍ତ୍ତି ରସସାର ବଶେଷ ଚବୁକ ଦବ୍ୟପାତ୍ର । ବଧାତାଙ୍କ ଲେ ଚାଦ୍ୟାରେ ଝଳ ନାରଙ୍ଗ କେତେମାତ୍ର । ବନ୍ଧି ବିରେ ଯନ୍ତ୍ରି ପୁରେ ଦେଖା କଣ୍ଠକୁ ନାହିଁ ଲକ୍ଷେ । ବ୍ରତ ବାଞ୍ଛି ତ କପୋତବ୍ରତ ଖଳ୍କୁ ଶିଳାକୁ ଭକ୍ଷେ

---

୨୫ଶ ପଦ—ସେହୁ (ସୀତାଙ୍କ) ଗିର (ବଚନ) ଦ୍ରାକ୍ଷାରୁ (ମଧୁରସଠାରୁ) ବଡ଼ ମଧୁର (ସ୍ୱାଦୁ) ପୁଣି ସେ ଗିର ହିଁ (ନିଶ୍ଚେ) ସୁରୁଷର ସ୍ଥାନ, ତାକୁ ବର୍ତ୍ତି ଥିଲେ ଆନ ଚରିତମାନ ଭୁଣ୍ଡିକୁ ପିତା ଲଗଇ । ବବୁଧ (ଦେବତାଙ୍କର) ଅଶନ (ଭୋଜନ) ଅଟଇ ଏମନ୍ତ ଯେ ଅମୃତ ସେ ମୁଖରେ କେବଳ ପାନ ହୁଏ । ଅପଣତ ବବେକା, ଯେନ ଯେଉଁ ବଚନକୁ ଶ୍ରବଣ ସୁଖରେ ପାନ କରୁଅଛୁ । ଅମୃତାଧିକ ବଚନ ମାଧୁର୍ଯ୍ୟ ଏମନ୍ତ ଫଳିତ ଅର୍ଥ । ୨୫ ।

୨୬ଶ ପଦ—ସୀତାଙ୍କର ଚିବୁକ (ଅଧରୋଷ୍ଠତଳ) ଦବ୍ୟପାତ୍ର (ଉତ୍ତମଭାଜନ) ହେଲା । ତହିଁରେ ବଶେଷ ରସସାର (ରସଶ୍ରେଷ୍ଠ) ଭରିଛି (ପୂର୍ଣ୍ଣ ହୋଇଅଛୁ) ବଧାତାଙ୍କ ଲେ ଚାଦ୍ୟାରେ ଝଳ ଶୋଭିତ ଅଟଇ । ନାରଙ୍ଗ ଉପମାଯୋଗ୍ୟ ହେବାକୁ କେତେମାତ୍ର, ଯେତ ନରଙ୍ଗ (ନାଝୁରଙ୍ଗ ଯାହାର ଏମନ୍ତ ଯେ) । ସେ ସୀତାଙ୍କ କଣ୍ଠକୁ ଲକ୍ଷ୍ୟରେ (ସହୁଣରେ) ଯନ୍ତ୍ରି ପୁରେ (ତନଟକରେ) ଦେଖାନାହିଁ ଏମନ୍ତ ବେଲ ୧ ଯନ୍ତ୍ରିରେଖା ବହୁଅଛୁ । ଏହାଦ୍ୱାରା କମ୍ବୁଗ୍ରୀବା ସୂଚିତ ହେଲା । କପୋତବ୍ରତ (କପୋତସମୂହ) ତାହାଙ୍କ କଣ୍ଠକୁ ସମ ନ ହେବ ବୋଲି ବ୍ରତ ୨ ବାଞ୍ଛି ତନ୍ତର ଶିଳାକଣ (ଗୋଡ଼ି) ଭକ୍ଷଣ କରୁଅଛୁ । ୨୬ ।

---

୧—କମ୍ବୁଗ୍ରୀବା ଯନ୍ତ୍ରିରେଖା ସା ଇତ୍ୟମରଃ ।

ଇଚ୍ଛା କା ଯା ସ୍ପୃହେହ ତୃଟ୍ ବାଞ୍ଛା ଲପ୍ସା ମନୋରଥ ଇତ୍ୟମରଃ ।

ବ୍ୟକ୍ତ ଲକ୍ଷଣାମାନଙ୍କ ଗୁଣା ମୁଖ ମଣ୍ଡଳେ କରି । କଳାପୀ ଶିଖି ଚମରୁ ଦେଖି କହନ୍ତି କେଶ ଗୁରୁ । ବଢ଼ାଇ ଏଣୀ ପୁଚ୍ଛକୁ ଆସି ଉପାନ୍ତି ଚ୍ଛେଦ ଜନେ । ଭାଳ ଏତିକ ମୂଲ୍ୟ ବୋଲି କି ଦେଖାନ୍ତି ଏ ଭୁବନେ ॥
ବିବେକୀ ଯେହି ସେ ନାହିଁ ତୁଳାଇବା ବ୍ୟାଜେ କେଶେ । ବ୍ୟୋମ-ଧୂମକୁ ତାହା ସମକୁ ଲକ୍ଷିବା କି ମାନସେ । ବିରାବ କରି ନୋହେଁ ମୁଁ ସରି ବୋଲି ଉଦୟକାଳେ । ବସ୍ତ୍ରେ ଯେ ବାହୁ ଉପମା ଯହୁଁ ତଳରେ ଛେଦିଦେଲେ । ୨୮ ।

---

୨୭ଶ ପଦ—ବ୍ୟକ୍ତ (ସ୍ପଷ୍ଟ) ଲକ୍ଷଣା (ଉପମା) ମାନଙ୍କ ଗୁଣାକୁ ମୁଖମଣ୍ଡଳ (ସୀତାଙ୍କ ବଦନ ମଣ୍ଡଳର) କରୁଁ । ଶିଖୀ (ମୟୂର) ଚମରୁ (ଚମରୀମୃଗ) ସେ ଦୁହେଁ ୧ କଳାପୀ ହେଲେ (କଳାପ ଭଲେ) । ତାହାଙ୍କ କଳାପ ଧନ ଶୁଣି ଓ ସେ ଦୁହିଙ୍କି ଦେଖି କେଶ (କୁନ୍ତଳର) ଗୁରୁ (ଶୌନ୍ଦର୍ଯ୍ୟକୁ) କହୁଅଛନ୍ତି । ବର୍ହି (ମୟୂର) ଏଣୀ (ଚମରୀମୃଗ) ସେ ଦୁହିଙ୍କ ପୁଚ୍ଛ ଉପାନ୍ତି (ଉପାନ୍ତ) ଏଣି ଏ ଭୁବନେ (ସଂସାରରେ) ତାଙ୍କ "ଏତିକ ମୂଲ୍ୟ" ବୋଲି ଦେଖାଉଅଛନ୍ତି । ସୀତାଙ୍କ କେଶ ଅମୂଲ୍ୟ, ମୟୂରପୁଚ୍ଛ ମୃଗପୁଚ୍ଛ ମୂଲ୍ୟବାନ୍ ଏମନ୍ତ ଫଳିତାର୍ଥ । ୨୭ ।

୨୮ଶ ପଦ—ବିବେକୀ (ବିବେକବାନ୍) ଯେହୁ (ଯେଉଁ ଲୋକ) ସେ ମୟୂରପୁଚ୍ଛ ମୃଗପୁଚ୍ଛ ଦୁହିଙ୍କି ତୁଳିବା ବ୍ୟାଜରେ ସୀତାଙ୍କ କେଶରେ ସମାନ ନ ହେବାକୁ ନାହିଁ ଗୁଣ ଅଛନ୍ତି । ବ୍ୟୋମଧୂମ (ମେଘକୁ) ସୀତାଙ୍କ କେଶ ସମ କରୁ କି ମାନସେ (କି ମନରେ) ଯେ ଲକ୍ଷିବା ? (ଦେଖିବା-ନାହିଁ) । ସେ ଘନ (ମେଘ) ଉଦୟକାଳରେ "ମୁଁ ସୀତାଙ୍କ କେଶକୁ ସରି ନୋହେ" ଏମନ୍ତ ବୋଲି ବିରାବ (ମହାଧ୍ୱନି) କରୁଅଛି । ଉଦୟକାଳରେ କହୁଅଛି, ଏହି ସମସ୍ତ କଥା କି କହିବା ? ୨ଚନ୍ଦ୍ର ସୀତାଙ୍କ କେଶ ଉପମା ହେବାକୁ ତାକୁ ବସ୍ତ୍ର ତଳରେ ଛେଦିଦେଲେ ଜଣାଇଲେ କି ସୀତାଙ୍କ କେଶ ଉପମ ଯୋଗ୍ୟ ନୁହେଁ । ୨୮ ।

---

୧ — କଳାପଃ ସଦ୍‌ବେଦନ ମିତ୍ୟମରଃ । ୨— ତମସ୍ତୁ ରାହୁଃ ସ୍ୱର୍ଭାନୁ ରିତ୍ୟମରଃ

ବିକର୍ତ୍ତନଜା ଯେ ସମ ମଜ୍ଜା ଯାଚ କୁଞ୍ଚିତେ ସ୍ନେହୀ । ବିଷ ଯେ କଳା ସଙ୍ଗମେ ମେଳା କାଳେ କାଳୀୟ ବନ୍ଧୁ । ବିନାଶେ ଆଶା ହୃଦେଶେ ଆଷାଢ଼ ଯେ ଆବିଳଶ୍ରଦା । ବିଶ୍ୱଲୋଚନ ଚେତନ ଯେନ ତମସି ନୋହେ କଦା । ୨୯ ।

ବିବର୍ଣ୍ଣ, ଭୃଙ୍ଗ ତମାଳଦଳ ବୋଲି କି ପୁରସ୍କାର । ଦେଖିଲେ ପରିଚେ ଦେ ଧରି ଝଡ଼ଇ ବାରମ୍ବାର । ବିଷ୍ଣୁପଦଙ୍କ ମାଳତୀ ବନ୍ଧି ଚିକୁର ତୁଳ ନୁହେ । ବିହେ ତା ଧୂଳିଧୂସର କରି ବାତ କି ଗର୍ଜେ ନୋହେ । ୩୦ ।

---

୨୯ଶ ପଦ—ବିକର୍ତ୍ତନଜା (ସୂର୍ଯ୍ୟ-ତନୟା-ଯମୁନା) ସୀତାଙ୍କ କେଶ କୁଞ୍ଚିତସମାନ ହେବ ବୋଲି ମଜ୍ଜା (ମଜ୍ଜ) କରି ଯାଚ (ଲଜ୍ଜା) ଦ୍ୱାରା କୁଞ୍ଚିତରେ ସ୍ନେହ ହେଲା । ବିଷ (ଜଳକୁ) ଜମ୍ବୁର ସଙ୍ଗମରେ କଳା ହେଲା । ସେ (ଯମୁନାରେ) କାଳୀୟ (ସର୍ପର) ମେଳ ହୋଇ ସ୍ନେହବନ୍ତ ହେଲା । ଏହିପରି ଉଦ୍ୟମ କରି ମଜ୍ଜା କରନ୍ତେ ଆଷାଢ଼ମାସ ପ୍ରବେଶ ହେଲା । ଯମୁନା ନଦୀ ଆବିଳ ହେବା, ସେ ମାସ ଆବିଳତ୍ୱ ସଂସର୍ଗରେ ହେଲା । ତେଣୁ ଯମୁନାର ଆଶା ବିନାଶ ହେଲା । ତମ (ଅନ୍ଧକାର) ବିଶ୍ୱଲୋଚନ-ଚେତନ (ସଂସାର ଜନଙ୍କର ଚେତନ) କଦାପି ନୁହଇ । ତାକୁ କାହିଁକି ବୋଲିବା ।

୩୦ଶ ପଦ ସୀତାଙ୍କ କେଶ ବିବର୍ଣ୍ଣ, ଭୃଙ୍ଗରେ ତମାଳ ଦଳ (ପତ୍ର) ବୋଲିବାର କି ପୁରସ୍କାର ? (କିଛି ପୁରସ୍କାର ନାହିଁ) କିଂବା ବିବର୍ଣ୍ଣ, ସେ ଭୃଙ୍ଗର ତମାଳ ଦଳେ ସମାନ ବୋଲିବାର କି ପୁରସ୍କାର ? । ଦେଖିଲେ ସେ (ଲୋକ) ପରିଚେ (ନିକଟରେ) ଧରି "ଅର୍ଥ କି" ବୋଲି ବାରମ୍ବାର (ପୁନଃ ପୁନଃ) ଝଡ଼ଇ ଏଣୁ ସେ ଭୃଙ୍ଗ ନବରେ ସୀତାଙ୍କ କେଶ ସହିତ ତୁଳିକ ଓ ବରାବର । ସୀତାଙ୍କ ଚିକୁର ତୁଳ ହେବା ସେ ବଦରେ ବିଷ୍ଣୁପଦ (ଆକାଶ) ମାଳତୀ (ମାଳତୀ ଲତାକୁ) ବନ୍ଧିଲା ଦ୍ୱ (ନଷ୍ଟ) । ବାତ (ପବନ) ଧକ୍କାରେ ଧୂସର (ଧୂମ୍ରବର୍ଣ୍ଣ) କରି ଉହେ । ଏ ଆକାଶ ସୀତାଙ୍କ କେଶୋପମା ନୁହେ ଏମନ୍ତ ବୋଲି ଗର୍ଜୁଅଛି କି ? ଏମନ୍ତ ତର୍କ ହୁଅଇ ।୩୦।

ବହିଲେ ମାଳ ଗଳେ ସେ ଚୂଳ ବାଞ୍ଛାରେ ମହାଦେବେ । ବିଗୁଣି ଉମା ନୋହେ ସେ ସମା ବେଢ଼ାଇ ବାହୁ ଭାବେ । ବିଜିତ ସେ ଯେ ସୀତା ସୌନ୍ଦର୍ଯ୍ୟେ ଏମନ୍ତ ଯେଣୁ ଚିତ୍ତ । ବନ୍ଦେ ଗଉରୀପଦରେ କରି ସୁନ୍ଦରୀମଣି ମିତ । ୩୧ ।

ବାରିତ ସୀମା ବାଡ଼ ଉପମା ଅଳକା ମୁଖ କେଶେ । ବେଳାରେ ବ୍ୟାପି ଗଙ୍ଗାର ତମ୍ବୀ ମୂକ, ତରିବା ଆଶେ । ବୋଧ ରାଘବେ ଏ ଦେଖିଥିବେ ଏତିକ ବାତାୟନେ । ବତିଶପଦେ ଏ ଗ୍ରନ୍ଥ ଛନ୍ଦେ ଉପେନ୍ଦ୍ର ତୋଷମନେ । ୩୨ ।

---

୩୧ଶ ପଦ—ମହାଦେବ (ମହେଶ) ସୀତାଙ୍କ କେଶ ଚୂଳ ବାଞ୍ଛାରେ ଗଳେ (କଣ୍ଠରେ) ମାଳରୂ ବହିଲେ । ଉମା (ପାର୍ବତୀ) ଚୂଳେ ବିଗୁଣିଲେ ସୀତାଙ୍କ କେଶସମାନ ହେଲା ଏ ? ପାର୍ବତୀ ବୋଇଲେ ସେ ସମାନ ଏ ନୁହଇ ଏମନ୍ତ ବୋଲି ଭାବରେ ବାହୁ ଦ୍ୱୟ ଗଳାରେ ବେଢ଼ାଇଲେ । ସେ (ପାର୍ବତୀ) ସୀତାଙ୍କ ସୌନ୍ଦର୍ଯ୍ୟରେ ବିଜିତ (ପରାଜିତ) ହେବ ଏମନ୍ତ ଚିତ୍ତରେ ଯେଣୁ ଗୌରୀପଦରେ କରି ସୁନ୍ଦରୀମଣି (ସୀତାଙ୍କର) ମିତ ହୋଇ ବନ୍ଦିତ ହୋଇ ଅଛନ୍ତି । ସୀତା ଗୌରୀ ବୋଲି ପାର୍ବତୀ ଗୌରୀ ନାମ ବହି ମତ ହୋଇ ଅଛନ୍ତି ଏମନ୍ତ ଭାବ । ୩୧ ।

୩୨ଶ ପଦ—ମୁଖ କେଶ ଏ ଦୁହିଁଙ୍କର ଅଳକା (ଚୂର୍ଣ୍ଣକୁନ୍ତଳ) ସୀମା ବାରି ବାଡ ଉପମା ଅଟେ; (ସୀମା ବାଡସଦୃଶ) । ଏଠାରୁ କେଶ, ଏଠାରୁ ମୁଖ, ଏମନ୍ତ ସୀମା ବାରିତ ବାଡ଼ ସେ ଏ ଫଳିତାର୍ଥ । ଏମନ୍ତେ ସୀତାଙ୍କ ବଦନାଦି ସୌନ୍ଦର୍ଯ୍ୟ କହୁଁ କହୁଁ ଗଙ୍ଗାର ବେଳା (ତଟରେ) ବ୍ୟାପି ବାରୁ, ତପୀ (ବିଶ୍ୱାମିତ୍ର) ତରିବା ଆଶରେ ମୂକ ହେଲେ (ତୁନି ହେଲେ) ଅର୍ଥାତ୍ ଇତରବସ୍ତୁ ବିଶେଷ ନ କହିଲେ । ରାଘବେ (ରାମଚନ୍ଦ୍ରଠାରେ) ବୋଧ ହେଲା । ଏତିକ ବାତାୟନେ (ଗବାକ୍ଷରେ) ଏ ଦେଖିଥିବେ । ସବାଙ୍କ ସାକ୍ଷ ଦେଖି ନ ଥିବେ । ଉପେନ୍ଦ୍ର ନାମା କବି ତୋଷ ମନାରେ (ସନ୍ତୋଷଚିତ୍ତରେ) ଏ (ଅଷ୍ଟମ) ଗ୍ରନ୍ଥକୁ ବତିଶ ପଦରେ ଛନ୍ଦିଲେ । ୩୨ ।

# ନବମଛାନ୍ଦ ।

ଗଗ ଗ୍ଭେଣି ।

'ବିତଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ ହରେ ସୁର-ବର ତାପ ରୁଚୁଧାର ସେ । ବହେ ମକର-କେତନ ଉଚ୍ଛନ୍ନ ରଙ୍ଗ ସମାନ ପୂରିତ ହୋଇଛି ପୁଣି ଅଶେଷ ରସେ । ବନ୍ଦ୍ୟ ହୈମବତୀ ପଦରେ । ବିଷ କଣ୍ଠ ତୋଷଦାମୀ ବେନ ମତରେ । ୧ ।

---

ନବମଗ୍ରନ୍ଥ

୧ମ ପଦ—ବଶି ମିତ୍ର ଓ ରାମ ଲକ୍ଷ୍ମଣ ଚନ୍ଦ୍ରଜଣ ଗଙ୍ଗାତଟରେ ପ୍ରବେଶ ହୋଇ ଅତଳ ସୁତଳ ଦୁହିଙ୍କି ଲଂଘି ବିତଳ ଆଲିଙ୍ଗନ କରି ଶୋଭନ ହୋଇ ଥିବା ଜାହ୍ନବୀ (ଗଙ୍ଗାଙ୍କୁ) ଦେଖିଲେ, ଏହ ଦ୍ୱାରା ଅତ୍ୟନ୍ତ ଗମ୍ଭୀରତ୍ୱ ସୂଚିତ ହେଲା । ସେ (ଗଙ୍ଗା) ୨ ରୁଚୁଧାର (ଶଚୀ) ଶଚୀ ଯେଉଁପ ସୁରବର (ଇନ୍ଦ୍ରଙ୍କ) ତାପ (ସ୍ମରତାପ) ହରଇ ଏ ଗଙ୍ଗା ରୁଚୁ (ମନୋହର) ଧାର (ପ୍ରବାହ)ରେ ସୁର (ସୂର୍ଯ୍ୟଙ୍କ) ସମ୍ବନ୍ଧ ବରତାପ (ମହ ସନ୍ତାପ) ସ୍ନାନାଦ ଦ୍ୱାରା ହରଇ । ପୁଣି ରତ (ସ୍ମରପ୍ରିୟା) ସମାନ ଅଟନ୍ତି । ରତ ଯେଉଁପ ମକର କେତନ (କନ୍ଦର୍ପ) କୁ ଉଚ୍ଛନ୍ନ ବଧାନ କରେ, ଅଶେଷ (ବହୁତ) ରସ (ଶୃଙ୍ଗାର ରସରେ) ପୂରିତ ଅଟେ, ଗଙ୍ଗା ତଦ୍ରୂପ ମକର (ଜଳଚର ଜନ୍ତୁଙ୍କର) କେତନ (ଗୃହ) ଈଉ ଉଚ୍ଛନ୍ନ (ଦ୍ରୁତବେଗ) ବହେ । ଅଶେଷ ରସରେ (ଅପରିମିତ ଜଳରେ) ପୂରିତ ଅଟନ୍ତି । ପୁଣି ୩ହୈମବତୀ ପଦରେ ବନ୍ଦ୍ୟ (ବନ୍ଦ୍ୟମାନ ଅଟନ୍ତି) ହୈମବତୀ (ପାର୍ବତୀ) ୪ ବିଷକଣ୍ଠ (ନୀଳକଣ୍ଠ)

---

୧—ଅତଳଃ ସୁତଳଂ ଚୈବ ବିତଳଂ ଚ ଗଭସ୍ତିମତ୍ ।

ତଳଂ ସୁତଳପାତାଳେ ବଚୌକଂ ସ୍ୱଭ୍ରମସ୍ତିସ୍ତ୍ୱାମିତି ବିକାଣ୍ଡଶେଷଃ ।

ପକ୍ଷାନ୍ତରେଽପି—ଅତଳ ବିତଳ ରସାତଳ ତଳାତଳ ମହାତଳ ପାତାଳଭେଦାଃ ସପ୍ତଲୋକାଃ ।

୨—ସୁନ୍ଦରଂ ରୁଚିରଂ ଚାରୁ ସୁଷମଂ ସାଧୁ ଶୋଭନଂ ଇତ୍ୟମରଃ ।

୩—ହୈମବତ୍ୟୋଽବତୀର୍ଣ୍ଣା ହୈମବତୀ ।

୪—ବିଷଂ ମୃଣାଳେ ଗରଳେ କର୍ବୁରେ କଟୁଗ୍ରନ୍ଥେ ଇତି କୋଷଃ ।

ବିଷ୍ଣୁପଦୀ ବିଷ୍ଣୁପଦ ଭଳି ର ଭେଦ ଶବଦ ତରଣୀର ଗତାଗତ ତହିଁ ଉଚିତ । ବିଶାରଦ ସେ ସାମନ୍ତ ମଣ୍ଡଳେ ଦାସ ସେବିତ ତାଙ୍କୁ ନ ଶୁଣନ୍ତେ ରଘୁନାଥ କଥିତ । ବିଷଧର ପ୍ରାପ୍ତେ କି ତୁହି । ବେଳେ ନେଇ ତାଳ ଶୁଣ ଏଦାର ନୋହି । ୨ ।

ବଧିର ନୁହଇ ବୀର ବୋଇଲା ତହିଁ ଧୀବର ଶୁଣିଲଣି ପଥରେ ପଥର ଅବଳା । ବାଳ ପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ

---

ତାଙ୍କର ତୋଷଦାୟୀ ଅଟନ୍ତି । ହୈମବତୀ (ଗଙ୍ଗା) ବିଷକଣ୍ଠ (ହଂସ) ଆହ୍ଲାଦରେ ଏବଂ ହରଙ୍କର ଗରତାପ ହରିବାରେ ତୋଷଦାୟୀ ଅଟନ୍ତି । ଏମନ୍ତେ ବେଳ ମତରେ (ଦୁଇମତରେ) ବିଷକଣ୍ଠ ତୋଷଦାୟୀ ଅଟନ୍ତି ଏ ପଦ ଶ୍ଳେଷ ହେଲା । ୧ ।

୨ୟ ପଦ—ବିଷ୍ଣୁପଦୀ ବିଷ୍ଣୁପଦ ଏ ଦୁଇ ଶବଦର ଇକର ମାତ୍ର ଭେଦ ଅଛି, ଅନ୍ୟସବୁ ସମାନ, ଏଣୁ ବିଷ୍ଣୁପଦୀ [ଗଙ୍ଗା] ତହିଁରେ ୧ ତରଣି-[ନୌକା] ଗତାଗତ ହେବା ଉଚିତ ଅଟଇ । ବିଷ୍ଣୁପଦ [ଆକାଶ] ତହିଁରେ ତରଣୀ [ସୂର୍ଯ୍ୟଙ୍କର] ଗତାଗତ ହେବା ଉଚିତ । ସେ [ତରଣି] ୨ ସାମନ୍ତ [ଅଧୀଶ୍ୱର] ମଣ୍ଡଳରେ ୩ ବିଶାରଦ—[କୁଶଳ] ହୋଇଅଛି । ସାମନ୍ତ ସେହିରୂପ ଦାସ [ଭୃତ୍ୟ] ଦ୍ୱାରା ସେବିତ [ସେବ୍ୟ], ତରଣି ତଦ୍ରୂପ ଦାସ [କୈବର୍ତ୍ତ] ଦ୍ୱାରା ସେବିତ ତାଙ୍କୁ [ଧୀବରଙ୍କୁ] ବିଶ୍ୱମିତ୍ର କହନ୍ତେ ସେ ନ ଶୁଣନ୍ତେ ରଘୁନାଥ କହିଲେ ତୁହି ବିଷଧର [ସର୍ପ] ପ୍ରାପ୍ତେ କି ? ତହିଁଆର୍ଥେ, ସେ [ସର୍ପ] ନେଇ ତାଳ ପଦ ଶୁଣଇ ତୁ ତଦ୍ରୂପ ହେଦାର ନୋହି ନେଇ ତାଳ ବେଳେ [ଅରେ] ଶୁଣ । ୨ ।

୩ୟ ପଦ—ଧୀବର (କୈବର୍ତ୍ତ) ବୋଇଲା ହେ ବୀର ମୁଁ ବଧିର ନୁହଇ ଶୁଣିଲଣି 'ପଥର' (ସଂଗ୍ରହ) ପଥର (ପାଷାଣ) ତୋହର ଚରଣରୁ ଅବଳା,

---

୧—ତରଣି ଦ୍ୟୁମଣୌ, ପୁଂସି ଭୂମାସ୍ତ୍ରୀ ନୌକୟୋଃ ସ୍ତ୍ରିୟାମିତି ମେଦିନୀ ।
୨—ସାମନ୍ତଃ ସ୍ୟାଦଧୀଶ୍ୱରଃ ।
୩—ବିଶାରଦଃ ପଣ୍ଡିତେ ଚ ଧୃଷ୍ଟେ ଇତି ମେଦିନୀ ।

ନଉକା ନାୟିକା ହେଲେ ବୁଡ଼ିବ ଭେଳା । ବୃତ୍ତି ଏ ମୋ ପୋଷେ କୁଟୁମ୍ବ । ବସାଇ ନ ଦେବ ପାଦ ନ ଧୋଇ ନାବ ।୩।

ବଢ଼ାଇ ଦେଲେ ପଥୁର ସ୍ୱବଗ୍ରାହ୍ୟ ରଘୁବୀର ପଦ୍ମରେ କ୍ଷାଳିତ କରି ବସନେ ପୋଛୁ । ବ୍ରହ୍ମାରେ ଧୌତ ଯେ ପଦ ନୋହୁଛି ଶିବ ବିଷାଦ ନପାଇ ଚରଣାମୃତ ପାନକୁ ଇଚ୍ଛି । ବଜ୍ଞାମୀ କୈବର୍ତ୍ତ ଧୋଇଲା । ବିଶ୍ୱେ ପତିତପାବନ ନାମ ରହିଲା ।୪।

---

ପଡ଼ି ଅହଲ୍ୟା ହେଲେ" ଏଣୁ ଆଶଙ୍କା (ଭୟ) ଧରୁଅଛି (ନାଉରିହୋଇଅଛି) । କାହିଁକି ? ନୌକା (ନାବ) ନାୟିକା (ସ୍ତ୍ରୀ) ହେଲେ ୧ଭେଳା (ଉଡ଼ୁପ) ବୁଡ଼ିବ ଅଥବା ଭେଳା (ସଂଖାଳି) ଧରିବ । ଏ ନୌକା ମୋହର ୨ ବୃତ୍ତି (ଜୀବନୋପାୟ), ଏହି ଦ୍ୱାରାଁ ମୁଁ କୁଟୁମ୍ବ ପୋଷୁଅଛି, ଏଣୁ ତୁମ୍ଭର ପାଦ (ଚରଣଦ୍ୱୟ) ନ ଧୋଇ ନାବରେ ବସାଇ ଦେବ ନାହିଁ, କାହିଁକି ନା କାଷ୍ଠ ପାଷାଣରେ କିଛି ଭେଦ ନାହିଁ ।‡ ।୩।

୪ର୍ଥ ପଦ—କୈବର୍ତ୍ତର ଏମନ୍ତ ଗୁଢ଼ଗର୍ଭବଚନ ଶୁଣି ସ୍ୱବଗ୍ରାହ୍ୟ ରଘୁବୀର (ରାମ) ପଦ୍ମର (ପାଦ) 'ଧୋଇବାକୁ ଦିଅ" ବଢ଼ାଇଦେଲେ । ତାଦେଖି କୈବର୍ତ୍ତ ପଦ୍ମରେ (ଜଳଦ୍ୱାରା) କ୍ଷାଳିତ (ଧୌତ) କରି ବସନରେ ପୋଛି ଦେଲା । ଚରଣାମୃତ (ପାଦୋଦକ) ପାନକୁ ଇଚ୍ଛି (ଇଚ୍ଛା କରି) ବ୍ରହ୍ମାରେ (ବ୍ରହ୍ମାଦ୍ୱାରା) ଧୌତ ନୋହୁଅଛି, ଏମନ୍ତ ଯେଉଁ ପଦ ନ ପାଇ (ଧୌତ କରିବାକୁ ନ ପାଇ) ଶିବ (ମହାଦେବ) ବିଷାଦ (ଚିନ୍ତା) କରୁଅଛନ୍ତି, ଏମନ୍ତ ଯେଉଁ ବିଷ୍ଣୁ ପଦ ତାହାକୁ ବଜ୍ଞାମୀ (ଅଜ୍ଞାନୀ) କୈବର୍ତ୍ତ ଧୋଇଲା, ତେଣୁ ବିଶ୍ୱେ (ସଂସାରରେ) ରାମଙ୍କର ପତିତପାବନ ନାମ ରହିଲା ।୪।

---

୧—ଉଡ଼ୁପଂ ତୁ ପ୍ଲବଃ କୋଲ ଇତ୍ୟମରଃ ।

୨—ବୃତ୍ତିର୍ବର୍ତ୍ତନ ଜୀବନେ ଇତ୍ୟମରଃ ।

‡—କ୍ଷାଳୟାମି ତବ ପାଦପଙ୍କଜଂ ନାଥ ଦାରୁଦୃଷଦୋଃ କ ମନ୍ତରଂ । ମାନୁଷୀ ଚରଣରେଣୁରସ୍ତିତେ ପାଦସ୍ପୋଦିତ କଥା ପ୍ରଥୀୟସୀ । ଅଧ୍ୟାତ୍ମ ରାମ ସ୍ତଣେ

ବିଞ୍ଚି ପଲ୍ଲବ ନାବରେ ପଦ ବିକଳ୍ପ ମନରେ ପ୍ରକ୍ଷାଳି ପରେ
ଶୋଇ ବସାଇ । ବିଶ୍ୱାମିତ୍ରଙ୍କୁ ଶ୍ରୀରାମ ପଚାରିଲେ ଗଙ୍ଗାନାମ ଭଗୀ-
ରଥୀ କମ୍ପା ହେଲା କହ ଗୋସାଇଁ । ବିଷ୍ଣୁ ନଖକୋଣେ ଏ ଥିଲା ।
ବାମନାବତାରେ ଭଗୀରଥ ଆଣିଲା ।୫।

ବିଧିପୂର୍ବ କରି ଋଷି ସମସ୍ତ ଚରିତ ଭାଷି ତରଣୀ ତ ତ୍ୱରିତ ଯାଇଁ
ଲାଗେ କୂଳର । ବହୁ ଶ୍ରୀ ହେଲେ ମାର୍ଗର ମାର୍ଗଣକମାଣଧରମାର୍ଗଣ
କୋପଲେଶକୁ କନ୍ଦର୍ପ ଯାଚ । ବିଦେହ ମଣ୍ଡଳେ ପ୍ରବେଶ । ବାର-
ବେନ ପୁର ସାର ମୋହନପୁଂସ ।୬।

---

୫ମ ପଦ—ଶ୍ରୀରାମ ପାଦରେଣୁ ଧୌତ କାଳେକେଁ ପଦନ୍ୟାସରେ ନୌକା ନାରୀ ହେବ ଅବା ଏମନ୍ତ ମନରେ ବିକଳ୍ପ (କଳ୍ପନାକରି) ନାବରେ ୧ପଲ୍ଲବ (କିଶଳୟ) ବିଞ୍ଚି (ବିଛାଇ) ପ୍ରକ୍ଷାଳି ପରେ ଶୋଇ ରଘୁନନ୍ଦନଙ୍କୁ ବସାଇଲା । ନଦୀପାରରେ ଶ୍ରୀରାମଚନ୍ଦ୍ର ବିଶ୍ୱାମିତ୍ରଙ୍କୁ ପଚାରିଲେ, ହେ ଗୋସାଇଁ (ଗୁରୁଙ୍କୁ ଗୋସାଇଁ ବୋଲନ୍ତି) ଗଙ୍ଗାଙ୍କ ନାମ ଭାଗୀରଥୀ କାହିଁକି ହେଲା ? ଆପଣ କହନ୍ତୁ । ବିଶ୍ୱାମିତ୍ର କହିଲେ,ଏ ଗଙ୍ଗା ବିଷ୍ଣୁ ନଖକୋଣରେ ବାମନାବତାରରେ ଥିଲେ । ଭଗୀରଥ (ସୂର୍ଯ୍ୟବଂଶୀୟ ରାମ ପୂର୍ବପୁରୁଷ) କପିଳକୋପାନଳଦଗ୍ଧ ଆପଣା ବଂଶ ଉଦ୍ଧାରିବା ଅର୍ଥେ ମର୍ତ୍ତ୍ୟକୁ ଆଣିଥିଲେ ଏଣୁ ଗଙ୍ଗା ଭାଗୀରଥୀ ବୋଲାଇଲେ । ୫ ।

୬ଷ୍ଠ ପଦ—ଏରୂପେ ଋଷି ବିଧିପୂର୍ବକ ଗଙ୍ଗା ଆଣିବା ଚରିତ ସମସ୍ତ ଭାଷି (କହିଲେ) । ଏହି କାଳରେ ତ୍ୱରିତ (ଶୀଘ୍ର) ତରୀତ (ନାବ) କୂଳ (ତଟରେ) ଲାଗିଲା । ମାର୍ଗଣ (ଶର) କମାଣ (ଧନୁ) ଏ ଦୁଇ ଧାରଣକାରୀ ରାମ ମାର୍ଗରେ ବହୁ ଶ୍ରୀ ହେଲେ ଗତକରି ଗଲେ । ଯାହାଙ୍କ କୋପଲେଶକୁ କନ୍ଦର୍ପ ମାର୍ଗଣ (ଅନ୍ୱେଷଣ) କରୁଅଛି—ମାଗୁଅଛି । ବାରବେନ (ଚତୁର୍ଦ୍ଦଶ) ପୁରରେ ସାର (ଶ୍ରେଷ୍ଠ) ଅର୍ଥାତ୍ ମୋହନପୁରୁଷ ଅଟନ୍ତି ଏମନ୍ତ ଯେ ରାମ ବିଦେହ ମଣ୍ଡଳରେ ପ୍ରବେଶ କଲେ ।

---

୧—ପଲ୍ଲବୋଽସ୍ତ୍ରୀ କିଶଳୟ ମିତ୍ୟମରଃ ।

ବିପଣିରେ ଥିଲେ ଜନେ ଭାବନା କଲେ ଦର୍ଶନେ ଆଗତ କି
ଧାତା ହର ମଧ୍ୟରେ ହରି । ବିଭଞ୍ଜନ ଶିବଧନୁ କରି ମରକତତନୁ
ବଶ୍ୟ ହେବେ ସୀତା କିଂଶ୍ରେ ଜନ୍ମିଛି ଶ୍ରୀ । ବଶ ଏ ରମ୍ୟରେ ମାନସ ।
ବିଜେ ରାମ ଅଦଭୂତ ଶୁଣିଭେ ଏ ଘୋଷ ।୭।
ବିଭୁମୂ ଏ ଶବ୍ଦ ତତ୍ତ୍ୱ ରାଜା ହୋଇଗଲେ ଶ୍ରୁତେ ନାଶ ଏ ଭାକିଲେ
କେଞ୍ଚି ସେ ରୂପବନ୍ତ । କଳଇ କବି ମାନସ ନାମ ପଟ୍ଟେତ ପ୍ରକାଶ

୭ମ ପଦ—୧ ବିପଣି ( ପଣ୍ୟବୀଥିକା ) ରଚ୍ଛରେ ସ୍ଥିତ ଜନମାନେ ବିଶ୍ୱାମିତ୍ର ରାମ ଓ ଲକ୍ଷ୍ମଣଙ୍କୁ ଦର୍ଶନ କରନ୍ତେ ମନରେ ଭାବନା କଲେ 'ଆଗରେ" ଧାତା, ମଧ୍ୟରେ ହରି ପଛରେ ହର, ଏରୂପେ ତିନମୂର୍ତ୍ତି ଆସିତ ହେଲେ କି ?' ମରକତ *( ମଣି ) ପରି ୨ ତନୁ ( ମୂର୍ତ୍ତି ) ଯାହାଙ୍କର ଏବମ୍ଭୂତ +ହରି ଏ, ଶିବଧନୁ ( ହରଧନୁ ) ବିଭଞ୍ଜନ କରି ସୀତା କି ( ତାଙ୍କୁ ଥାଇ) କ୍ଷେ ଶ୍ରୀ (ଲକ୍ଷ୍ମୀ) ଜନ୍ମିଅଛି, ତାଙ୍କୁ ବଶ୍ୟ ହେବେ । ଏମନ୍ତ ରମ୍ୟ (ମନୋରମରୂପେ) ଜନଙ୍କ ମାନସ ବଶ ହେଲା । ଅଦ୍ଭୁତ ରାମଚନ୍ଦ୍ର ବିଜେ କଲେ ଏମନ୍ତ ଘୋଷ ଶୁଣିଲେ ।୭।

୮ମ ପଦ—ରାମ ବିଜେ କଲେ ଏମନ୍ତ ଶ୍ରୁତ ହୁଅନ୍ତେ (ଶୁଣନ୍ତେ ) ବିଭୁମୂଁ (ବିଭୁମରୁ) ସମସ୍ତଙ୍କ ତତ୍ତ୍ୱରେ 'ରା' 'ଜା' ହୋଇଗଲା । ରା ସ୍ଥାନରେ ଜା ହୁଅନ୍ତେ 'ଜାମ' ପଦକୁ ଯେଉଁ ନାଶ ଏ କଲାଲେ ସେ (କାମ) ରୂପବନ୍ତ କେଉଁ (କିରୂପେ) ହେଲା ? କାମ ଅରୂପ, କବିର ମାନସ (ଚିତ୍ତ) କଳାକୁ, ନାମ (ରାମ) ପଛରେ ପ୍ରକାଶ ପାଇଅଛି 'ଚନ୍ଦ୍ର' (ସଂଯୁକ୍ତ ଚନ୍ଦ୍ର ) ହେଲା ।୧ରାଜା ତ ହୋଇଗଲେ ଏଣୁ ଅର୍ଦ୍ଧଚନ୍ଦ୍ର ହେବାର ଉଚିତ ହେଲା ।

୧—ବିପଣିଃ ପଣ୍ୟବୀଥିକାତ୍ୟମରଃ ।
୨—ସ୍ତ୍ରୀ ଯ୍ୟାଂ ମୂର୍ତ୍ତିସ୍ତନୁ ସ୍ତନୁ ଶତ୍ୟମରଃ ।
+ କେହି ଜନେ ରାମ ହରି ବୋଲି କିରୂପେ ଜାଣିଲେ ଯଥା—
ନୈବାତ୍ରଭ ଚୂର୍ଣ୍ଣଶ୍ରୀଃ ପ୍ରଅଯୂଷ ପଙ୍କେଷୁ ଜଗୂଢ଼ମପି ।
ବସ୍ତୁ ପିହିତାମପି ପ୍ରତ୍ୟଞ୍ଜ ବ୍ୟନକ୍ତି କସ୍ତୁରିକା ଗନ୍ଧଂ । ଇତି ହଦାଗଧର୍ମ ଧବେ
୧—ପଣ୍ଡିତ୍ରିକା ନଶାକରେ ଇତ୍ୟମରଃସମ୍ପର୍ଶ୍ଚୈନ୍ଦୌ ଚଯୌଗିକ ଇତିମେଦିନୀ

ଅଖଣ୍ଡଚନ୍ଦ୍ର ଏ ହୋଇବାର ଜଣାଉ । ବୋଧିବେ ନୟନ-ଚକୋରୀ ।
ବିଶେଷେ ଶୋଭା ପୀୟୂଷ ପାନ ବିସ୍ତାରି ।୮।

ବିଷୟୁ ଜବ ଅନ୍ତର ସେ ପାନ୍ତ ହନ୍ତ ପ୍ରକାର ମଣି ରମଣୀ
ବାହାର ହନ୍ନ ଦ୍ୱିଗୁଣ । ବିନାଶି ଗୁରୁ ଗୌରବ ତାହାଙ୍କର ସେହ୍ନ
ଭାବ ହୃଦତରୁ କରି ନ ପାରିଲେ ବାରଣ । ବେଶେ ଥିଲେ
ଯେତେକ ନାରୀ । କିହେ କେ ନେହେ କଜ୍ଜଳ ଛଳେ କସ୍ତୁରୀ ।୯।

ବକ୍ଷସ୍ଥଳେ କେଉଁ ବାଳା କଙ୍କିଣୀକି ଲମ୍ବାଇଲା ଗୃମରୀକ ଖଞ୍ଜିଲା
ମଧ୍ୟଦେଶରେ । ବେଶକାରୀ କେ କାହାର ସିନ୍ଦୂର ଦେଲା ପୟୁରୁ ତତ ।

ଶୋଭାରୂପ ପୀୟୂଷ ରାଶି ପାନକୁ ବିସ୍ତାରି ଜନ୍ମ ନଇ ନୟନରୂପ ଚକୋରୀକୁ ବୋଧ କରନ୍ତେ । ବିଶେଷରେ (ଚକୋରୀ ବୋଲିବାରୁ ପୀୟୂଷ ପାନ ରୁଚି ଅଧିକ ରହିଲା )+। ଜନମାନେ ଏହାଙ୍କ ଶୋଭାକୁ ଦେଖି ପରମାନନ୍ଦକୁ ଭଜିବେ ଏମନ୍ତ ଭାବ ।୮।

୯ମ ପଦ ରମଣୀ (ସ୍ତ୍ରୀମାନେ) ବିଷୟୁକୁ ଅନ୍ତର ଦେଶ ପ୍ରାନ୍ତକୃତ 'ବିଷୟୁ ଶବ୍ଦର ପ୍ରାନ୍ତ ଯେ 'ୟୁ' କାର ନାଶ କରନ୍ତେ 'ବିଷ' ରହିଲା'' (ବିଷୟୁକୁ ବିଷପ୍ରକାର ମଣି) ବାହାର ହେଲେ । କାମ ଦୋଷ ଶୁଣି ଛନ୍ନ ହୋଇଥିଲେ, ରାମ ବିଜେ କଲେ ଶୁଣି ଦ୍ୱିଗୁଣ ଛନ୍ନ ହେଲେ । ସେ ରମଣୀ-ଙ୍କର ଗୁରୁଜନଙ୍କଠାରେ ଥିବା ଗୌରବକୁ ବିନାଶିଲେ । ସେହି ଗୁରୁଜନଙ୍କର ଛନ୍ନ ଭାବ ହୃଦତ ହେବାରୁ ସ୍ତ୍ରୀମାନଙ୍କୁ ବାରଣ କରି ନ ପାରିଲେ,-ପରସ୍ପରେ ଛନ୍ନ ହୋଇ କେହି କାହାକୁ ବାରଣ କରି ନପାରିଲେ, ଆଉ ଯେତେ ନାରୀ ବେଶରେ ଥିଲେ ତା ମଧ୍ୟରେ କେଉଁ ସ୍ତ୍ରୀ କଜ୍ଜଳ ଛଳରେ କସ୍ତୁରୀକି ନେତ୍ରରେ ବୋହିଲା (ଲଗାଇଲା) ÷ ।୯।

୧୦ମ ପଦ—କେଉଁ ବାଳା (ଷୋଡ଼ଶୀ) ବିଭ୍ରମରୁ ବକ୍ଷସ୍ଥଳେ (ବକ୍ଷ ପ୍ରଦେଶରେ) କଙ୍କଣୀ (କ୍ଷୁଦ୍ର ଘଣ୍ଟିକା) ଲମ୍ବାଇଲା, ଗୃପସରକ ମଧ୍ୟଦେଶରେ

+ ଆହାରୋ ଦ୍ୱିଗୁଣଃ ସ୍ତ୍ରୀଣାଂ ବୁଦ୍ଧିସ୍ତାସାଂ ଚତୁର୍ଗୁଣା ।

÷ ଏଣେ ବିଭ୍ରମାଳଂକାର ସୂଚିତ ହେଲା । ଯଥା—
ତ୍ୱରୟା ହର୍ଷରାଗାଦେର୍ଦୟିତା ଗମନାଦିଷୁ ।
ଆସ୍ଥାନେ ଭୂଷଣାଦୀନାଂ ବିନ୍ୟାସୋ ବିଭ୍ରମୋ ମତଃ । ଇତ୍ୟଲଂକାରେ ।

ନନ୍ଦଟରେ ଲେଖେ ଲକ୍ଷାରସରେ । ବବନ୍ଧ କର କେ ଚକୁରା ବେଗେ
କଙ୍କତିକାରେ ଶାମଲେ ଗ୍ଭମର । ୧୦।

ବସିଥିଲ ପଡ଼ଙ୍କୋଲ କେ ପେନ ପତ୍ତିତମେଳ ଗତ କର
ଯୁବଦେଖା ଗତ ସେ କର । ବପଗୀତ କାହା ସାଇଁ ମାରୁ ଦେଖିବା
ଆଶାଯୁଁ ଗୀତ ଦୁଇପୁଂସେ ଲକ୍ଷେ ପୁଷ୍ପେ ସଞ୍ଚର । ବଳାଡଞ୍ଜି କେ ମାମ
ଘର୍ଷି । ବଲ୍ଲଭେ ଭୁଲଇ କେବେ ନୁହଇ ଦୋଷୀ ।୧୧।

ଟୀକା । କାନ୍ତ (କେଉଁ ନାୟିକାର) ବେଶକ ଶ୍ରୀ (ସିଂହାସ) ସିନ୍ଦୂରକୁ
ଅନ୍ତଃ ସେ ବେ ଲ ପସ୍ତରେ (ପାଦରେ) ଦେଲ । ଲକ୍ଷାରସ (ଅଲତା-
ରସ) ଦେଇ ନଳଟରେ ଗତା ଲେଖିଲ । କେଉଁ ନାୟିକା ଚକୁର (କେଶ)
ବାନ୍ଧ (ମୁକୁଳିତ) କଶ ବେଗରେ ଗ୍ଭମଙ୍କୁ ବାଲ ବୋଲ ୧ କଙ୍କତିକାରେ
(ପାନଘରେ) ଶାମଲେ (ଚନ୍ଦନ କଲ) ।୧୦।

୧୧ଶ ପଦ—କେଉଁ ଭାମିନୀ ପଡ଼ଙ୍କୋଲରେ ବସିଥିଲ, ତାହା ମେଳ
(ହଙ୍କରେ) ପଡ଼କ ପେନ୍ ଯୁବା (ଗ୍ଭମଚନ୍ଦ୍ରଙ୍କ)ଦେଖି କୁ ଗତ କର ଗତ ଏ
ଏମନ୍ତ ବସ୍ତ୍ରର ଗତ ( ଗମନ ) କଲ ତାହା ସାଇଁ ( ନାୟକ ) ବପରୀତ
ମାନୁ ମାରନ୍ତେ) ଦେଖିବା ଆଶାୟୀ (ଗ୍ଭମଙ୍କୁ ଦେଖିବା ଆଶାରେ)
ଗୀତଦୁଇ (ଏ ଦୁଇ ଗୀତକୁ ) ପୁଂସେ ଲକ୍ଷେ (ପୁରୁଷକୁ କହନ୍ତି ) ପୁଷ୍ପେ
ସଞ୍ଚର (କୁସୁମ ସଞ୍ଚର ଅଛୁ ) ଅର୍ଥାତ୍ ପୁଷ୍ପବତୀ ପ୍ରକାଶ ହେଲ ଏମନ୍ତ ବଞ୍ଚନା
କଶ କହିଲ । ନାୟକ ବଳ ଖଞ୍ଜି ( ଖଞ୍ଜନ୍ତେ ) ସେ ( ଭାମିନୀ ) ମାମ
ହୋଇ ବଲ୍ଲଭକୁ ଭୁଲାଇ ଲ୍ଗିଲ । କେବେ ମୁଁ ଦୋଷୀ ନୁହଇ ଏହା ମୋ
ପାଦରେ ଦେଖ କୁ । ଅର୍ଥାତ ବାଳାରେ ଶାଳ୍କଳ ବୁଦ୍ଧି କର ଏମନ୍ତ କହିଲ ।
ଅଥବା କେଉଁ ସ୍ତ୍ରୀ ପଡ଼ଙ୍କୋଳରେ ବସିଥିଲ, ତାଙ୍କ (ପଡ଼କ) ମେଳ କର
ପେନଲ ଯୁବା (ଗ୍ଭମଙ୍କ) ଦେଖାଁକୁ ଗତ କର ଗତ ( ଗମନ ) କଲ ।
କାହାର ସାଇଁ (କାନ୍ତ) ବପରୀତ ମ ରୁ ( ମାରନ୍ତେ ) ଦେଖିବା ଆଶାୟୀ
(ଗ୍ଭମଙ୍କୁ ଦେଖିବା ଈଚ୍ଛାକ୍ରୀ) ହୋଇ ଦୁଇ ଗୀତରୁ ( ପ୍ରିୟ ବପରୀତ ମାରିଲେ
ଓ ଗ୍ଭମଙ୍କୁ ଦେଖିବା ଆଶା ଦେଲ )ଏଣୁ ପୁଂସେ କହିଲ ପୁଷ୍ପେ ସଞ୍ଚର (ପୁଷ୍ପ

୧—ସ୍ତ୍ରୀଧର୍ମ ନକ୍ତିଭିବେତାମଦଃ ।

ବୟସୀଏ ଗୀତ ଗାଇ କେ ରାମା ବୀଣା ବଜାଇ ଥୋଇଅଛୁ ଭାବ ଚୁମ୍ବି କୁଚ ରୋମାଳୀ । ବାଜନ୍ତ କଙ୍କିଣୀ ସ୍ୱର ମଣିତ ଧଉଁ ପ୍ରସ୍ୱର ଆମୃତାରେ ଦେଲି ଭଳ ଗମିଲ୍ଲି ଆଳୀ । ବିପୋର ସେ ରାଗରେ ରାଗ । ବୋଲୁଥିଲେ ରାମକେଶୀର ଜ ସଂଯୋଗ ।୧୨।

ବାନ୍ଧବ ବାନ୍ଧବୀ ରଞ୍ଜି ପରସ୍ପରେ ଭୁଞ୍ଜା ଭୁଞ୍ଜି ଯାନ ଚୁଟ୍ଟା କର ଦଆଦେଇ ହେଉଛନ୍ତେ । ବାହୁ ବାହୁ ଆଳିଙ୍ଗନ ଲତିକା ତରୁ ସମାନ

ସଙ୍ଗର ସମସ୍ତେ ସାମ୍ଭୋଗାଳ ଅବଧି ଭଳି) ପୁଣି ନ ସ୍ୱଚ୍ଛ ବଳା ଖଣ୍ଡନ୍ତେ ସେ ମାମୀ ଭ୍ରାନ୍ତି (ଏମନ୍ତ କେହୁ ବୋଲନ୍ତି ସେହୁ ଭାମିନୀ ମାମୀ ହୋଇ ବଳ୍ଲଭଙ୍କୁ ଭୁଲାଇ ଖର୍ପିଲ୍ଲ ହେବେ ମୁଁ ଦୋଷୀ ନୁହଇ) ।୧୧।

୧୨ଶ ପଦ— ବୟସୀଏ (ସମାନ ବୟସୀମାନେ) ଗୀତ ଗାଉଥିଲେ । କେ ରାମା (କେଉଁ ପ୍ରଧାନ ନାୟିକା) ବୀଣ ବଜାଉଥିଲା । ସେ ଥୋଇଅଛୁ ସଖୀମାନେ ଆପଣ କୁଚ ରୋମଳୀ ଏ ଦୁହିଙ୍କ ଗୁହ୍ୟ ବୀଣା ଏ ବୋଲି ଭାବିଲେ ରାମଚନ୍ଦ୍ର ବଜାଇଲେ ଏମନ୍ତ ଶୁଣି ହସ୍ତ ଚଳେ ଧାଉଁ ବାଜନ୍ତ ( ବାଜିଲା ) ଯେଉଁ କଙ୍କଣୀ ତାହାର ସ୍ୱରକୁ ବୀଣା ସ୍ୱର ଏ ପ୍ରକ୍ଷେ ହେଉଅଛୁ ଏମନ୍ତ ମଣି ୧ଆଳି (ସଖୀମାନେ) ଅମୃତାରେ ବୀଣା ଦେଲ ଏମନ୍ତ ଭଳ ଗମିଲେ । ରାମଚନ୍ଦ୍ରଙ୍କୁ ଦେଖିବାରେ ଯେଉଁ ରାଗ (ଅନୁରାଗ) ହେଲା ତଦ୍ଦ୍ୱାରା କରିବା ରାଗ ବିପୋର (ପାସୋର) ଗଲା । ରାମକେଶ ରାଗ ବୋଲୁଥିଲେ ତହିଁରେ 'ର' ସ୍ଥାନରେ 'ଲ' ସଂଯୋଗ ହୋଇଲା । ଅର୍ଥାତ୍ ରାମକେଲି ହୋଇଗଲା ।+।

୧୩ଶ ପଦ—ବାନ୍ଧବ (ନାୟକ) ବାନ୍ଧବୀ (ସ୍ତ୍ରୀ ସ୍ୟାଙ୍କୁ) ରଞ୍ଜି (ରଞ୍ଜିତ କରି) ପରସ୍ପରରେ (ଅନ୍ୟୋଽନ୍ୟରେ) ଯାନ ଭୁଞ୍ଜା ଭୁଞ୍ଜି ହେଉଥିଲେ । ରାମଚନ୍ଦ୍ରଙ୍କୁ ଦେଖି କବା ଛନ୍ଦରୁ କର ଚୁଟ୍ଟା କର ଦଆଦେଇ ହୋଇଲେ । ତରୁଣ (ଯୁବା) ତରୁଣୀ (ଯୁବତୀ) ଲତିକା ( ଲତା ) ତରୁ ( ବୃକ୍ଷ )

୧ — ଆଳିଃ ସଖୀ ବୟସ୍ୟା ଚ ଇତ୍ୟମରଃ ।

+ ଏଠାରେ ଚ୍ୟୁତ ଦତ୍ତାକ୍ଷର ହେଲା । ତଦୁକ୍ତଂ ସାହିତ୍ୟେ—

କିଂ ତରେତ କୁଚକାକ୍ଷୀବଦନେନ ନ ପୀଡ଼ିତା ।

ଏଠାରେ ବକାର ସ୍ଥାନରେ ମକାର ଦତ୍ତ ହେଲା—ଅର୍ଥାତ୍ ମଦନେନ ନ ପୀଡ଼ିତା । ଏଣେ ବିରାମ ସୂଚିତ ହେଲା ।

ତରୁଣ ତରୁଣୀ ଥିଲେ ତେଜ ଧାଇଁଲେ । ବାମା କେହୁ ହରିଦ୍ରା ଘେନେ । ବର୍ଚ୍ଛିତ୍ତି ଦେଖାଇ ଗଲା ନ ପୋଛୁ ସ୍ନାନେ । ୧୩ ।

ବଧ ପାଶ ସାମନ୍ତଙ୍କ ଶ୍ରବଣେ ଅତି ଉସ୍ତୁକ ଜଗତି ଗତିକି ଦେଖି ସଖୀଏ ଭାଷେ । ବଡ଼ଖି ଲଭିଲ ନାହିଁ ବଡ଼-ଖି ଲଭିବ, ଗୃହୀ ଜଗତି-ଗତି ଦ ତାଙ୍କୁ ଅନଙ୍ଗବଶେ । ବାଟି ଶ୍ରମୀ ହେବୁଁ ଉଶୀର । ବାଧିବ ଶବର ବେଣୀ ଶିଟିଟିକର । ୧୪ ।

---

ସମାଜରେ ବାହୁକୁ ଅଲିଙ୍ଗନ କରିଥିଲେ, ତାହା ତେଜ (ଛାଡ଼ି) ସମସ୍ତେ ଦର୍ଶନ ଲୋଭରେ ଧାଇଁଲେ । କେହୁ ବାମା ହରିଦ୍ରା (ହଳଦୀ) ଅଙ୍ଗରେ ଘେନୁଥିଲେ ସେ ହରିଦ୍ରାକୁ ସ୍ନାନରେ ଅଙ୍ଗରୁ ନ ପୋଛୁ ଜନଙ୍କର ୧ ବର୍ଚ୍ଛିତ୍ତି (ଅଲ୍ପ ବେଶ ରଚନାକୁ) ଦେଖାଇବା ନିମିତ୍ତ ଗଲ ୦ । ୧୩ ।

୧୪ଶ ପଦ—ପାଶ (ସ୍ୱଜନମାନେ) ସାମନ୍ତ (ଅଧୀଶ୍ୱର) ଏମାନଙ୍କ ବଧୂ (ସ୍ତ୍ରୀ ମାନେ) ରାମ ବିଜେ କରିବା ଶ୍ରବଣ କରନ୍ତେ ଦେଖିବା ଅର୍ଥେ ଅତି ଉସ୍ତୁକ ହୋଇ ଜଗତି (ଅଟ୍ଟାଳିକା ପୁରକୁ) ଗତି କରନ୍ତେ ତାହା ଦେଖି ଏକ ସଖୀ ଭାଷିଲା । ୧ବଡ଼ଖି (ଲୁପ୍ତ ଗୃହ) ଲଭିଲ ନାହିଁ । ଯେ, ଜଗତି ଗତିଦାତା (ଜଗତକୁ ଗତି ଦେଲେ ଅଥବା ଯାହାଙ୍କ ଲୋଭରେ ଜଗତ ଗତି କରୁଅଛି) ଏମନ୍ତ ରାମଙ୍କୁ ଗୃହୀ ଅନଙ୍ଗ (କନ୍ଦର୍ପ) ବଶରେ ବଡ଼ ଖି (ଭୟ) ଲଭିବ । ଅମ୍ଭେମାନେ ଉଶୀର (ଗନ୍ଧବେଣା) ବାଟିବାରେ ଶ୍ରମୀ ହେବୁଁ । ବେଣୀ ଶିଶିର କର ବାଧିବ ଶବର (ଚନ୍ଦ୍ର ବାଧିବ, କର୍ପୂର ଶୀତଳୋପଚାର କରିବାରେ ସରବ) ରାମଙ୍କୁ ଦେଖି ଭ୍ରମର ବିରହ ଉଦ୍ଦୀପକ ହେବ ଏମନ୍ତ ଭାବ । ୧୪ ।

---

୦—୧ଅଥ ବର୍ଚ୍ଛିତ୍ତିଃ—ସ୍ତ୍ରେନାପ୍ୟାକଳ୍ପରଚନା ବର୍ଚ୍ଛିତ୍ତିଃ କାନ୍ତିପୋଷକୃତ । ଯଥା—ସ୍ୱଚ୍ଛାମ୍ଭଃ ସ୍ନପନବିଧୌତମଙ୍ଗମୋଷ୍ଠ ସ୍ତାମ୍ବୂଲଦ୍ୟୁତିବିଶଦୋ ବିଳାସିନୀନାଂ ।
ବାସ ସ୍ତନ୍ତ୍ରିତନ କୁଙ୍କୁମସ୍ପୃଶ୍ୟତାଙ୍କାନାକଲେ୍ପାୟଦ କୁସୁମେଷୁ ଶାସନଂ ନଃ ଛନ୍ଦଦର୍ପଣେ ।
୧—ବଡ଼ଭି ସ୍ତନ୍ତ୍ରଶାଳିକେତ ବିକାଣ୍ଡ ଶେଷଃ ।

ବଗନ୍ଧ ଭିବ ଆରମ୍ଭେ ସୁନ୍ଦର ଦର୍ଶନ ଲେବେ ପ୍ରଭଞ୍ଜନ-ପଥ ପ୍ରଭଞ୍ଜନ ହୋଇବ । ହଶ୍ୱସ୍ତେ ଜାତ ଏତେକ ଲଭ ହୃଦ-ସମ୍ପୂର୍କ ମଧ୍ୟରେ ସେ ମନୋରମ-ମଣିଥୋଇବ । ବୋଲେ ସେ ତୁମ୍ଭର ନେ ହବ ବଞ୍ଚନା କେତେକ କୁଁ କଲ୍ପିଣି ଦେଇବ । ୧୫ ।

ବିବୁଧାଳୟୁ ଜଗତ୍ତ୍ରିତ ନାଗ ସୁଗ ଭିନ୍ତି ସୁମନା ମନମୋହନ ଛବ ଯାହାର । ବକୁଁ ବାହାରିଲପରି ନଗ-ନାଗରୀ ଗୃତ୍ତୁମଣି-ଭୂଷଣୀ ମଧ୍ୟରୁ ଯେତେ ବାହାର । ବେଶ୍ଯରେ ତ ମାନଗ ସବେ । ବଶୁଦ୍ଧି ବିପୁର ଲୀଳା ତହିଁ ସମ୍ଭବେ । ୧୬

---

୧୫ଶ ପଦ—ସୁନ୍ଦର ରାମଚନ୍ଦ୍ରଙ୍କ ଦର୍ଶନ-ଲେଶରେ ଯେଉଁ ଭିବାରମ୍ଭ (ବେଗାରମ୍ଭ) ତହିଁରେ ଯେଉଁ ବଗନ୍ଧ (କନକ) ତଦ୍ଦ୍ୱାରା ପ୍ରଭଞ୍ଜନପଥ (ବାତାୟନ) ପ୍ରଭଞ୍ଜନ ହେବ (ଭାଙ୍ଗିବ) ତୁମ୍ଭମାନଙ୍କର ବଶ୍ୱାସ (ଜାତ ବିଶ୍ୱାସ) ହେବରେ ଏତେକ ଲଭ ଜାତ ହେବ । ସେ (ରାମଙ୍କର) ମନୋରମ ମଣି ହେଲେ ତାଙ୍କୁ ତୁମ୍ଭ ହୃଦସ୍ଥ ସମ୍ପୁଟକ (ହୃଦସ୍ଥଫରୁଅଟରେ) ଆଣି ଥୋଇବ । ଏମନ୍ତ ଶୁଣି ସେ (ପାର୍ଶ୍ୱ ସମନ୍ତ ବନ୍ଧୁମାନେ) ବୋଲିଲେ— ତୁମ୍ଭର ସେ ବିଷୟ ନୋହିବ । ତୁମ୍ଭଙ୍କୁ ଦେଇବ କେତେବେଳରୁ ବଞ୍ଚକ କଲ ଏମନ୍ତ ବଞ୍ଚନା କଥା କହୁଅଛ । ୧୫ ।

୧୬ଶ ପଦ—ଜଗତ୍ତ୍ରି (ଜଟାଳିକା) ବିବୁଧାଳୟ (ମେରୁ) ହେଲା, ତହିଁ ଥିବା ନାଗମାନେ ସୁଧା (ସୁରାଙ୍ଗନା) ପରି ଭିନ୍ତି (ଶୋଭାପାଉଛନ୍ତି) ତାଙ୍କଠାରେ ଅମରାଙ୍ଗନାଭ୍ରାନ୍ତି ହେଉଅଛି । ଯାହାଙ୍କର (ଅମରାଙ୍ଗନା) ଛବ ସୁମନା (ଦେବତା) ମାନଙ୍କର ମନମୋହନ ତଦ୍ରୂପ ଯାହାଙ୍କର (ଜଗତ୍ତ୍ରିସ୍ଥ ନାରୀଙ୍କ) ଛବ ୧ସୁମନା (ଧୀର) ମାନଙ୍କର ମନମୋହନ । ଏହା ଦ୍ୱାରା ସ୍ୱର୍ଲୋକ ସୂଚିତ ହେଲା । ମଣିଭୂଷଣ ହୋଇ ପୁରରୁ ବାହାରିବା ସ୍ତ୍ରୀମାନଙ୍କ ଗୃହୁଗ (ଗୃହୁରୀ) ବିଳରୁ ବାହାରିବା ନାଗନାରୀ (ନାଗକନ୍ୟା) ପ୍ରାୟ

---

୧—ସୁମନାଃ ପୁଷ୍ପମାଲତ୍ୟୋଃସ୍ତ୍ରୀୟୁଂ ନି ଦେବେ ବୁଧେ ଧୀରସ୍ତେ, ଇତି ମେଦିନୀ । କଲ୍ୟାଣଂ ତଃ କିଯୁଯୂ ମିଲିଦଟନସୁରଗ୍ରାସ୍ୱ ଗୀର୍ବାଣ ଶ୍ରେଣି—ସୈଣବ୍ୟତ୍ୟସ୍ତକଲ୍ପ ଦ୍ରୁମନବସୁମନୋ ନାକହାରବଲୀନ । ଇତି ଶିବଙ୍କତକେ ।

ବାମୀ କାଳେ ହନୁ ବାମା ପ୍ରସବ ସୂନୂ ସୁଷମା ଲଷିତ ଦୁଅନ୍ତା ଆନ ଆନନ ପ୍ରଭା । ବରନ ବସନ ଧରେ ନୀଳ ପୀତ ପରସ୍ପରେ ସ୍ମର ମଧୁ ଆଲିଙ୍ଗନ ବହ୍ନିକ ଶୋଭା । ବିହ୍ୱଳିତ ଦମ୍ଭ ଅନାଇ । ବାସ କଲା ଚିତ୍ତ ରାମ ଲକ୍ଷ୍ମଣେ ଯାଇ । ୧୭ ।

ବାଡ଼େ ଯେ ଆଢ଼ଜ ରହ୍ମି ଚନ୍ଦ୍ରପ୍ରତିମା କି ଯେହ୍ନେ ନବ ବଲମ୍ଭି ନୀ କି ଇନ୍ଧନ ପିଣ୍ଡୁଳା । ବନ୍ଧକା ସ୍ୱଭାବ ଲୁଟି ପତିବ୍ରତା କଲେ ହଟି ସ୍ମୃତି

ହସିଲେ ଏହାଁ ଦ୍ୱାରା ପାତାଳ ପୁର ସୂଚିତ ହେବ । ସେଷ୍ଠରେ ତ ସବେ ମାନବୀ [ମନୁଷ୍ୟ ସ୍ତ୍ରୀ] ଏତ୍ଦ୍ୱାରା ମର୍ତ୍ତ୍ୟ ଲୋକ ସୂଚିତ ହେଲା । ଚନ୍ଦ୍ରି [ସେହି ମିଥିଳ ପୁରରେ] ବଶ୍ରୁକ ନିପୁର ୨ଲୀଳା ସ୍ୱୟମ୍ବର । ୧୬ ।

୧୭ଶ ପଦ—ଗ୍ରନ୍ଥକାର [ସୂର୍ଯ୍ୟପ୍ରିୟା] ଅର୍ଥ ତ୍ତ ସଂଜ୍ଞା, ବାମୀ [ବଡ଼ବା ହୋଇ] କାଳେ ତାହାଙ୍କଠାରୁ ପ୍ରସବ [ଜାତ] ହୋଇଅଛନ୍ତି ଏମନ୍ତ ସୂନ [ଅଶ୍ୱିନୀକୁମାର] ସେ ଦୁହିଙ୍କ ୧ ସୁଷମା [ଶୋଭା] ପରି ଶୋଭାରେ ଲକ୍ଷିତ କରଇ କେବଳ ସେ ଦୁହିଙ୍କର ଆନନ ପ୍ରଭା [ମୁଖ ପ୍ରଭା] ଅନ ହୋଇଅଛି ଙ୍କ ମୁଖ ଅଶ୍ୱମୁଖ ଏଣୁ ମୁଖ ବହନ୍ତି । ଏ ଦୁହେଁ ପରସ୍ପରେ ନୀଳବର୍ଣ୍ଣ ପୀତବର୍ଣ୍ଣ ବସନକୁ ଧରିଅଛନ୍ତି ଅର୍ଥାତ ନୀଳବର୍ଣ୍ଣ ରାମ ପୀତବସନ ପିନ୍ଧିଅଛନ୍ତି ଗୌରବର୍ଣ୍ଣ ଲକ୍ଷ୍ମଣ ନୀଳବସନ ପିନ୍ଧିଅଛନ୍ତି ଏଣୁ ଏମନ୍ତ ଶୋଭା ପାଉଅଛନ୍ତି ସ୍ମର [କନ୍ଦର୍ପ] ମଧୁ [ବସନ୍ତ] ଏ ଦୁହେଁ ଆଲିଙ୍ଗନ କଲେ ଯେପରି ଶୋଭା ପାନ୍ତି ଏ ସେହିପରି ଶୋଭା ଦିଶୁଛନ୍ତି । ସେ ଶୋଭାକୁ ଅନାଇ ଦମ୍ଭ [ଧୈର୍ଯ୍ୟ] ବିହ୍ୱଳିତ ହେଲା, ଚିତ୍ତ ଯାଇ ରାମ ଲକ୍ଷ୍ମଣଙ୍କଠାରେ ବାସ କଲା [ସମସ୍ତଙ୍କର ରହିଲା ] ।୧୭।

୧୮ଶ ପଦ—ଯେ [ବାଳା] ବାଡ଼ବେ ଅଭଙ୍ଗ ରହିଥିଲା ଚନ୍ଦ୍ରପ୍ରତିମା କି ସେହି [କଷ୍ଟେ] ପ୍ରମୃତ ବାଡ଼ ଚନ୍ଦ୍ରପ୍ରତିମା ପରି ଓ ଦଣ୍ଡଳ ଛରବଲମ୍ଭିନୀ [କିରଣସ୍ଥ ] ବାଳା ଇନ୍ଧନପିଣ୍ଡୁଳା କି [କାଷ୍ଠ ପିଣ୍ଡୁଳା କି] ? ବନ୍ଧକା

୨— ଲୀଳା କେଳି ବିଳାସଶ୍ଚୋ ଭ୍ରତ ମେଦିନୀ ।

୧— ସୁଷମା ପରମା ଶୋଭା ଇତ୍ୟମରଃ ।

ମହତ ସୃଷ୍ଟି ତାଙ୍କ ରଖିଲ । ବୋଲନ୍ତ କ କାହା ଶୁଣନ୍ତ । ବଜ୍ରାଙ୍ଗ
ନୋହେ ମାଦକା ଚେତା ଅକୃତ । ୧୮ ।

ବୈଦେହୀ ବିମଳଦେହୀ କମଳଦେଶରେ ନାହିଁ ସଖୀ ସନ୍ନିଧରେ
ଥିଲେ ମଣ୍ଡି ଅଞ୍ଜଳି । ଜନ ଲୋକନେ ପ୍ରଶଂସା କଲାଙ୍ଗେ କଲେ
ଲାଳସା ଗଉରେ ଗଉରବ ନେତ୍ର ନ ଜାଳି । ବର ଦେବରେ ଦେ
ମନାସେ । ବର ଦେବର ଦେହାକୁ ମାନସେ ଘୋଷେ । ୧୯ ।

ବାମାଲୋଚନ ସ୍ଫୁରିତା ବାମଲୋଚନ ବାଧାତା ପାଣ୍ଡୁ-ପୁଲକ,
ପୁଲକ କମ୍ପଦଳ ବଳି । ଗୁଣବପୁଃସଙ୍ଗୀବାରେ ଜାଗିବ ଏ ଧନୁବର

[ଅନ୍ତଃପୁରମାନେ] ବନ୍ଧନ ସ୍ତନ ଲଜ୍ଜି ବ୍ରହ୍ମାକୁ ଦୃଷ୍ଟିଧର ପଡ଼ିବାକୁ ଦେଲେ ।
ତେଣୁ ତାଙ୍କ ଏଇ ମହତ ସୃଷ୍ଟି ରଖିଲ କି, ସ୍ତନ ହେବାରୁ ଜଣା ନ ପଡ଼ିଲେ ।
ଯଥାସ୍ଥାନରେ ଧାର ହୋଇ ନ ରହିଲେ । ମାଦକା [ମାଦକ ଦ୍ରବ୍ୟ ଖାଇଥିବା
ଲୋକର] ଚେତା ପରି ଅକୃତ କାହାକୁ ବୋଲନ୍ତ ? କ ତାହା ଶୁଣନ୍ତ
[ଶୁଣୁ ଅଛନ୍ତି] ସେ ବଜ୍ରାଙ୍ଗ ନୋହେ [କଠୋର ହେ] ଅର୍ଥାତ୍ ତାହା
ଜାଣିଲେ ନାହିଁ । ୧୮ ।

୧୯ଶ ପଦ – କମଳଦେଶରେ ନାହିଁ [ସେ ସମାନ ନୁହଇ] ବିମଳ-
ଦେହୀ [ନିର୍ମଳ ଦେହ ଯାହାର] ଏମନ୍ତେ ବୈଦେହୀ ସଖୀ ସହିତରେ [ସଖୀ
ସଙ୍ଗରେ] ଅଞ୍ଜଳୀ ମଣ୍ଡି ଛିଡ଼ାହୋଇ ଥିଲେ । ଲୋକନେ [ସେ ସ୍ଥାନ ଲୋକମାନେ
ଦେଖି] ପ୍ରଶଂସା କହିଲେ [କଲେ] । କଲାଙ୍ଗ [ରାମଙ୍କଠାରେ]
୧ ଲାଳସା [ମହାଭିଳାଷ] କଲେ । ଗୌର [ଲକ୍ଷ୍ମଣଙ୍କଠାରେ] ଗୌରବ
[ଶ୍ରଦ୍ଧା] ଜାହାଦ୍ୱାରା ନେତ୍ର ଜାଳିଲେ [ଅତ୍ୟାଦରରେ ଦେଖିଲେ] ।
ଦେବର [ଦେବଙ୍କ] ବରକୁ ମନରେ ମନାସିଲେ । ଅଥବା ଦେବର ବର
[ମହାଦେବଙ୍କୁ] ମନାସିଲେ । କିମ୍ବା ବରଦେ [ବରଦାତାଙ୍କଠାରେ] ବର
ମନାସିଲେ, କି ବର ? ୨ଦେବର ଦେହବାପାଇଁ ମାନସରେ ଘୋଷିଲେ ।୧୯।

୨୦ଶ ପଦ – ସେ ସ୍ତ୍ରୀତା ଏମନ୍ତ ମନରେ ବିଚାର କରିବା ବେଳରେ

୧ – କାମାଦ୍‌ଭିଳାଷ ସ୍ତର୍ଷ ଶ୍ଚ ସମଂସ୍ୟାଳ୍ଲ ଲଷାଦ୍ରସ୍ପୋରତ୍ୟମରଃ ।
୨—ଶରୀରଂ ବର୍ଷ୍ମ ବିଗ୍ରହଃ ପତ୍ନ୍ୟାଃ ଯାମିନୋ ଦେବଦେବରବଷ୍ୟମରଃ ।

ମନରେ ଏମନ୍ତ କର ତା ଜାଣି ଋଷି । ବ୍ୟକତ ଏମନ୍ତ ବଚନ ।
ବିଶ୍ୱାସ ନିଃଶ୍ୱାସ ହାସ ନାସା ଆନନ । ୨୭ ।

ବିପ୍ରଳାପ ଥାଇ ଭ୍ରଷ୍ଟ ମନମାୟୀ ଯେ ଉଭଟେ ଏ ଯୋଗ ତୋର
କର୍ମରେ ଅଛି ଯେନ ହେ ! । ବ୍ୟଳୀକ ଏ କି ? ଜନକ ନାରିକେଳ

---

ତାଙ୍କ ବାମଲୋଚନ (ବାମଚକ୍ଷୁ) ସ୍ଫୁରିଲା । ବିଧାତା ୧୧ ମ (ପ୍ରତିକୂଳ) ତାହାର ମୋଚନ ପାଇଁ ତାଙ୍କର ଉତ୍ପଳ (ସନ୍ତୋଷବନ୍ତ) ପୁଲକ ପୁଲକ (ରୋମୋଦ୍‌ଗମ ସମୂହ) ଦର୍ଶିଲା । ବୃଦ୍ଧ ବୟଃସନ୍ଧିବାର (ବୃଦ୍ଧସଂଧିସମୂହ) ତାଙ୍କ ୨ (ନେତ୍ର ବକ୍ର ବଦନ) ଜାଣି ଋଷି କ୍ଷ । ହେ ସୀତେ ! ଏ ପୁରୁଷ ଧନୁଦ୍ଧର (ଧନୁଶ୍ରେଷ୍ଠ) ହର ଧନୁକୁ ଭାଙ୍ଗିବ । ଏମନ୍ତ ମନରେ କର । ଏମନ୍ତେ ସଞ୍ଜୀବନ ବାକ୍ୟ ଶୁଣନ୍ତେ ସୀତାଙ୍କ ନାସା ଆନନ (ମୁଖ) କୁଳରେ ନିଃଶ୍ୱାସ ଓ ହାସ ଜାତ ହେଲା । ବିଶ୍ୱାସ ହେଲା । ୨୦ ।

୨୧ଶ ପଦ— ଏମନ୍ତ ସୀତାଙ୍କ ଉତ୍କଣ୍ଠା ଜାଣି ମନମାୟୀ (କାମଳସଖୀ) ବିପ୍ରଳାପ (ବିରୋଧୋକ୍ତି) ଥାଇ ୧ ଉଭଟେ (ବେଗରେ) ଘୋଷିଲା । "ଏମନ୍ତେ ବିରୋଧୋକ୍ତି କିଣ କହୁଛ ?" ହେ ସଖି ! ତୋ ହରକର୍ମରେ ଏ ଯେଉଁ ଯୋଗ (ଏ ପୁରୁଷକୁ ବର ହେବା ଯୋଗ) ଏ ଅଛି । ଏ ଯୋଗ କାହିଁ ନେଲି ମନରେ ଘେନ । ରେ (ଇତି ସମ୍ବୋଧନେ) ଜନକ (ପିତା ଜନକରୂପି) ନାରିକେଳ (ନଡ଼ିଆ) ସଦୃଶ ବାହାରେ କର୍କଶ (କଠିନ) ଭିତରେ ସରସ ଏମନ୍ତ ଯେଉଁ ଧନୁ ସ୍ୱୟମ୍ବର କୃତ (କଲେ) । ତୋହକୁ ୨ ଦାନ (ଖଣ୍ଡନ) ଅଥବା ବିବାହରେ ୩ ବ୍ୟଳୀକ ଏ କି (ଏ ବ୍ୟଳୀକ କୁଅନ୍ତି କି ?) । ଏହା ଦ୍ୱାରା ବିରୋଧୋକ୍ତି ପ୍ରକାଶ ପାଇଲା । ଅନ୍ୟାର୍ଥ-

---

୧—ବାମଂ ଧନେ ଦ୍ୱିଂସି ହୃତ୍ୱେ ବାମଦେବ ପୟୋଧରେ ।
କଳତ୍ର ତୁଣୀପ ସଂବାଂଷୁ । ଇତି ମେଦିନୀ ।

୨—ନେତ୍ର ବକ୍ର ବିକାରେଣ ଲକ୍ଷେଦନ୍ତର୍ଗତଂ ମନଃ ।

୧—ଉଭସୋ ହର୍ଷ ଉଦ୍‌ବେଗସ୍ତୋଃ ।

୨—ଦାନଂ ଗଜମଦେ ତ୍ୟାଗେ ପାଳନଚ୍ଛେଦଶୁଦ୍ଧିଷୁ । ଇତି ମେଦିନୀ ।

୩— ବ୍ୟଳୀକ ମପ୍ରିୟାକାର୍ଯ୍ୟ ବୈଲକ୍ଷ୍ୟେଷ୍ୱପି ପୀଡ଼ନେ । ଇତି ମେଦିନୀ ।

ସତୃଣକ ଧନୁ ସ୍ୱୟମ୍ବର କୃତ ତୋଷଦାନରେ । ବଧୂଗ୍ରଧିତା ଚତ୍ତେ ଘେନଲେ । ବସୁସୀଗଣ ପ୍ରମାଣ ପ୍ରମାଣ ବୋଲେ । ୨୧ ।

ବୃକୋଦର ବାସବର ଦ୍ୱିଗଦନ୍ତୀ ମନେ ହର ବନ୍ଧର ମଖଶାଳାରେ ପ୍ରବେଶବେଳେ । ବଂଶିକ-ରାଜା ମାନସ ମଧ୍ୟରୁ ଧୈର୍ଯ୍ୟ ସାରସ ଅସ୍ତ-ଭଣେ ଦରଶନେ ଉପାଡ଼ି ନେଲେ । ବିଚିତ୍ର-କର୍ମୀଙ୍କ ଅନେକେ । ବିଦେହରାଜା, କୌଶିକେ ପୁଚ୍ଛିଲେ ଏ କେ ? । ୨୨ ।

---

ରେ ସଖି ! ଏ-ତୋ କର୍ମରେ ଅଛୁ ଯେନ, ଏ ଧୂତୁଷକୁ ବିବାହ୍ୱେଣୁ ଜନକ (ପିତା) ନାଟ୍ଟଦେଲ ସତୃଣ ତୋଷ (ତୁଷି) .ଦାନ (ଦେବା) ବିଷୟରେ ଯେଉଁ ଧନୁ ସ୍ୱୟମ୍ବର କରଥିଲେ ସେ ବ୍ୟାଳକ (ଅପ୍ରିୟ) ହୃଦୟ୍ରୀ କ ? । ବାହ୍ୟରେ କର୍କଶ ଦଶୁଥିଲ, ଅନ୍ତଃ ସରହତା ପ୍ରମାଣ ହେଲ । ବଧୂଗ୍ରଧା (ତରୁଣୀ) ସଂଚ ତାହା ଚିତ୍ତରେ ଘେନଲେ ।, ବସୁସୀଗଣ (ସଖୀଗଣ) ତାହା ଶୁଣି (ଭୂଲ ଉକ୍ତ ଜାଣି) ପ୍ରମାଣ ପ୍ରମାଣ (ସତ୍ୟ ସତ୍ୟ) ବୋଇଲେ । ୨୧ ।

୨୨ଶ ପଦ—୧ବୃକୋଦର (ବରୁଣ) ୨ ବାସବ ( ଇନ୍ଦ୍ର ) ଏ ଦୁଇ ଦାନ୍ତର ଦନ୍ତୀ (ଅଞ୍ଜନ ଓ ଐରାବତ) ସେ ଦୁହଙ୍କ ପରି ମନୋରମ ରାମଲକ୍ଷ୍ମଣ ଦୁହେଁ ବନ୍ଧର (ତୁଲ) ମୃଗଶାଳ (ଯଜ୍ଞଶାଳାରେ) ପ୍ରବେଶ ହେଲ-ବେଳରେ କେହି କେହି ୩ ବୃକୋଦର (ଯମ) କହନ୍ତି । ତାଙ୍କ ମତରେ ବ ମନ ଗନ୍ଧପଣ ବଂଶିକ ରାଜା (କୁଳୀନ ରାଜାଙ୍କ) ମାନସ ସରୋବର ମଧ୍ୟରୁ ଧୈର୍ଯ୍ୟ ପଦ୍ମକୁ ସ୍ପର୍ଶ ନ କରି ଦର୍ଶନ ମାତ୍ରକେ ଉପାଡ଼ି ନେଲେ (ସେମାନେ ତାଙ୍କୁ ଦେଖି ଅଧୈର୍ଯ୍ୟ ହେଲେ) । ଏଣୁ ବିଚିତ୍ରକର୍ମୀ (ରାମ ଲକ୍ଷ୍ମଣଙ୍କେ) ଅନେକେ (ଦର୍ଶନରେ) ଅର୍ଥାତ୍ ତାଙ୍କୁ ଦେଖି ବିଦେହରାଜା (ଜନକ) କୌଶିକଙ୍କୁ (ବିଶ୍ୱାମିତ୍ରଙ୍କୁ) ପଚାରିଲେ ଏ କେ ? (ଏ ଦୁହେଁକିଏ) ? ।୨୨।

---

୧—ବୃକନାମା ଅଗ୍ନିଃ ଉଦରେ ଯସ୍ୟ ଜଳାଧିପସ୍ୟ । ୮

୨—ବାସବୋ ବୃତ୍ରହା ବୃଷା ଇତ୍ୟମରଃ ।

୩—ବୃକୋଦରଶ୍ଚ ହନୂମ୍ରଶ୍ଚ ଇମେ ଯମା ଇତି ଜିକାଣ୍ଡଶେଷଃ ।

ବଲଗିଲେ ମୁନି ଭରତ ଦଶରଥ ନୃପସୁତ ବନେ ତାଡ଼କା ବିନାଶି ରଖି ମୋ ଯାଗ । ବନ୍ଧ୍ୟା କର ଚରଣ ଗୌତମ-ନାରୀ ତାରଣ ଶିବରୂପ ଦେଖିବାକୁ ଏବେ ଉଦ୍‌ବେଗ । ବୋଇଲେ ଦେଖିଲେ ଦେଖନ୍ତୁ । ବାଳ କୁମାରେ କି ହେବ ? ଏହାଙ୍କ ହେତୁ । ୨୩ ।

ବାଳ ବଳିଷ୍ଠରେ ସାର ବଳ କୋଟିଏ ସିଂହର ଭାଙ୍ଗିବା ଅଥିଁ ଭଜିଲ ଶୁଣି ଛଳିତ । ବିଷ୍କିରେ ଗଣ୍ଡଭେରଣ୍ଡେ ଗଜକୁ ଘେନିଣ ଉଡ଼େ

୨୩ଶ ପଦ—ଜନକ ଏହା ପଚାରନ୍ତେ ମୁନି (ବିଶ୍ୱାମିତ୍ର) ବଲ୍‌ଗିଲେ (କହିଲେ), ଦଶରଥଙ୍କର ରାଜାଙ୍କର ନୃପ ସୁତ ଏ । ବନରେ ତାଡ଼କାରାକ୍ଷସୀକି ବିନାଶ କରି ମୋ ଯାଗକୁ ରଖିଲେ । କାମ୍ୟକବନରେ ଚରଣ ବନ୍ଧ୍ୟା କରିବାରେ ଗୌତମ-ନାରୀ (ଅହଲ୍ୟାଙ୍କୁ) ପାଷାଣରୂପରୁ ତାରଣ କଲେ (ତାରିଲେ) । ଏବେ ଶିବରୂପ (ଧନୁ) ଦେଖିବାକୁ ଉଦ୍‌ବେଗ ହୋଇ ଅଛନ୍ତି । ଏହା କହନ୍ତେ ଜନକ ବୋଇଲେ ଦେଖିଲେ ଦେଖନ୍ତୁ, ବାଳ କୁମାର ଏ, ଏହାଙ୍କ ଦ୍ୱାରା କି କର୍ମ ହେବ ? । ୧ବାଳ (ଅକୃତବିବେକ) କୁମାର ଏ ଧନୁ ଧରି ନ ପାରିବେ ଏମନ୍ତ ଭାବ । ୨୩ ।

୨୪ଶ ପଦ—କୋଟିଏ ସିଂହର ବଳ ଯାହାର ପୁଣି ବଳିଷ୍ଠଙ୍କ ମଧ୍ୟରେ ସାର (ଶ୍ରେଷ୍ଠ) ବାଳ (କିଶୋରବୟସ୍ପ) ଧନୁକୁ ଭାଙ୍ଗିବା କଥା ଦୂରେଥାଉ ଦେଖି ଭଜିଲ (ପରାସ୍ତହେଲା) ଜନକ ଏହା କହନ୍ତେ ବିଶ୍ୱାମିତ୍ର କହିଲେ ୧ ବିଷ୍କିରେ (ପକ୍ଷି ମଧ୍ୟରେ) ଗଣ୍ଡ ଭେରଣ୍ଡ (ଘଣ୍ଡଭୈରବ) ଗଜକୁ ଘେନି ଉଡ଼ଇ, ସେ ପୁଣି ବୃକ୍ଷ ଡାଳରେ ବସଇ । ସେ ଡାଳଭାଙ୍ଗି ନ ଯାଇ୨ଖଦ୍ୟୋତ (ଭରଚଟିଆ ପକ୍ଷୀ) ଡାଳରେ ବସିଲେ ଡାଳ ଭଗ୍ନହୁଅଇ, ସେପରି ବାଳ ଧନୁ ଧରି ନ ପାରିଲା, ଏ ଧନୁ ଭାଙ୍ଗିବେ ଏମନ୍ତ ଛଳ କହିଲେ । ଏହା ଶୁଣି ପୁଣି

୧—ଆଁଷୋଡ଼ଶାଦ୍ ଭବେଦ୍‌ବାଳ ଇତି ମନୁଃ ।
ବାଲୋହ୍ୟକୃତବିଦ୍ୟଶ୍ଚ ନ ବେତ୍ତି ଚ ବଲାବଲମିତି ସ୍ମାସ୍ମୃତେ ।
୧—ବିବିଷ୍କିର ପତଗପକ୍ଷୀ ଇତ୍ୟମରଃ । ୨—ଖଦ୍ୟୋତ ବ୍ୟୋମ ଲସିକା ।

ତାଳେ ବସେ, ଘଡଣାରେ ଭଗ୍ନ ହିନ୍ଦ୍ରତ । ବୋଲେ ପର୍ଶୁରାମ ପୂଜିଲେ ? । ବ୍ୟଭିଚାର କ୍ଷତ୍ରି ଧର୍ମ ବିପ୍ର ବୋଇଲେ । ୨୪ ।

ବାଣାସୁର କାର୍ତ୍ତ୍ୟବୀର୍ଯ୍ୟ ସହସ୍ରଭୂଜରେ ହେଜ ଟେକି ନ ପାରିଲେ ତହିଁ କଲେ ଉତ୍ତର । ବୃଷ୍ଣିକ କର୍କଟପରି ସିନା ତାହାଙ୍କ ମାଧୁରୀ ନାଗ ବ୍ୟସକେ କେ ଆଉ ଧରଣୀ ଧର । ବଂଶକର କହିବା ନୋହୁ । ବାଳୀ ଅର୍ଜ୍ଜୁନରେ ଧରା ଯାଇଛି ଯେହୁ । ୨୫ ।

ବିଘ୍ନରାଜ ମହାସେନ କେବଣ ଆଦ୍ୟ ରାଜନ ପ୍ରଭା ଦେଖାଇ ମଳିନ ଭାବ ଭାଷିଲେ । କଞ୍ଜ ପଦରେ ତେବେ ମୂଳରେ ଅନଳେ ଜଦେ

ଜନକ କହନ୍ତେ । ପର୍ଶୁରାମ ଧନୁ ଧରି କି ପାଶ ପୂଜା କଲେ, ଏହା । ଶୁଣି ବିଶ୍ୱାମିତ୍ର କହିଲେ । ପର୍ଶୁରାମଙ୍କର କ୍ଷତ୍ରିୟ ଧର୍ମ, ସେ ସେ ବ୍ୟଭିଚାର ଧର୍ମ, ସହଜ ଧର୍ମ ବିପ୍ର । ତେଣୁ ସେ ବ୍ରାହ୍ମଣ ଧର୍ମ ଅବଲମ୍ବିଲେ ପୂଜା କଲେ । ୨୪ ।

୨୫ଶ ପଦ—ଏମନ୍ତ ଶୁଣି ଜନକ କହିଲେ ଅଛନ୍ତି ବାଣାସୁର [ଦୈତ୍ୟ-ସୁତ] କାର୍ତ୍ତବୀର୍ଯ୍ୟ [ସହସ୍ରାର୍ଜ୍ଜୁନ) ସେ ଦୁହେଁ ସହସ୍ର ଭୁଜରେ ଧନୁକୁ ଟେକି ନ ପାରିଲେ ହେଜ, ଏହା ଜନକ କହୁଁ ବିଶ୍ୱାମିତ୍ର ପ୍ରତ୍ୟୁତ୍ତର କଲେ— ୧ବୃଷ୍ଣିକ [ବିଛା]· କର୍କଟ [କଙ୍କଡ଼ା] ପରି ସିନା ତାଙ୍କର ମାଧୁରୀ [ବୃତ୍ତି ଶୁଣ୍ଡାଏ ବହୁ ପଦ୍ମକଣ୍ଟାଲୀ ବୁହନ୍ତି) ୨ନାଗ ୩ତ୍ୟସନେ [ନାଗ ବିନା] ଆନ କେହି ଧରଣୀକି ଧରି ପାରଇ କି ? ଜନକ କହିଲେ ବଂଶକର [ଗର୍ଭଣୀ, ଏହା କହନ୍ତେ ବିଶ୍ୱାମିତ୍ର କହିଲେ ତାକୁ କହିବା ନୋହୁଁ । ବାଳୀ ସହସ୍ରାର୍ଜ୍ଜୁନ ଏ ଦୁହିଁରେ ସେ ଧରା ଯାଇଅଛି [ବନ୍ଧ ପଡ଼ିଅଛି] ତାହାର ବଳ ଜଣା ଅନ୍ଥ ମନେ ନ ଧର । ୨୫ ।

୨୬ଶ ପଦ—ପୁଣି ଜନକ କହିଲେ, ବିଘ୍ନରାଜ [ଗଣେଶ] ମହାସେନ [କାର୍ତ୍ତିକେୟ] କେବଣ ଦେବତ୍ୟଙ୍କୁ ଆଦ୍ୟ କରି ରାଜାମାନେ ପ୍ରଥମରୁ ପ୍ରଭା ଦେଖାଇ ମଳିନ ହେଲେ ଜାତ [ହେଜ] ମ୍ଳାନ ଭାବକୁ ପାଇଲେ । ବିଶ୍ୱା-

୧ – ଦ୍ରୁତାଷ୍ଟାଳଷ୍ଟ ବୃଷ୍ଟିକ କର୍କଟ ହାରିବଳୀ ।

୨—ଏକ ଏବ ଫଣୀ ଶେଷୋ ଧରଣୀଧରଣେ କ୍ଷମଃ ।

୩—ବ୍ୟତିରେକୋଽନଂନ୍ୟାନ୍ୟଂ ବ୍ୟତିରିକ୍ତବନାର୍ଥକ୍ୟୋରତି ଭୁମୁଦାଜୁଙ୍ଗଃ ।

ଦେଖାଇ ନାଗି ଶ୍ରୀରାମ ହେଲେ ଦୃଷ୍ଟିରେ । ବରବୋଧ ନୃପ ହେ ଜନକ ! ଦଣ୍ଡରେ ଦେଖିବେ ଏ ଅଣାଅ ପିନାକ । ୨୬ ।

ବିତପନ କଲେ ସେହି ତପନବଂଶକ ଗର୍ଭ ସଭାରେ ଲେଖା ଅନାଇ ନୃପସକଳ ।ବିଦର୍ଭ, କର୍ଣ୍ଣାଟ, ଲାଟ, ସଉରାଷ୍ଟ୍ର, ମରହଟ୍ଟ, କୁନ୍ତଳ, କେରଳ, ଗୈଳ, ସିନ୍ଧୁ, ଉତ୍କଳ । ବାହ୍ଲୀକ, ଭୁରଷ୍ଟ, ନିଷେଧ । ବଙ୍ଗ, ଅଙ୍ଗ, କଳିଙ୍ଗ, ତ୍ରୈଲଙ୍ଗ, ମଗଧ । ୨୭ ।

ବେଦ, ଚେଦ; ମଘ, ମତ୍ସ୍ୟ, ଦ୍ରାବିଡ଼, ଗଉଡ଼, ମ୍ଳେଚ୍ଛ, ଆରବ ମାଳବ, କଚ୍ଛ, କୁରୁ, ପଞ୍ଚାଳ । ବନାଉଜ, କନାଉଜ, କାଶ୍ମୀର, କାମେଶ୍ୱ, କୁଞ୍ଜଗଳ, ଡାହାଳ, ଲୋମଶ, ପୁଣ୍ଡ୍ର, କୋଶଳ ।ବେଲାଉଳ ଆଦି ଏ ଠିକ । ବିଶେଷି କହିବା କେତେ କହେ ଜନକ ।୨୮।

---

ମିଥ ହେଲେ, ଦଶ୍ଚକ୍ର [ତିଳ୍ଆ] ପ୍ରାୟ ମୁହଁରେ ଅନଳ ଦେଖାଇ ପଡ଼େ ଯେମନ୍ତେ ସେହି ଅନଳକୁ ନାଶଇ ତେତେଣେ ସେ ଖୁରୁକ [ଭଙ୍ଗୁରୁ] ହୁଅଇ । ତଦ୍ରୂପ ରେଟରେ ସେମାନେ ଅଁଦ୍ୟରୁ ଦ୍ରୁତ ପାର୍ଶ୍ୱ ଦେଖାଇ ପଡ଼େ ଧନୁ ଦେଖି ନପ୍ରେଟସ୍ତ ହେଇ ଗଲେ ଏମନ୍ତ ଦୃଷିଲେ । ହେ ଜନକ । ତୁମେ ବରବୋଧ [ଅବୋଧ] ନୋହି ପିନାକ [ହରଧନୁ] ଅଣାଅ । ଏ [ସ୍ୱମ] ଦଣ୍ଡରେ [କାର୍ଭିସ୍ୱରେ] ଦେଖିବେ । ୨୬ ।

୨୭ ୨୮ଶ ପଦ — ବିଶ୍ୱାମିତ୍ର ଏମନ୍ତ କହନ୍ତେ ଜନକ ତପନବଂଶଜ [ଶ୍ରୀମ ଲକ୍ଷ୍ମଣଙ୍କୁ] ସେହି ସଭାସ୍ଥାରେ ବିତପନ କଲେ ।[ଚିତାଇ ଭାବିଲେ] । ଶ୍ରୀମ ଲକ୍ଷ୍ମଣଙ୍କ ଶୋଭାକୁ ଅନାଇ ସକଳ ନୃପତି ଲେଖା ହେଲେ । ସେହି ସେହି ଦେଶର ନୃପତି ଯଥା — ବିଦର୍ଭ, କର୍ଣ୍ଣାଟ, ଲାଟ, ସୌରାଷ୍ଟ୍ର, ମରହଟ୍ଟ, କୁନ୍ତଳ, କେରଳ, ଗୈଳ, ସିନ୍ଧୁ ଉତ୍କଳ, ବାହ୍ଲୀକ, ଭୁରଷ୍ଟ, ନିଷେଧ, ବଙ୍ଗ, କଳିଙ୍ଗ, ତ୍ରୈଲଙ୍ଗ, ମଗଧ, ବେଦ, ଚେଦ, ମଘ, ମତ୍ସ୍ୟ, ଦ୍ରାବିଡ଼ ମ୍ଳେଚ୍ଛ, ଆରବ, ମାଳବ, କଚ୍ଛ, କୁରୁ, ପାଞ୍ଚାଳ, ବନାଉଜ [ବନ୍ୟକୁବ୍ଜା] କନାଉଜ [କାନ୍ୟକୁବ୍ଜ], କାଶ୍ମୀର, କାମେଶ୍ୱ, କୁଞ୍ଜଗଳ, ଡାହାଳ ଲୋମଶ ପୁଣ୍ଡ୍ରକ, କୋଶଳ, ବେଲାଉଳ [ବେଲାବେଳ] ଇତ୍ୟାଦି ଯେତେ ଠିକ ରାଜାମାନେ ଅଛନ୍ତି, ବିଶେଷ କରି କେତେ କହିବା ଜନକ ଏମନ୍ତ କହିଲେ ।।

ବନନ୍ଦ୍ୟ ଭୂପତିମାନେ ବହୁଦିନୁ ଅଛମାନେ ବସ କି କାରଣେ ଧନୁ ଆଣ ନ କହ । ବ୍ୟାଜ ଦମ୍ଭ ପର ପ୍ରତେ ଏବେ ଦଶରଥସୁତେ ଆସିଛନ୍ତି ଦେଖିବାକୁ ବଳାଇ ସ୍ନେହ । ବୋଇଲେ ଆଣିବା ସେ ଗୃହ । ବଦନ୍ତେ ଅଣାଅ କହେ ନୃପକଳାପ । ୨୯ ।

ବଳବନ୍ତ ଏକୁଁ ଏକ ଆଜ୍ଞାକୁ ମଲ୍ଲ ଅନେକ ଯନ୍ତ୍ରେ ଓଟାରି ଆଣିଲେ ମଞ୍ଜୁଷଗୋଟି । ବ୍ରହ୍ମାଣ୍ଡଯାକ ଧଇଲେ ଚଳନ୍ତା ନାହିଁ ଯେ ତିଳେ ଚଟ କଟି କଟି ହୁଁ କାର ନଭେ ପ୍ରକଟି । ବାକ୍ ବୃଢ଼ୁଘ ମଇଥିଳର । ବାଣାସନ ଆସିଲା ବିଳମ୍ବ ନ କର । ୩୦ ।

---

୨୯ଶ ପଦ—ବନନ୍ଦ୍ୟ [ବନ୍ଦ୍ୟ] ଭୂପତିମାନେ ତୁମ୍ଭେ ବହୁଦିନରୁ ଧନୁ ଭାଙ୍ଗିବା ଅଭିମାନରେ ବସ [ବସିଅଛ] କି କାରଣେ ? [କେତେବେଳରେ ଧନୁ ଅଣ ବୋଲି ଅମ୍ଭଙ୍କୁ ନ କହ, ଏଣୁ ତୁମ୍ଭର ଧୈର୍ଯ୍ୟ [୧ଦମ୍ଭ] ଅଥବା [ଦର୍ପ] ବ୍ୟାଜ ପରପ୍ରତେ ହେଉଅଛି । ଅର୍ଥାତ୍ ତୁମ୍ଭର ଧୈର୍ଯ୍ୟ ଅଳ୍ପପ୍ରାୟ ପ୍ରତୀତ ହେଉ ନାହିଁ । ଏବେ ଦଶରଥ ରାଜାଙ୍କ ସୁତ ଦୁହେଁ ସ୍ନେହବଳାଇ ଧନୁ ଦେଖିବା ନିମିତ୍ତ ଆସିଅଛନ୍ତି, ତୁମ୍ଭେମାନେ ବୋଇଲେ ସେ ଶିବଗୃହକୁ ଅଣାଇମା । ଏମନ୍ତ ଜନକ ବଦନ୍ତେ [କହନ୍ତେ] ନୃପ୨କଳାପ [ନୃପସମୂହ] ଧନୁ ଅଣାଅ ଏମନ୍ତ କହିଲେ । ୨୯ ।

୩୦ଶ ପଦ - ଏକୁଁ ଏକ [ଜଣକୁ ଜଣେ ବଳବନ୍ତ ଅଟନ୍ତି ଏରୂପ ମଲ୍ଲମାନେ ଜନକ ରାଜାଙ୍କ ଆଜ୍ଞା ଘେନ "ଯାହାକୁ ବ୍ରହ୍ମାଣ୍ଡଯାକ ଧଇଲେ ତିଳପ୍ରମାଣ ଚଳିବ ନାହିଁ" ଏରୂପ ୧ମଞ୍ଜୁଷକୁ ଯନ୍ତ୍ରବଶରୁ ଓଟାରି ଆଣିଲେ । ସେ ମଞ୍ଜୁଷ ଚରଚର କଟ କଟ ଶବ୍ଦ ମଲ୍ଲମାନଙ୍କର ହୁଁ ହୁଁ କାରି ରବ ନଭେ [ଆକାଶରେ] ଯାଇଁ ପ୍ରକଟହେଲା । ସେ ସମୟରେ ମୈଥିଳ [ଜନକଙ୍କ] ବାକ୍‌ଗୁରୁଘ ପ୍ରକାଶ ହେଲା । ହେ ନୃପମାନେ ବାଣାସନ [ଧନୁ] ଆସିଲା । ତୁମ୍ଭେ ବିଳମ୍ବ ନ କର ବେଗେ ଆସ । ୩୦ ।

---

୧—ଦମ୍ଭସ୍ତୁ କୈତବେ କଲ୍କେ ଇତି ମେଦିନୀ ।

୨— କଳାପୋ ଭୂଷଣେ ବର୍ହେ କାଞ୍ଚ୍ୟାଂ ତୂଣେ ସମୂହେ ଯୋଃ ଇତି ବିଶ୍ୱଃ ।

୧— ପିଟକଃ ପେଟକଃ ପେଡ଼ା ମଞ୍ଜୁଷାଥ ବିହଙ୍ଗିକା ଇତ୍ୟମରଃ ।

ବଳବାନେ ଅଧିକେ କେ ଜାଣୁଁ କଷ୍ଟୀ କାର୍ମୁକେ ସମ୍ମୂଳେ ହୋଇଲେ ସିନା ସୁବର୍ଣ୍ଣ ସବେ । ବଇଦେହକ ଯେ ଆମ୍ଭେ ଭୂଷଣ କର୍ମ ଆରମ୍ଭେ କନ୍ୟା ରତ୍ନ ସଙ୍ଗେ ଯୋଗ କରନ୍ତୁଁ ତେବେ । କଟଶ୍ରେ ଯେ ଗଲେ ସମସ୍ତ । ବ୍ୟାଘ୍ରପତନ ଯନ୍ତ୍ରାକୁ ଉଣ୍ଡିଲ ମତ ।୩୧।

ବିଶ୍ୱବସୁ ବିଶ୍ୱବସୁ ଏକସ୍ଥାନେ ଏକ ବସୁଁ ଭାବ ନେଇ ବୁଜ ମୁଖ ପଛକୁ କଲେ । ବିଟଳ ନିନ୍ଦ୍ରା ହରି ବୃଷ ବିଟଳ ନିନ୍ଦ୍ରା ହରି ବୃଷ ଦେଖି

୩୧ଶ ପଦ—ଜନକ ବାକ୍ୟଗୁଡ଼ିଏ ଏରୂପେ ପ୍ରକାଶ କଲେ । ସତ୍ୟ ତୁମ୍ଭେ (ତୁମ୍ଭମାନେ) ସୁବର୍ଣ୍ଣ (ଉତ୍ତମ କାନ୍ତି ଯୁକ୍ତ) ଅଟ । ଅଥଚ ତୁମ୍ଭେ ସୁବର୍ଣ୍ଣ (କନକ) ହେଲ । ବଳ (ସାମର୍ଥ୍ୟ) ବାନ (ତେଜ) ହେଲ । ତହିଁରେ ଅଧିକ କେ ଭେଦ । କାର୍ମୁକ (ଧନୁ) କଷ୍ଟୀ (ପଥର) ହେଲା, ତହିଁରେ କଷି ବଳ ବନ (ବାନ ବଳରେ) ଅଧିକ ହେବ ତାହା ଆମ୍ଭେ ଜାଣିବୁ । ସେହ ଏହା ସମ୍ମୂଳ ହେଇଲ ସିନା ଉତ୍ତମସୁନା ଏ ବୋଲି । ଭୂଷଣ (ଅଳଙ୍କାର) କର୍ମ ଆରମ୍ଭ କରିବାରେ ବୈଦେହୀକ (ଆମ୍ଭେ ବିଦେହ ଦେଶ ରାଜା) [1] ବୈଦେହୀକ (ବଣିକ) ହେଲୁ । କନ୍ୟାରତ୍ନ (ସୀତା) ରତ୍ନ ହେଲେ, ତାହାଙ୍କ ସଙ୍ଗରେ ଯୋଗ କରିବୁ । ଯେବେ ଉତ୍ତମ ସୁନା ଏ ଏମନ୍ତ ନ ଜାଣିବୁ ତେବେ କନ୍ୟାରତ୍ନ ସଙ୍ଗେ ସଂଯୋଗ ନ କରିବୁ ଏମନ୍ତ ଭାବାର୍ଥ । ଏମନ୍ତ ଜନକରାଜାଙ୍କ ବାକ୍ୟଗୁଡ଼ିକ ଶୁଣି ସମସ୍ତ ରାଜାମାନେ ସଭାରୁ ଉଠି ଧନୁ ସମୀପକୁ ଗଲେ । ବ୍ୟାଘ୍ରପତନ (ବ୍ୟାଘ୍ର ପଡ଼ିଥିବା) ଯନ୍ତ୍ରାକୁ ଯିବାର ପରି ହେଲେ ।୩୧।

୩୨ଶ ପଦ—ବିଶ୍ୱବସୁ (ସୂର୍ଯ୍ୟ) ବିଶ୍ୱବସୁ (ଅଗ୍ନି) ଦୁହେଁ ଏକସ୍ଥାନ (ଏକସ୍ଥାବସ୍ଥିତ ହୋଇ) ଅଛନ୍ତି । କି ବସୁଁ (କେଉଁ ସକାଶରୁ) ଏମନ୍ତ ମନରେ ଭାବ ନେଇ ବୁଜ ମୁଖ ପଛକୁ କଲେ (ଉଠିନ ପାରିଲେ) । [1] ବିଟଳ (ଗୁହାରେ) ନିଦ୍ରା କରିଥିବା ହରି (ସିଂହକୁ) ଦେଖି [2] ବୃଷ

[1] —ବୈଦେହକଃ ସାର୍ଥବାହୋ ବୈଦେହୋ ବଣିଜୋ ବଣିକ୍ ଇତ୍ୟମରଃ ।

[2] —ବିଲଂ ଗୁହା ଗୁହାସ୍ଥାଂ ଚ ଇତି ମେଦିନୀ ।

[2] -ବୃଷୋ ଧର୍ମେ ବୃଷଃ ଶ୍ରେଷ୍ଠୋ ବୃଷୋଽଗୌର୍ମୂଷିକେ ବୃଷଃ । ଇତି ଧ୍ୱନିମଞ୍ଜରୀ

ଯଥା ପଳାପ୍ଲୁତ ତଥା ହୋଇଲେ । ବାସେ ଯାଇ କେତକୀ ପାଶେ ବସେ ପଳାଶେ ଭୃଙ୍ଗାଳି କି ସ୍ୱଯଶୁଁ ସେ ।୩୨।

ବୈରାଗ୍ୟ ଆକୁଳ କୂଳେ ରହିଲେ ଭୂମିପକୁଳେ ଭାଷିଲେ ଜନକ ଗମ ଶ୍ରୀରାମ ବେଗେ । ବତାଇ ସୁମିତ୍ର ବସ୍ତ୍ର ନାହିଁ ସୁମିତ୍ରାର ସ୍ୱଚ୍ଛ ନମ୍ରେ ଧଇଲେ ବାଛୁବେ ଗୃପେ ଓଲଗେ । ବଶୁ ମିତ୍ର ନେତ୍ରରୁ ଜାଣି । ବାହାରିଲେ ଶସ୍ତ୍ର ଦେଇ ଲକ୍ଷ୍ମଣ ପାଣି ।୩୩।

---

(ଷଣ୍ଢ) ଯଥା, ବଳେ (ବଳରେ) ନତ୍ୱା କରିଥିବା ୩ ତ୍ରାଣ (ସର୍ପକୁ) ଦେଖି ବୃଷ (ମୂଷିକ) ଯଥା ପଳାପ୍ଲୁତ ହୁଅନ୍ତି ତଥା ରାଜାମାନେ ଧନୁର ତେଜ ଦେଖି ସେଠାରୁ ପଳାଇଲେ । ଭୃଙ୍ଗାଳି (ଭ୍ରମରଶ୍ରେଣୀ) କସ୍ୱଶୁଁ (କୁତ୍ସିତ ସ୍ୱଭାବରୁ) କେତକୀ କୁସୁମର ପାଶକୁ ଯାଇଁ ବାସହେତୁରୁ ପଳାଶର (ପତ୍ରରେ) ବସଇ । କଣ୍ଟକରେ ପକ୍ଷ ଛିନ୍ନ ଭୟରୁ ରହି ନ ପାରି ପଳାଏ, ସେହିପରି ରାଜାମାନେ ହେଲେ ।୩୨।

୩୩ଶ ପଦ—ବୈରାଗ୍ୟ (ବିପକ୍ଷତ) ତଦ୍ଦ୍ୱାରା ହେଲା ଯେଉଁ ଆକୁଳ ସେ କୂଳ (ତଡ଼ାଗ) ହେବ । ତହିଁରେ ଭୂମିପକୁଳ (ରାଜସମୂହ) ବସିଲେ । ତାହା ଜାଣି ଜନକ ଭାଷିଲେ ହେ ଶ୍ରୀରାମ ! ଆପଣ ବେଗରେ ଗମନ କର । ଏହା ଶୁଣି ସୁମିତ୍ରାବତ୍ସ (ଲକ୍ଷ୍ମଣ) ବତାଇଲେ (ରାମଙ୍କୁ କହିଲେ) ଆମ୍ଭର ଏଠାରେ ସୁମିତ୍ର ନାହିଁ (ଉତ୍ତମ ମିତ୍ରଲୋକ ନାହିଁ ।) ଅରି (ଶତ୍ରୁ) ସ୍ୱଚ୍ଛ ହୋଇଅଛନ୍ତି । ନମ୍ରେ (ମଥା ନମ୍ର କରି) ଧଇଲେ ଗୃପକୁ ଓଲଗିଲେ ବୋଲି ବାଛୁବେ । ଏଣୁ ମଥା ନମ୍ର ନ କରି ଗୃପକୁ ଧରିବା ହେବେ । ଏ ସମୟେ ବଶୁ ମିତ୍ର ନେତ୍ର ଇଙ୍ଗିତ କରିବାରୁ ତାହା ଜାଣି ରାମଚନ୍ଦ୍ର ଲକ୍ଷ୍ମଣଙ୍କ ପାଣିରେ ଶସ୍ତ୍ର ଦେଇ (ଧନୁଶର ସମର୍ପଣ କରି) ବାହାର ହେଲେ ।୩୩।

---

୩—ଦ୍ରୁଶବ୍ଦା ଭୁଜଙ୍ଗେନ୍ଦ୍ରେ ଯମୋପେନ୍ଦ୍ର ମସ୍ତିଚଷୁ ।
ହିଂସ୍ରାଶ୍ୱଦି ଭେକାହ୍ୱ ଶୁକଲେକାନ୍ତଭେଷ ନା ଇତି ମେଦିନୀ ।
୧—ଅଥ କୂଳଂ ତଟେ ସ୍ତୂପେ ସୈନ୍ୟପୃଷ୍ଠତଡ଼ାଗୟୋରିତି ମେଦିନୀ ।

ବିକ୍ରମଗତିକି ବନ୍ଧି ଶରଧା ରୂପକୁ ସୁନ୍ଦରୀ କେଶରୀ ଗିରିମଧ୍ୟରୁ ଯେସନ୍ତ ସ୍ଵଭାବେ । ବୈରାଟମୂର୍ତ୍ତି ଯେ ଧୃତ ମଞ୍ଜୁ ମଞ୍ଜୁଷରୁ ସତ ଧନୁ ଆକର୍ଷି ଆଣିଲେ ପନ୍ନଗ ଭାବେ । ବନପୁଷ୍ପମାଳା ମାଳିକ । ବନ୍ଧୁପ୍ରୁକୁ ବୃନ୍ଦାରୁ ଟେକିଲା ତୁଳ ।୩୭।

ବକ୍ତ୍ରେ, ଗଳ ,ରାଜନ୍ୟଙ୍କ ବକ୍ତ୍ରେ, ଜନନ ଜନକ ଏହି ଗିର ଶରଭେଦ ହୃଦୟ କରେ । ବିଜୟୀ ଏ ନି ପୁରର ବିଜୟୀ ଏ ନି ପୁରର

---

୩୭ଶ ପଦ ଗିରି ମଧ୍ୟରୁ (ଗିରି ଗୁହାରୁ) କେଶରୀ (ସିଂହ) ଯେସନ୍ତେ ବିକ୍ରମ ଗତିକି ବହିଭି ସେହି ସ୍ଵଭାବେ (ସ୍ଵରୂପେ) ରାଜସଭା ମଧ୍ୟରେ ବିକ୍ରମ ଗତି ବିଧାନ କରି ରୂପ (ଧନୁ) ସୁନ୍ଦରୀ ଶ୍ରିକ ଯୁକ୍ତ ହେଲେ । ବୈରାଟମୂର୍ତ୍ତି (ଯଜ୍ଞି ସ୍ଵମୂର୍ତ୍ତି) ଧୃତ ଧରି ଅଛନ୍ତି ଯେ ରାମ) ସେ ବୈରାଟମୂର୍ତ୍ତି (ବିରାଟମୂର୍ତ୍ତି) ହେଲେ ଅର୍ଥାତ ଗରୁଡ଼ ହେଲେ । ପନ୍ନଗଭାବରେ (ସର୍ପଭାବରେ) ମଞ୍ଜୁ (ମଞ୍ଜୁଳ) ମଞ୍ଜୁଷରୁ (ପେଡ଼ାରୁ) ଧନୁ ଓଟାରି ଆଣିଲେ ଗରୁଡ଼ ବିଳରୁ ସର୍ପକୁ ଓଟାରି ଆଣିଲା ପରି ଆଣିଲେ ଏହି ଭାବ । ମାଳିକ (ମାଳାକାର) ବନ୍ଧୁପ୍ରୁକୁ (ବନ୍ଧୁଗଣକୁ) ୧ ବନପୁଷ୍ପମାଳା (ଶିବମଲ୍ଲି ପୁଷ୍ପମାଳା) ଅଥବା ଯେଉଁ କୁସୁମମାଳା ବୃନ୍ଦାରୁ ଟେକିଲା ୨ ତୁଳ (ଟେକିଲା ସଦୃଶ) ହେଲା ।୩୭।

୩୮ଶ ପଦ—ଏ (ରାମଚନ୍ଦ୍ର) ନି ପୁର (ସ୍ଵର୍ଗ ମର୍ତ୍ତ୍ୟ ପାତାଳର) ବିଜୟୀ କି ହେଉଛୁ ? ନି ପୁର (ନି ପୁରାସୁର) ତାହାରି ବିଜୟୀ ହର ତାହାଙ୍କ ଧଇଲା ଧନୁକୁ ଅନାୟାସରେ (ଅକ୍ଳେଶରେ) ଧଇଲା ଏମନ୍ତ ଜନକ ବକ୍ତ୍ରରୁ (ମୁଖରୁ) ଜନନ (ଜାତ ହେଲା) ଯେଉଁ ଗିର (ବଚନ) ସେ ଶର ହେଲା । ସେହି ଶର ରାଜନ୍ୟ (ମୂର୍ଦ୍ଧାଭିଷିକ୍ତ ରାଜା) ମାନଙ୍କର ୧ ବକ୍ତ୍ରରେ (ପଞ୍ଜରେ) ଗଳ (ସାଞ୍ଜୁ ଛନ୍ନ କରି) ହୃଦୟକୁ ଭେଦ ନ କଲା ତେଣୁ

---

୧—ଶିବମଲ୍ଲୀ ପାଶୁପତ ଏକାଷ୍ଠୀଲା ବକୋ ବସୁରତାମଞ୍ଜୁଃ । ସୁବକ ବକପୁଷ୍ପ ସଂବଦତ ମେଦନୀ ।

୨—ସଦୃଶାର୍ଥରେ ତୁଳ ତୁଣ ତୁଷ ଏ ପ୍ରତ୍ୟୟମାନ ହୁଅନ୍ତି ।

୧—ବକ୍ତ୍ରାସ୍ୟେ ବଦନଂ ତୁଣ୍ଡମିତ । ଭାଷାରେ ପାଞ୍ଜୁକୁ ବକ୍ତ୍ର ବୋଲି ।

ଧଇଲ ଧଇଲ ଧନୁ ଅନାୟାସରେ । ବିଦ୍ରାବକୁ ଲଙ୍କାରେ ଭାଳ । ବିପ ଳକେ ଅନାଇଲେ ନ ପାଶ ରଳ ।୩୫।

ବରାଳାବରାଙ୍ଗୀ ସୀତା ବକ୍ଷୀକ ବରଙ୍ଗ ଚନ୍ତା ଜୀବନ ଯାଉ ନେ ହେଲେ ହେଲେ ଏ ବର । ବିମଳିତ ନେତ୍ର ଫିଟେ ମୁଦ୍ରିତ କଞ୍ଜ ଜ ଫୁଟେ ପ୍ରମୋଦଦାୟକ ପରଭୃତଙ୍କ ସ୍ୱର । ବ୍ୟଞ୍ଜକ ତା-କେ ବୋଲୁ ଥିଲା । ବିଧୁର ସେ ହନବନ୍ଧୁ ଦର୍ଶନେ ହେଲା ।୩୬।

ଲଙ୍କାରେ ହେମାନେ [1]ବିଦ୍ରାବକୁ (ପଳାୟନକୁ) ଭଜିଲେ (ପଳାଇଯିବାକୁ ବିଚାର କଲେ) । ତଟସ୍ଥ ହୋଇ ଚଳି ନପାରି ବିପଳକରେ (ନିଷ୍ପଳକରେ) ଅନାଇ ରହିଲେ ।୩୫।

୩୬ଶ ପଦ—ବରାଳା (ଶୋଭା) ବରାଙ୍ଗୀ (କୁଙ୍କୁମପ୍ରାପ୍ତ ଅଙ୍ଗ ଯାହାଙ୍କର) ଏମନ୍ତ ଯେ ସୀତା ସେ ବରର (ଶଙ୍କରଙ୍କ) ଚନ୍ତା କଲେ (ଚକ୍ଷୁ ବୁଜି ଭାବନା କଲେ) । କି ବୋଲି ? ଏ ପୁରୁଷ ମୋ ହର ବର ନୋହିଲେ ଜୀବନ ଯାଉ, ଏ ବର ହେଲେ ଜୀବନ ଯାଉ ଏମନ୍ତ ସ୍ମରଣ କଲା ସମୟରେ ପର (ପ୍ରଧାନ) ଭୃତଙ୍କ (ଭୃତ୍ୟଙ୍କ) ସ୍ୱର "ଧନୁ ଧଇଲ" ଏମନ୍ତ ଶବ୍ଦ ପ୍ରମୋଦଦାୟକ ହେବା, ତେଣୁ ସୀତାଙ୍କ ବିମଳ (ନିର୍ମଳ) ନୟନ ଫିଟିବା । ନେତ୍ର ବିକଶିତ କରି ଦେଖିଲେ । ମୁଦ୍ରିତ କଞ୍ଜ(ପଦ୍ମ)ଫୁଟିଲ୍ଣି କି ଏମନ୍ତ ଦିଶିଲା ଏରୂପ ଉତ୍ପ୍ରେକ୍ଷା । ପରଭୃତଙ୍କ ସ୍ୱର ପରଭୃତ(କୋକିଳ) ସ୍ୱର ରୂପେ ପ୍ରମୋଦଦାୟକ ହେଲା ମୁଦ୍ରିତ କଞ୍ଜ ଫୁଟିଲା । ଏଣୁ ପ୍ରଭାତକାଳ ସୂଚିତ ହେଲା । ତା ବ୍ୟଞ୍ଜକ (ମୁଦ୍ରିତ) କି ଯେନ (କି ପ୍ରକାଶ) ଗଲା ? [2]ବିଧୁର ସେ (ରାମଚନ୍ଦ୍ର ବୋଲି ବୋଧ ହେବାରେ ମୁଦ୍ରିତ ହୋଇଥିଲା) ଚନ୍ଦ୍ର ପ୍ରକାଶରେ ପଦ୍ମ ମୁଦ୍ରିତ ହୁଅଇ ଏବେ ଧାନଜନ ବାନ୍ଧବ (ରାମ) ଦିନବନ୍ଧୁ (ସୂର୍ଯ୍ୟ) ହେଲେ ତାହାଙ୍କ ଦର୍ଶନ ହେଲା ସେ ନେତ୍ର ପଦ୍ମର [1]ବ୍ୟଞ୍ଜକ କପାଳି ରହନ୍ତା ? ସେ ବିଧୁର (ବିଃଶ୍ଳେଷ) ହେଲା ।୩୬।

[1]—ବିଦ୍ରାବୋଦ୍ରାବସଂଦ୍ରାବ ଇତ୍ୟମରଃ ।

[2]-ବେକଳ୍ୟେଽପି ପ୍ରତିଶ୍ଳେଷେ ବିଧୁରଂ ବିକଳେ ତ୍ରିଷୁ ଇତି ତ୍ରିକାଣ୍ଡଶେଷଃ

[1]—ବ୍ୟଞ୍ଜକଂପ୍ରି ସ୍ୱାକାର୍ଯ୍ୟବିଲକ୍ଷେଷ୍ୱପିପୀଡ଼ନେ ଇତି ମେଦିନୀ ।

ବୃନ୍ଦାରକ-ବୃନ୍ଦାରକେ ଯେ ସେ ପୁଚ୍ଛିଲେ ଜନକେ ଦେବା ସିଞ୍ଜିନୀ ଉତ୍ତମ ବୋଲି ଯେ କହି । ସାର୍ଥ୍ୟ ଦମ୍ଭ ବେନ ଯୋଗ ଅଷ୍ଟନାଗେ॥ ଅଷ୍ଟନାଗେ ଧର ଧରଣୀକି ବୋଲେ ଲକ୍ଷ୍ମଣ ତହିଁ । ବଳକଳଟେ ପୃଥ୍ୱୀ ସହିଲେ । ବସୁ ଦ୍ବୁଳ ପାଦଅନ୍ତେ ପଡ଼ନ୍ତେ ଛଳେ ।୩୭।

ବୃନ୍ଦାରଙ୍କୁ ଉପରେ ପଦେ ରାମ ରଖିଲେ ସମଦେ ଜାଣିଲେ ତା ଅତ୍ୟନ୍ତ ଅଧୈର୍ଯ୍ୟ ହେବାର । ବାସୁକୀଙ୍କ ବହେ କୂର୍ମ ବହିଲ ସେ

---

୩୭ଶ ପଦ – ମଞ୍ଜୁଷାରୁ ଧନୁ ଆଣିଲା ପରେ ୧ବୃନ୍ଦାରକ ( ଦେବତା-ମାନେ ତାଙ୍କ ମଧ୍ୟରେ) ବୃନ୍ଦାରକେ (ଶ୍ରେଷ୍ଠ) ରାମ ଜନକଙ୍କୁ ପଚାରିଲେ ଧନୁରେ ସିଞ୍ଜିନୀ (ଗୁଣ) ଦେବା ? ଜନକ କହିଲେ ଉତ୍ତମ, ଗୁଣ ଦେବା ହେଉ । ତହିଁ (ସେହି ସମୟରେ), ଲକ୍ଷ୍ମଣ (କହିଲେ) ସାର୍ଥ୍ୟ (ବଳ) ଦମ୍ଭ (ଧୈର୍ଯ୍ୟ) ବେନ (ଦୁହିଁଙ୍କ) ଯୋଗରେ ଆହେ ୨ ଅଷ୍ଟନାଗେ (ଅଷ୍ଟଦିଗ୍‌ଗଜମାନେ) ୩ଅଷ୍ଟନାଗେ (ଅଷ୍ଟକୁଳନାଗ) ଧରଣୀକି ଧର । ପୃଥ୍ୱୀ ବଳକଳଟେ (ବଳକଳ ସବୁଟେ) ସହିଲା, ପାଦ ଅନ୍ତେ ( ପାଦପ୍ରାନ୍ତେ ) ବସୁ, ଧନୁ ଦ୍ବୁଳ ହେମା ଉପରେ ବସନ୍ତେ ଛଳେ (ଛଳପୂର୍ବରେ) ପଡ଼ିବ ।୩୭।

୩୮ଶ ପଦ—ରାମ ତାର (ପୃଥ୍ୱୀର) ଅତ୍ୟନ୍ତ ଅଧୈର୍ଯ୍ୟ ହେବାର ଜାଣିଲେ, ପଦର ବୃନ୍ଦାରଙ୍କୁ ଉପରେ ସମଦ ( ସଗର୍ବ ) ହୋଇ ଧନୁ ସ୍ଥାନକୁ ରଖିଲେ । ସେ କେମନ୍ତ ଦଶିଲା ? କୂର୍ମ ( କମଠ ) ବାସୁକୀଙ୍କ (ସର୍ପରାଜକୁ ) ବହିଲା କି ସେହି ମନୋରମକୁ ବହେ । ଗୁଣବନ୍ତ (ରାମ) ତତ୍ପର ହୋଇ ଗୁଣଦେଇ କହିଲେ (ଧନୁରେ ଗୁଣ ଦେଲେ) । ସେ କାଳରେ ଅଜଗବ (ହରଧନୁ) ବାମକରରୁ ରହି ବନ୍ଧୁର କଲା ମେରୁର କୈନାଶିକ

---

୧ – ବୃନ୍ଦାରକଃ ସୁରେ ପୁଂସି ମନୋଜ୍ଞଶ୍ରେଷ୍ଠୟୋସ୍ତ୍ରିଷୁ । ଇତି ମେଦିନୀ ।

୨ – ଐରାବତଃ ପୁଣ୍ଡରୀକୋ ବାମନଃ କୁମୁଦୋଽଞ୍ଜନଃ ।
ପୁଷ୍ପଦନ୍ତଃ ସାର୍ବଭୌମଃ ସୁପ୍ରତୀକଶ୍ଚ ଦିଗ୍‌ଗଜାଃ ଇତ୍ୟମରଃ ।

୩ –ଅନନ୍ତୋ ବାସୁକି ପଦ୍ମୋ ମହାପଦ୍ମୋଽପି ତକ୍ଷକଃ ।
କର୍କୋଟଃ କୁଳିକଃ ଶଙ୍ଖଃ ଇତ୍ୟଷ୍ଟୌ ନାଗନାୟକାଃ। ଇତି ବିକାଣ୍ଡଶେଷ

ମନୋରମ ଗୁଣବନ୍ତ ଗୁଣ ଦତ୍ତ କଲେ ସତ୍ୱର । ବୈନାଶିକ ନାଡ଼ୀ ମୋ ହେଲା । ବାମେ ରହି ଅଜଗବ ବସ୍ୱର କଲା ।୩୮।

ବଗ୍ଡ଼ବଶେ ଓଟାରେ ପ୍ରଚଣ୍ଡମଲ୍ଲ ହସ୍ତରେ ଏରଣ୍ଡଦଣ୍ଡ ପଡ଼ିଲା ପରି ଭାଜିଲା । ବ୍ରହ୍ମାଣ୍ଡଭାଣ୍ଡ ପୂରିତ ପ୍ରଳୟକାଳେ ଏକତ୍ର ଗୃହମେଘ ଗର୍ଜିଲ ଶବଦ ଗଞ୍ଜିଲା । ବିବୁଧେ ମୂର୍ଚ୍ଛିତ ଚେତାଭେ । ବେଳେ ପ୍ରାଣ । ଅମୃତ ରଖିଲା ବସ୍ତୃରେ ।୩୯।

ବସୁଧାଭୃତେ ଟଳିଲେ ବସୁଧାଭୃତେ ଚଳିଲେ ସେହି ତରଙ୍ଗିତ ଧାତ୍ରୁ ଧାଗ୍ର ହେଉଛି । ବଳ ବର ବଳୀ ଦର ଆନନ୍ଦ ହୋଇବ ମୋର

---

ନାଡ଼ୀ ହେଲ । (ଏହ୍ଢଣି ବିନାଶ ହେବ ) ଅର୍ଥାତ୍ ଅଜଗବ ନାମକୁ କୃତ୍ତିକାନକ୍ଷତ୍ର ହେଲା । ଦାଶରଥ ନାମକୁ ପୂର୍ବଭାଦ୍ରପଦ ହେଲା । ତାଙ୍କୁ ସେ ବୈନାଶିକ ନାଡ଼ୀ ହେଲା ।୩୮।

୩୯ଶ ପଦ—ବଗ୍ଡ଼ବଶ (ପ୍ରକଟ ବଶରେ) ଗ ଡ଼କର ଓଟାଉନ୍ତେ ୧ପ୍ରଚଣ୍ଡମଲ୍ଲ ହସ୍ତରେ ୨ଏରଣ୍ଡ ଦଣ୍ଡ (ଗବଦଣ୍ଡ) ପଡ଼ିଲେ ଯେରୂପ ଭାଙ୍ଗଇ ତଦ୍ରୂପ ଧନୁ ଭାଜିଲା । ଧନୁଭଙ୍ଗରୁ ନିର୍ଗତ ହେଲା ଯେଉଁ ଶବ୍ଦ ସେ ବ୍ରହ୍ମାଣ୍ଡରେ ପୂରିତ ହେଲା । ପୂର୍ଣ୍ଣ ହୋଇ ପ୍ରଳୟକାଳରେ ଏକତ୍ର ହୋଇ ଗୃହମେଘ (ସମ୍ବର୍ତ୍ତକ, ଆବର୍ତ୍ତକ, ଦ୍ରୋଣ, ପୁଷ୍କର) ଗର୍ଜିଲେ ଯେଉଁ ଶବ୍ଦ ହୁଏ ତାକୁ ଗଞ୍ଜିଲା ( ତା ଠାରୁ ବଳିଲା ) । ସ୍ୱର୍ଗରେ ଥିଲେ ବିବୁଧେ (ଦେବତାମାନେ) ସେ ଶବ୍ଦ ଶୁଣି ମୂର୍ଚ୍ଛିତ ହେଲେ । ପୁଣି ଚେତା ହେବାରେ ସେ ଏମନ୍ତ ବସ୍ତୃରଲେ ଅମୃତ ଅମ୍ବର ବେଳେ ( ଅଟରେ ) ପ୍ରାଣ ରଖିଲା । ଅମୃତ ପାନ ନ କରିଥିଲେ ପ୍ରାଣ ରହୁ ନଥାନ୍ତା ଏ ଭାବ । ଏହାଦ୍ୱାରା ଧନୁଭଙ୍ଗ ଶବ୍ଦ ସ୍ୱର୍ଗଲୋକ ବ୍ୟାପିଥିବାର ସୂଚିତ ହେଲା ।୩୯।

୪୦ଶ ପଦ—ସେ ଶବ୍ଦ ଶୁଣି ବସୁଧାଭୃତ ( ମହୀପାଳ ) ମାନେ ଟଳିଲେ (ଟଳି ପଡ଼ିଲେ) ବସୁଧାଭୃତ ( ପର୍ବତମାନେ ) ଚଳିଲେ । ସେ

---

୧—ପ୍ରଚଣ୍ଡୋ ଦୁର୍ବହେ ଶ୍ୱେନେ କରବୀରେ ପ୍ରତାପିନୀତ ମେଦିନୀ ।

୨—ଏରଣ୍ଡ ଉରୁବକସ୍ତୁ ରୁଚକସ୍ତି ଧକଞ୍ଚକସ୍ୱ ଇତ୍ୟମରଃ ।

ଯେବେ ଶତକୋଟି ଶତକୋଟି ତ ବୃଷ୍ଟି । ବିଚାର କି ନରେ କିନ୍ନରେ ।
ବିଚେତନ ହେଲେ ଯହିଁ ନରକ-ନରେ ।୪୦।

ବିଭ୍ରଷ୍ଟ ଯେ ବ୍ରହ୍ମଗୁରୁ ଧ୍ୟାନ ତହିଁରେ ବିଧିର ବିଭ୍ରଷ୍ଟ ଯେ ବ୍ରହ୍ମ-ଗୁରୁମୁଖୁ ବେଦହିଁ । ବିଖଣ୍ଡନଚଣ୍ଡୀମାନ ଈଶରେ ସ୍ନେହ୍ର ନ ହୋଇ

ତରଳତା (ତରଳତ୍ୱ) ୧ ଧାତୁଦ୍ୱାରା (ଗୈରିକ ) ହେଲା । ବଳିବର (ବଳିଶ୍ରେଷ୍ଠ) ବଳି ( ବଳିରାଜା ) ଯେବେ ( ଯେବେ ) ୨ ଶତକୋଟି (ଶତକୋଟି ) ଶତକୋଟି ( ବଜ୍ର ) ବୃଷ୍ଟି ହେଲା । ମୋହର ୩ ବର (ଚିରଜୀବବର-ଇନ୍ଦ୍ର ହେବା ବର) ଆଉ ହେବ କି ? (ଏହିକ୍ଷଣି ନାଶ ଯିବ ଏ ଶଙ୍କା ହେଲା ) । ଏହାଦ୍ୱାରା ଶବ୍ଦ ପାତାଳପୁର ବ୍ୟାପିବାର ସୂଚିତ ହେଲା । ନରମାନେ କିନ୍ନରମାନେ ବିଚେତନ ହେବାର ବିଚାର କି ? (ବିଚାର ନୁହଇ) । ଯେ ( ଶବ୍ଦ ) ୪ ନରକରେ (ନରକପୁରରେ ) ଥିବା ନରମାନେ ସେମାନଙ୍କୁ ବିଚେତନ କଲା (ଉପରେ କହିଁ ଅସ୍ପୃଶିତ ତଳେ ବିନିଦଂଶନ ଏହାକୁ ଜାଣି ନ ପାରିଲେ ) ।୪୦।

୪୧ଶ ପଦ—ତହିଁରେ ( ସେ ଶବ୍ଦରେ ) ୧ବ୍ରହ୍ମଗୁରୁଙ୍କ ଧ୍ୟାନ(ବ୍ରହ୍ମ ଧ୍ୟାନ ) ବିଭ୍ରଷ୍ଟ (ଭ୍ରଂଶ ) ହେଲା । ତହିଁରେ ତ୍ରି ବିଧିର ( କି ବିଧିର କରିବା ) ବ୍ରହ୍ମ (ବ୍ରହ୍ମା ) ତାହାଙ୍କ ଗୁରୁମୁଖରୁ ବେଦ ବିଭ୍ରଷ୍ଟ ହେଲା, ବ୍ରହ୍ମା ବେଦ ପଠନ କରି ନ ପାରିଲେ । ଚଣ୍ଡୀ ( କୋପନାସ୍ତ୍ରୀର ) ମାନ ବିଶେଷରେ ଖଣ୍ଡନ ହୋଇ ୨ ଈଶ ( କାତ୍ୟାୟନୀରେ ) ସ୍ନେହ ହେଲା ।

୧-ମନଃଶିଳାଦ୍ୟୌ ଶୈଳ ଧାତ୍ୱୌ ବିଶେଷାଦ୍‌ଗୈରିକେଽପି ଚ ଧାତୁରିତି ମେଦିନୀ
୨—ଶତକୋଟିଃ ସ୍ୱରୁଃ ଶମ୍ବୋ ଦମ୍ଭୋଳିରଶନିର୍ଦ୍ୱୟୋରିତ୍ୟମରଃ ।
୩—ଅଶ୍ୱତ୍ଥାମା ବଳିର୍ବ୍ୟାସୋ ହନୁମାଂଶ୍ଚ ବିଭୀଷଣଃ ।
କୃପଃ ପରଶୁରାମଶ୍ଚ ସପ୍ତୈତେ ଚିରଜୀବିନଃ । ବଳିରନ୍ଦ୍ରୋ ଭବିଷ୍ୟତି ।।
୪—ସ୍ୟାନ୍ନାରକସ୍ତୁ ନରକୋ ନିରୟୋ ଦୁର୍ଗତିଃ ସ୍ତ୍ରିୟାମିତ୍ୟମରଃ ।।
୧—ବ୍ରହ୍ମବିଜ୍ଞ ଗୃହୀ ବାନପ୍ରସ୍ଥୋ ଭିକ୍ଷୁଶ୍ଚତୁଷ୍ଟୟଂ ଇତ୍ୟମରଃ ।
୨—ପ୍ରଭୁଃଶଙ୍କରମ୍ୟୋଃଶ ଇତି ତ୍ରିକାଣ୍ଡଶେଷଃ ।

ବିଖଣ୍ଡନ ଚଣ୍ଡୀମାନ ଈଶରେ ସ୍ନେହୀ । ବାହାରିଲେ ବ୍ରହ୍ମାଣ୍ଡ ଫୁଟି ।
ବିରବ ସମସ୍ତଙ୍କର ଜ୍ଞାନ ପ୍ରକଟି ।୪୧।

ବୀରେଶ୍ୱର କରି ପୂଜା କଲେ ଏ ମିଥିଳାବରାଜା ବସାଇ ରଘୁ-
ଉତ୍ତମଙ୍କୁ ସିଂହାସନରେ । ବିହାୟସେ ଦେବେ ଆସେ ରାମ ଦର୍ଶନ
ଲାଳସେ ଶବ୍ଦ ଶୁଣି ରାବଣ ମିଳିଲା ସେଠାରେ । ବୀର ସେ ବାହୁଡ଼ି
ବିରସେ । ବର୍ଣ୍ଣାଳିଣ ପଦେ ଗୁନ୍ଦ ଉପେନ୍ଦ୍ର ଭାଷେ ।୪୨।

—×—

ଏ କଥାକୁ ବଡ଼କରି ନ ଦେଖ । ୩ ଚଣ୍ଡୀ (ପ୍ରଚଣ୍ଡଙ୍କ) ୪ମାନ (ପ୍ରଣୟ ମାନ ) ବିଖଣ୍ଡନ ହୋଇ ଈଶ ( ମହାଦେବଙ୍କଠାରେ ) ସ୍ନେହୀ (ସ୍ନେହ ଯୁକ୍ତ ) ହେଲେ । ଏହାକୁ ବଡ଼ ବୋଲିବା । ସେ ବିରବ ( ବିଶେଷ ଶବ୍ଦ ) ବ୍ରହ୍ମାଣ୍ଡ ଫୁଟି ବାହାରିଲା, ସମସ୍ତ ଜନଙ୍କ ଜ୍ଞାନ ପ୍ରକଟ ହେଲା ।୪୧।

୪୨ଶ ପଦ—ମିଥିଳାରାଜା ଧନୁର୍ଭଙ୍ଗ ଦେଖିବାରୁ ରଘୁଉତ୍ତମ ( ରାମଙ୍କୁ ) ୧ ସିଂହାସନେ ( ରାଜାସନେ ) ବସାଇ ବୀରେଶ୍ୱର (ବୀରପ୍ରଭୁ) କରି ପୂଜା କଲେ । ସେହି କାଳରେ ରାମଚନ୍ଦ୍ରଙ୍କ ଦର୍ଶନ ଲାଳସରେ ଦେବତାମାନେ ବିହାୟସ ( ଆକାଶକୁ ) ଆସିଲେ । ଧନୁର୍ଭଙ୍ଗ ଶବ୍ଦ ଶୁଣି ରାବଣ ସେଠାରେ (ଦେବତାମାନଙ୍କ ଥିବା ସ୍ଥାନରେ ) ମିଳିଲା । ମିଥିଳପୁର ଉତ୍ସବ ଦେଖି ବିରସ ହୋଇ ଲଙ୍କାପୁରକୁ ବାହୁଡ଼ି ଗଲା । ଏ ନିବମ ଗୁନ୍ଦ ବର୍ଣ୍ଣାଳିଣ ପଦରେ ଉପେନ୍ଦ୍ର କାମା କବି ଭାଷିଲା ।୪୨।

——·——

୩—ଚଣ୍ଡୀକାତ୍ୟାୟନୀ ଦେବ୍ୟାଂ ହିଂସ୍ରାକୋପନଯୋଷିତୋରପି ମେଦିନୀ ।
୪—ମାନଃ କୋପୋ ବୃଦ୍ଧୈରୁକ୍ତଂ ସଦ୍ଧ ଧାରଣବେଦନିଃ ।
ପ୍ରଣୟୋତ୍ପୃଷ୍ଟି ଋର୍ଷ୍ୟେତ୍ରେଥଂ ମାନସ୍ତୁ କଥିତୋ ମର୍ମା ।
୧—ନୃପାସନଂ ଚଉଭଦ୍ରାସନଂ ସିଂହାସନଂ ଚ ତତ୍ । ଇତ୍ୟମରଃ ।

## ଦଶମ ଛାନ୍ଦ ।

ରାଗ ରସକୁଲ୍ୟା ।

ବିଭୂଷଣ-ପୁଷ୍ପେ ଯା କାନ୍ତି ଜାଣ । ବିଭୂଷଣ କରି କନ୍ୟାକୁ ଆଣ ।
ବାରଣ ଶିରେ ପଦ ଦେଇ ଅସୁ । ବରଣ କରି ରାମମନ ତୋଷୁ ସେ ।
ବୋଲି ଦେଲେ କଉଶିକ ସେ ।
ବୋଳଦେଲା ପ୍ରାପ୍ୟେ ଗୋଳ ଚନ୍ଦନକୁ ହୋଇଲେ ରଘୁବଂଶିକ ସେ ।

---

ଦଶମ ଛାନ୍ଦ ।

୧ମ ପଦ – ବିଶ୍ୱାମିତ୍ର ଜନକଙ୍କୁ କହିଲେ ଯା ୧କାନ୍ତି (ଯେଉଁ ସୀତାଙ୍କ ଦ୍ୟୁତି ) ୨ଷଣ (ଝୁମୁ ଝୁମୁକା ଫୁଲ) ତାହାର ପୁଷ୍ପରେ ବିଭୂ (ପ୍ରଭୁ)ହୋଇ ଅଛି ଜାଣ, ପୁଣି ୩କନ୍ୟା (ଅବିବାହିତା)ଅଟନ୍ତି ଏମନ୍ତ ଯେ ସୀତା ତାହାଙ୍କୁ ୪ ବିଭୂଷଣ ( ବିଶେଷରେ ମଣ୍ଡନ ) କରି ଆଣ । ବାରଣ ଶିର ( ଗଣେଶ ) ତାହାଙ୍କ ବିଷୟରେ ୫ ପଦ ( ପଦାର୍ଥ ) ମାନ ବିଘ୍ନ ବିନାଶ ଅର୍ଥରେ ଦେଇ ଅସୁ । ବରଣକରି ରାମଚନ୍ଦ୍ରଙ୍କ ମନକୁ ତୋଷୁ (ତୋଷକରୁ) । ଏମନ୍ତ କୌଶିକ ( ବିଶ୍ୱାମିତ୍ର ) ବୋଲି ଦିଅନ୍ତେ ଚନ୍ଦନକୁ ଗୋଳ (ଘୋଳ) ଅଙ୍ଗରେ ବୋଳ ଦେଲାପ୍ରାପ୍ୟ ରଘୁବଂଶିକ ( ରାମଚନ୍ଦ୍ର ) ମଣିଲେ । ବିଶ୍ୱାମିତ୍ରଙ୍କ ବାକ୍ୟ ରାମମନକୁ ଅତି ଆପ୍ୟାୟିତ କଲା ଏହି ଭାବାର୍ଥ । ଅଥବା ଯା କାନ୍ତି ପୁଷ୍ପଦ୍ୱାରା ବିଶେଷରେ ଭୂଷଣ ଜାଣ ସେ କନ୍ୟାକୁ + ବି-ଭୂଷଣକରି (ମଣ୍ଡନ ନ କରି) ଆଣ । ପ୍ରକୃତକ ମଣ୍ଡନରେ କୃତ୍ରିମ ମଣ୍ଡନ ଅନର୍ଥକ

---

୧—ଶୋଭାକାନ୍ତିର୍ଦ୍ୟୁତିଃ ଛବିରିତ୍ୟମରଃ ।
୨—ରତା ତୁ ଷଣପୁଷ୍ପିକା ଇତ୍ୟମରଃ ।
ଷଣ୍ଟେ ମଞ୍ଜୁପୁଷ୍ପଂ ସ୍ୟାଦ୍‌ଦମନଃ କଣ୍ଟକିକ୍ରକଃ । ଇତି ନିର୍ଘଣ୍ଟଃ ।
୩—କନ୍ୟା କୁମାରୀ ଗୌରୀ ତୁ ନଗ୍ନିକ୍ୟପି ।
୪—ଅଳଙ୍କାରସ୍ତ୍ୱାଭରଣଂ ପରିଷ୍କାରୋ ବିଭୂଷଣମିତ୍ୟମରଃ ।
୫—ପଦଂ ବ୍ୟବସିତତ୍ରାଣସ୍ଥାନଲକ୍ଷ୍ମାଙ୍ଘ୍ରିବସ୍ତୁଷୁ । ଇତି ବିଶ୍ୱଃ ।
+ ପୂର୍ବରୁ ବିଶ୍ୱାମିତ୍ର ସୀତାଙ୍କ ଦର୍ଶିତ, ସ୍ପର୍ଶିତ, ଦନ୍ତ ମୁକ୍ତା, ହାସସ୍ମରକ, ଅଧରପ୍ରବାଳ,

ପ୍ରଧାନ ହୋଇଛନ୍ତି ଯା ନାମ ସୀତା । ବର୍ଣ୍ଣନେ ଶୋଭା ଅତି ମଧୁରତା ।
ବ୍ରହ୍ମ ନେତ୍ର ଅଜ ହେବ ପବନ । ବିଶେଷ କର୍ଣ୍ଣେ ଦେଲ ହୃଦୟେ ସେ

ଏହି ଗ୍ର । ୬ ବାରଣ (ପ୍ରତିଷେଧ) ଅର୍ଥାତ୍ ଯେ ଧନୁ ଭଙ୍ଗିବ ତାହାକୁ କନ୍ୟା ଦେବି ଅନ୍ୟକୁ ନ ଦେବି' ଏମନ୍ତ ଯେଉଁ ନିଷେଧ ବାକ୍ୟ ତାହାର ଶିରେ (ଉପରେ) ପଦ (ପାଦ) ଦେଇ ଥାନ୍ତି । ଅନ୍ୟା ବାରଣ (ପ୍ରତି-ଷେଧ ଯୋଗ ବନ୍ଧି ବାଂଛାପାତାବ) ତାହାର ଶିରେ (ମସ୍ତକରେ) ପଦ (ଚରଣ) ଦେଇ ଥାନ୍ତି "ଯେ ଧନୁ ଭଙ୍ଗିବ ତାକୁ କନ୍ୟା ଦେବି" ଏହି ସତ୍ୟ ଥିବାରୁ ଶୁଭଶୂନ୍ୟ ଯୋଗ ଭୁଞ୍ଜିବା ନିଷ୍ପ୍ରୟୋଜନ ଏହି ଗୂଢ଼ାର୍ଥ । ବାରଣ ବନ୍ଧୁ ଗ୍ରମଙ୍କ ମନ ହୋଷ କରୁ ଏରୂପ ମନକଥ ହୌଶିକ ବୋଲି-ଦ୍ୟନ୍ତେ ସ୍ତ୍ରୀଙ୍କାଲରେ ଚନ୍ଦନରେଖା ଦେଖିବେ ବୋଲି ଦେଲ୍ସ୍ୱାନ୍ତି କୃପ-ବସ୍ତି ଆନନ୍ଦିତ ହେଲେ । ୯।

୨ୟ ପଦ—ପୁଣି କୌଶିକ କହୁଅଛନ୍ତି ଯା (ଯାହାର) ନାମ ସୀତା ପ୍ରଧାନ ହୋଇଅଛି ତା (ତାହାର) ଶୋଭା ବର୍ଣ୍ଣନରେ ଅତି ୯ ମଧୁର

କେଶ ନୀଳମଣି ତୁଲ୍ୟ ବର୍ଣ୍ଣନ କରିଅଛନ୍ତି ଯେତେ ଅଳଙ୍କାର ଯୋଗକବି ବାରଣ କଲେ, ଆହୁ ମଧ ସୀତାଙ୍କୁ ଙ୍କ ଉପମାରେ ପ୍ରତ୍ୟଂ ଗ୍ରମ ବର୍ଣ୍ଣନ କରିଅଛନ୍ତି ।
ମହାନାଟକେ ଯଥା—

ନୀଳେନ୍ଦୀବରଶଙ୍କୟା ନୟନୟୋର୍ବନ୍ଧୁକବୁଦ୍ଧ୍ୟାଧରେ
ପାଣୌ ପଦ୍ମଧିୟା ମଧୂକକୁସୁମଭ୍ରାନ୍ତ୍ୟା ତଥା ଗଣ୍ଡୟୋଃ ।
ନ୍ୟସ୍ୟନ୍ତି କବରୀଷୁ ଚାମ୍ପବଜନ ବ୍ୟାମୋହଜାତସ୍ପୃହା
ଦୁର୍ବାରା ମଧୁପାଃ କପୟନ୍ତି ତରୁଣି ସ୍ଥାନାନି ରକ୍ଷିଷ୍ୟସି ।

ତଥାଚ ରସମଞ୍ଜର୍ଯ୍ୟାଂ—

ଇନ୍ଦୀବରେଣ ନୟନଂ ମୁଖମମ୍ବୁଜେନ
କୁନ୍ଦେନ ଦନ୍ତମଧରଂ ନବପଲ୍ଲବେନ ।
ଅଙ୍ଗାନି ଚମ୍ପକଦଳୈଃ ସ ବିଧାୟ ବେଧା
କାନ୍ତେ କଥଂ ଘଟିତବାନୁପଲେନ ଚେତଃ ।

୬—ବାରଣଂ ପ୍ରତିଷେଧେ ସ୍ୟାଦ୍ ବାରସ୍ତୁ ମତଙ୍ଗଜେ । ଇତି ମେଦିନୀ ।
୯—ମଧୁରୌ ସ୍ୱାଦୁ ସୁନ୍ଦରୌ ଇତି ଶବ୍ଦମାଳା ।

ବୁଣିଲଣି ସ୍ନେହ-ବୀଜ ଯେ ।
ବିଶ୍ବରୁ ଏମନ୍ତ ଜନକ ସମ୍ମତ ଶୁଣିଲେ ସଖୀସମାଜ ଯେ ।୨।
ବେଶକାରୀ ତାକୁ ପୀଠେ ବସାଇ । ବେଶ କରିଚାଲେ ଚିତ୍ତ ରସାଇ ।
ବିମ୍ବ ଦେଖାଇଲେ ଗୁମ୍ଫରେ କେହି । ବିମ୍ବାଧରୀ ଆଡମ୍ବରକୁ ବହି ସେ ।
ବିବନ୍ଧ କଲେ କୁନ୍ତଳ ଯେ ।
ବିଚକ୍ଷଣି ନୀଳମଣି ପ୍ରଭବ ଊର୍ଦ୍ଧ୍ୱରୁ ପ୍ରକାଶିତ ତଳ ଯେ ।୩।

(ସୁନ୍ଦର) । ସୀତା ( ଶର୍କରା ) ତାହାର ଶୋଷ ବର୍ତ୍ତନରେ ଅତି ମଧୁର ( ସ୍ୱାଦୁ ) । ସୀତା ( ହଳ ) ଯେ ପଙ୍କରେ କୃଷ୍ଟ ଯେ ପଦାର୍ଥ ହୁଅଇ, ତାହାଙ୍କ ଶୋଷରେ ନୋହମ ନେ କୃଷ୍ଟ ପଦାର୍ଥ ହେବେ । ୨ ସୀତା (ଲାଙ୍ଗଳପଦ୍ଧତି) ସେ ବକ୍ଷରେ ହୃଦୟରୂପ କ୍ଷେତ୍ରକୁ (ହୃଦୟକୁ ) କର୍ଷି (ଚଷି) ଦେଇ ସ୍ନେହରୂପ ବୀଜକୁ ( ବଳିନକୁ ) ବୁଣିଲଣି । ବିଶ୍ୱାମିତ୍ର ଜନକ ସଙ୍ଗରେ ଏମନ୍ତ ବିଶ୍ୱରୁ ଜନକଙ୍କର ଚିତ୍ତରେ ସମ୍ମତ ହେଉ । ତାହା ସଖୀ ସମାଜ (ସମୂହ) ଶୁଣିଲେ ।୨।

୩ୟ ପଦ —ସୀତାଙ୍କୁ ବେଶ କରିବା ନିମିତ୍ତ ବେଶକାରିଣୀ (ସିଂହାସନ ) ତାକୁ ସୀତାଙ୍କୁ ପୀଠେ ( ଆସନରେ ) ବସାଇ ତାହାଙ୍କ ଚିତ୍ତକୁ ରସାଇ ବେଶ କରିଚାଲେ (କଲେ) । କେହି (ସଖୀ ) 'ସୀତାଙ୍କ' ଗୁମ୍ଫରେ ବିମ୍ବ (ଦର୍ପଣ) ଦେଖାଇଲେ । ସେ (ଦର୍ପଣ) ବିମ୍ବ ( ସୀତାଙ୍କ ପ୍ରତିବିମ୍ବ) ଧରି ଆଡମ୍ବରରେ ବହିଲା । ତହିଁ ଉପରୁ କୁନ୍ତଳ (କେଶକୁ) ବିବନ୍ଧ(ବିମୁକ୍ତ) କଲେ । କେଶ ଫିଟାଇବାରୁ ସେ ତଳକୁ ଲମ୍ବମାନ ହୁଅନ୍ତେ ଏମନ୍ତ ଦେଖାଗଲା । ନୀଳମଣି (ନୀଳରତ୍ନ) ତାହାର ପ୍ରଭବ (ପ୍ରଭା, ଊର୍ଦ୍ଧ୍ୱରୁ ( ଉପର ଭାଗରୁ ) ତଳକୁ ପ୍ରକାଶିତ ହେଲା, ଏ କଥା ବିଚିତ୍ର ମଣି ( ଆଶ୍ଚର୍ଯ୍ୟ ମଣି- ଆଣି) ଊର୍ଦ୍ଧ୍ୱକୁ ପ୍ରସରନ୍ତା ବିନା ଅଧୋଭାଗକୁ ପ୍ରସରିବାର ବିଚିତ୍ର ହେଲା ।।

୨—ସୀତା ଲକ୍ଷ୍ମୀରୂପା ସୀତା ସୀତା ଶସ୍ୟାଧିଦେବତା ।
ସୀତା ଲାଙ୍ଗଳପଦ୍ଧତିଶ୍ଚ ସୀତା ମନ୍ଦାକିନୀ ମତା ଇତି ନାନାର୍ଥଧ୍ୱନିମଞ୍ଜରୀ

ବଳେପି ଅଳ୍ପ ତଇଳ ଶାମଳ । ବାରଣଦନ୍ତ ପ୍ରସାଧନୀ ଗୃହ ।
ତପନସୁତା କଲ୍ଲୋଳରେ ଯେସେ । ତକଟି ଆସିଲା କୁମୁଦ କସେ ସେ ।
ବାନ୍ଧିଲେ ଚୂଡ଼ା ଯତନେ ଯେ ।
ବନ୍ଧ ହୋଇଲା ମର୍କତ କୁବେଣୀରେ ବନ୍ଦୀ ହେବେ ମନମୀନେ ଯେ ।୪।
ତତୁଲ୍ୟ ମଥାମଣି ମାଣିକ୍ୟର । ବଘ ସୀମନ୍ତ ସିନ୍ଦୂରଗାର ।
ବନ୍ଧବନ୍ଧେ ଭିଡ଼ ପାଟସୂତ୍ରରେ । ବଧୂନ୍ତୁଦ ଗଳ ମିତ୍ର ହସ୍ତରେ ସେ ।

୪ର୍ଥ ପଦ—ସେ କେଶରେ ଅଳ୍ପ ତେଲ ବଳେପି ( ଲଗାଇଦେଇ ) ଶାମଳୀ ଦେଲେ । ତହିଁ ଉପରୁ ବାରଣଦନ୍ତ ( ଗଜଦନ୍ତ ) ପ୍ରସାଧନୀ ( ପାନିଆ ) ଗ୍ରହ (ଚଳାଇ) ଦେଲେ । ତହିଁ କି କବ ଏମନ୍ତ ଉତ୍ପ୍ରେକ୍ଷ କଲା । ତପନସୁତ ( ଯମୁନାର ) କଲ୍ଲୋଳ ( ମହାତରଙ୍ଗରେ ) ତକଟି ଆସିଲା କି ? ଫୁଟିଆସିବା କୁମୁଦ ପରି, କେଶ କୁଣ୍ଡାଇବାରେ ହସ୍ତିଦନ୍ତ ପାନିଆ ଏମନ୍ତ ଶୋଭା ଦିଶିଲା । ଏହାଦ୍ୱାରା କେଶର କୌଟିଲ୍ୟନ୍ଧୁଣ ସୂଚିତ ହେଲା । ତପୂରେ ଯତ୍ନରେ (ଯତ୍ନପୂର୍ବକ) ଚୂଡ଼ା ( ଜୁଡ଼ା ) ବାନ୍ଧିଲେ । ସେ ଜୁଡ଼ା ୧ ମର୍କତ ୨ କୁବେଣୀରେ (ମରକତ ମଣି ସମ୍ବନ୍ଧ ମଣ୍ୟାଧାନୀ ଅର୍ଥାତ୍ ଖାଲୋଇରେ) ବନ୍ଧ ହୋଇଲା ( ବନ୍ଦୀ ହେଲା ) । ତହିଁରେ ମନମାନେ ମୀନ ହେଲେ ସେ ବନ୍ଧ ହେବେ ।୪।

୫ମ ପଦ—ତତୁଲ୍ୟ (ଅତୁଲ) ମାଣିକ୍ୟର ମଥାମଣି ଦେଲେ ୧ ସୀମନ୍ତ (କେଶ) ବଘ କର ସିନ୍ଦୂରଗାର ଦେଲେ । ବନ୍ଧବନ୍ଧେ ( ଦୃଢ଼କରି ) ପାଟ ସୂତ୍ରରେ ଭିଡ଼ିଲେ । ତହିଁକି କବି ଏମନ୍ତ ଉତ୍ପ୍ରେକ୍ଷା କଲା ମିତ୍ର ( ସୂର୍ଯ୍ୟଙ୍କ) ହସ୍ତରେ ବଧୂନ୍ତୁଦ ( ରାହୁର ) ଗଳ ( କଣ୍ଠ ) ବଧବନ୍ଧେ ( ଦୈବଯୋଗେ ) ପଡ଼ିଗଲା କବା ? ତେଣୁ ସେ ବଳୁଳ ୨ ଗର୍ଭକ ( କେଶ ମଧ୍ୟ ଦଉ ବଳୁଳ ମାଳ ) ରୂପ ସୁଧା ଉଦ୍ଗାରୁଛି (ଗିଳନପାର ବାନ୍ତକରୁଛି)

୧—ଗାରୁତ୍ମଙ୍କ ମରକତ ମିତ୍ୟମରଃ ।
୨—ମଣ୍ୟାଧାନୀ କୁବେଣିଃ ସ୍ୟାଦିତ୍ୟମରଃ ।
୧— ସୀମନ୍ତଃ କେଶବେଶେ ଇତି ।୨—କେଶମଧ୍ୟେ ତୁ ଗର୍ଭକ ଇତ୍ୟମରଃ ।

ବଧିବଶେ କବା ପଡ଼ି ଯେ ।
ବକୁଳଗର୍ଭକ ସୁଧା ଉଦ୍‌ଗାରୁଛି ଉପୁରୁ ନ ଦେଇ ଗୁଡ଼ ଯେ । ୫ ।
ବଭୂଷି କଆପଣୀ ମୋତିଜାଲି । ବପିନେ ତମାଳର କବା ଝଳ ।
ବନ୍ଧନ କୃତ ପାଶ ଜାଲ ଦୁଇ । ବଶିଖ ଝଟ୍ଟକାଠିକ ଦେଖାଇ ସେ ।
. ବଙ୍କଭଉଁର ହୁଁ ଧନୁ ଯେ ।
ବଧିବ ଧୈର୍ଯ୍ୟମୃଗକୁ ବାନ୍ଧିବାକୁ ଏଠାରେ କରେ ଅତନୁ ଯେ । ୬ ।
ବବଧ କୁସୁମମାଳା ଖଞ୍ଜନ । ବ୍ୟୋମେ ଇନ୍ଦ୍ରଧନୁ ପ୍ରଭ ଗଞ୍ଜନ ।
ବହୁଁ ଚନ୍ଦ୍ରଝୁମ୍ପି ଝିଲମିଲକା । ବଭ୍ରବସ୍ତ-ପ୍ରାନ୍ତ ସ୍ୱତ ଅଳକା ସେ ।

---

ସେ ସୂର୍ଯ୍ୟ ଉପୁରୁ ତାକୁ ଗୁଡ଼ ଦେଉ ନାହିଁ । ଗୁଡ଼ଦେଲେ ମୋତେ ସ୍ୱଚ୍ଛ ଗ୍ରାସ କରିବ ଏଣୁ ଗୁଡ଼ ନ ଦେଇ ଧରିଅଛି । ଅଥବା ସ୍ୱଚ୍ଛବକୁଳ ଗର୍ଭକ ରୂପସୁଧା ଉଦ୍‌ଗାରୁଛି ଉପୁରୁ ଗୁଡ଼ ନ ଦେଇ ଗୁଣ୍ଡରେ ଧରିଅଛି କୁଣ୍ଡିରୁ ସୁଧା ପଡ଼ଇ ଦେଲେ ମୋହର ମୃତ୍ୟୁ ହେବ ଏମନ୍ତ ଭାବ ଗୁଡ଼ ନାହିଁ । ୫ ।

୬ଷ୍ଠ ପଦ—ତତ୍ପରେ କଆପଣୀ (ସ୍ୱର୍ଣ୍ଣ କଆପଣୀ) ମୋତିଜାଲି (ମୁକ୍ତାଜାଲି) ଏ ଦୁଇ ଅଳଂକାରକୁ ବିଭୂଷିତ କଲେ । ତହିଁରେ ଏମନ୍ତ ଉତ୍ପ୍ରେକ୍ଷା ହେଲା । ତମାଳର ବପିନେ (ତମାଳବନରେ) ପାଶଜାଲ ଏ ଦୁଇ ବନ୍ଧନ କୃତ (ବନ୍ଧନ କରିଅଛି କି ବା) ? ଏମନ୍ତଝଳ ହୋଇଅଛି । ତମାଳ ବନରେ ପାଶ ଜାଲ ବାନ୍ଧି ଝଟ୍ଟକାଠି ବଶିଖ (ବାଣ) ହେଲା । ତାହାକୁ ଦେଖାଉଛି । ବଙ୍କଭଉଁର ଧନୁ ହେଲା ତହିଁରେ ହୁଁ (ନକ୍ଷେ)- ଧୈର୍ଯ୍ୟ (ଧୀରତା) ମୃଗ ହେଲା ତାକୁବଧିବ (ମାରିବ) । ବାନ୍ଧିବ ନିମିତ୍ତ ଅତନୁ (କନ୍ଦର୍ପ) ସେଠାରେ (ସେ ତମାଳ ବନରେ) ଏମନ୍ତ କରିଅଛି କି ? + । ୬ ।

୭ମ ପଦ—ତହୁଁ ଉତ୍ତାରୁ ବବଧ (ନାନାବର୍ଣ୍ଣର) କୁସୁମଦ୍ୱାର ନିମିତ୍ତ ମାଳାମାନଙ୍କୁ ଖଞ୍ଜନ (ଖଞ୍ଜିଲେ) । ସେ ଏମନ୍ତ ଶୋଭା ଦେଖାଗଲା ବ୍ୟୋମେ (ଆକାଶରେ) ଉଦିତ ହୋଇଥିବା ଇନ୍ଦ୍ରଧନୁର ଶୋଭା ଗଞ୍ଜନ (ଗଞ୍ଜିଲା)

---

+ ପଞ୍ଚ ଶୁଙ୍ଗ ମୃଗସ୍ୟବେଧବ୍ୟାଧକରୈଃ । ତନୁଭୁତଂ ସ୍ୱଦ୍ୟସ୍ତନୁବାନ ମିତ୍ୟଂ ହାସ୍ୟଧ ହରେ । ଇତ ହଂସଦୂତେ ।

ଦେନ ସପ୍ତ ଋଷି ଶଶୀ ଯେ ।

ବଚମ ହିତ କରେ ମନ କୋବେଲେ ପଡ଼ିଲେ ପଲ୍ଲବେ ଖସି ଯେ ।୭।
ବେଣ୍ଟୁନଶ୍ରବଣେ ସଖୀ ଖଞ୍ଜିଲେ । ବଳେ ବ୍ୟାକୁଳ ଅଗ୍ନି ଜାତ କଲେ
ବହୁତ ଫୁଲ ତହିଁ ଛୁଟ କର । ବାଳୀକି ଭଜବୋଲି ବାଳୀଠାରେ ସେ ।

ଚନ୍ଦ୍ରଭୁଜଙ୍ଗ ନିଲମିଲକା (ଝିଲମିଲି ମାଳୀ) ଏ ଦୁଇ ଅଳଙ୍କାର ବହୁଁ (ବହୁନ୍ତେ) ଅଳକ: (ଚୂର୍ଣ୍ଣକୁନ୍ତଳ) ୧ ଉଦ୍ଦୀପ (ରସୋଦ୍ଦୀପନ) ତାହାର ପ୍ରାନ୍ତ (ସୀମା) ସେ "ଉଦ୍ଦୀପଙ୍କର ସେ, ଏମନ୍ତ ଅଥ ହେଲ" ଏଣୁ ବିଶ୍ରବଣ ପ୍ରାନ୍ତ (କଣ୍ଠାବଧାନ) ହେଲା ସତ । ବିଶ୍ରବଣ ସ୍ଥ ମାସ୍ତ କେଶହେଲ ତାହାର ପ୍ରାନ୍ତ ସେ । ୨ ସପ୍ତଋଷି (ମରୀଚ୍ୟାଦି) ଶଶୀ (ଚନ୍ଦ୍ର) ଏସ ଦେନ (ସେ ଦୁହେଁ) କୋବେଲକେ ଖସି ପଡ଼ିଲା ପଲ୍ଲବେ ମନକୁ ବିଶେଷରେ ମୋହିତ କଲା । ୭ ।

୮ମ ପଦ—ତହୁଁ ଉତ୍ତାରୁ ସଖୀମାନେ ବେଣ୍ଟୁଲ (ମଲ୍ଲୀଫୁଲ) ଶ୍ରବଣରେ ଖଞ୍ଜିଲେ । ଖଞ୍ଜିଲେ ନାହିଁ ସେ ବଜ (ଶତକୋଟି) ତାହାଠାରେ ବ୍ୟାକୁଳାଗ୍ନିକ ଜାତ କଲେ । ଅଥାତ ମଲ୍ଲିକଡ଼ୀ ଶୋଭାକୁ ସମାନ ନୋହିବାରୁ ବଜ୍ରକୁ ବ୍ୟାକୁଳାଗ୍ନି ଜାତ ହେଲା । ତଦନ୍ତରେ ସେହି (ସଖୀମାନେ) ଫୁଲ (କର୍ଣ୍ଣଫୁଲ) ତହିଁରେ ଯାହା ଛୁଟକଲେ ସେ ବହୁତ, ଫୁଲ, ଛୁଟ ହୁଅଇ, ତାକୁ ଛୁଟ (ଯୁକ୍ତ) କଲେ । ତହିଁ ଉତ୍ତାରୁ ବାଳୀ (ବାଳିପୁଡ଼ା) ଦେଲେ ଏ ବାଳୀ (ବାଳୀକୁ) ଭଜ, ଏମନ୍ତ ବୋଲି ଠାଣିଲେ । ତଦନ୍ତେ ବନ୍ଧ-

୧—ଉଦ୍ଦୀପଃ ସ୍ୟାତ୍ ପଣ୍ଡରସ୍ତେ ରସଦ୍ୟୋତ୍ପାଦକେ । ଇତି ମେଦିନୀ ।
ବିଶ୍ରବେଣ୍ୟାନୁଭବେନ ବ୍ୟକ୍ତଃ ସଞ୍ଚରଣା ଜଥା ।
ରସତା ମେତି ରତ୍ୟାଦିଃ ସ୍ଥାୟୀଭାବଃ ସଚେତସାଂ ।
ବିଶ୍ରବେନଂ ରତ୍ୟାଦେର୍ବିଶେଷଣ । ସ୍ୱାଭାବିକ ପ୍ରାଦୁର୍ଭାବଯୋଗ୍ୟତା ନସ୍ତନଂ ।
ରତ୍ୟାଦ୍ୟୁଦବୋଧକା ଲୋକେ ବିଭାବାଃ କାବ୍ୟନାଟ୍ୟୟୋଃ । ଇତି ସାହିତ୍ୟଦର୍ପଣେ
୨ – ମରୀଚ୍ୟଙ୍ଗିରସ ଅତ୍ରିଃ ପୁଲସ୍ତ୍ୟଃ ପୁଲହଃ କ୍ରତୁଃ ।
ବଶିଷ୍ଠଶ୍ଚେତି ସପ୍ତୈତେ ଋଷୟଃ ପରିକୀର୍ତ୍ତିତାଃ । ଇତି ।

ବନ୍ଧଆ ଚନ୍ଦ ଭଙ୍ଗୁର ଯେ ।
ବିଚ୍ଛେଦ ବୁଡ଼ାଇଦେବ ଯୋଗି-ଯୋଗ ସନ୍ଧିତ ଦୁଇ ପ୍ରକାର ଯେ ।୮
ବାଧାପୂର୍ବକ ଚନ୍ଦ୍ର ଜଳପଟରେ ବର୍ତ୍ତିକ ଛାନ୍ଦ କସ୍ତୁରୀ ସିନ୍ଦୂର ।
ବିଶ୍ବକୁ ତିଳକେ କରିବ ବଶ । ବିଧୃତ ଏ ଯେନ ତିଳକ ଦ୍ଵେଷ ଯେ ।
ବେଣୀ ସ୍ରାଗ୍ଅବତଂସ ଯେ ।
ବର୍ଣ୍ଣିଅଶ୍ୟୁଁ ମୂକ କିବା ଗୁରୁ କବି ସେହୁ ଚନ୍ଦ୍ରକର ଯଶ ଯେ । ୯ ।

---

ଆକୁ କର୍ଣ୍ଣିକ ଅଧୋ ଭାଗରେ ଦେଲେ, ସେ ବନ୍ଧାଣ୍ଡ ଚନ୍ଦ୍ରପ୍ରାୟ ୧ ଭଙ୍ଗୁର (ଚନ୍ଦ୍ର) ଅଟେ, ସେ ଚନ୍ଦ୍ର (ଅଷ୍ଟ ବିଶେଷ) ହେଲା । ୨ଚନ୍ଦ୍ର (ଜଳାବର୍ତ୍ତି ଭଉଁରୀ) ହେଲା । ସେ ଯୋଗିମାନଙ୍କ ଯୋଗକୁ ବିଚ୍ଛେଦ କରି ବୁଡ଼ାଇ ଦେବ । ଏ ଦୁଇ ପ୍ରକାରରେ ସନ୍ଧିତ ହୋଇଅଛି ଅର୍ଥାତ୍ ଚନ୍ଦ୍ରର ଧର୍ମ ଛେଦନ, ଜଳାବର୍ତ୍ତିର ଧର୍ମ ବୁଡ଼ାଇ ଦେବା । ୮ ।

୯ମ ପଦ—ତହୁଁ ଗୁରୁ ଜଳପଟରେ (ଲଲାଟପଟରେ) ବର୍ତ୍ତିକ ଛାନ୍ଦି (ବର୍ତ୍ତିକ ଦ୍ୱାରରେ) କସ୍ତୁରୀ ସିନ୍ଦୂର ଏ ଦୁଇରେ ୧ଚନ୍ଦ୍ର (ତିଳକ) ହେଲା ଚନ୍ଦ୍ର ହେଲା ତାକୁ ବାଧାପୂର୍ବକ (ବିଧାନ କଲେ) । ବିଶ୍ୱ (ସଂସାରକୁ) ତିଳକ ମାନେ ବଶ କରିବ । ଏ ଯେଉଁ (ଏ ହେତୁରୁ) ତିଳକ ଏମନ୍ତ ଦ୍ୱେଷ (ଦଉଡ଼ ବିଧୃତ (ଧରିଲା) । ତହୁଁ ଗୁରୁ ବେଣୀ ସ୍ରାଗ୍ ଅବତଂସ (ହାରକ ଫୁଲ ଦୁଇ କର୍ଣ୍ଣାବତଂସ) ଦେଲେ । ସେ (ସ୍ରାଗବତଂସଦ୍ୱୟ) ଦେଖି କବି ଏମନ୍ତ ଉତ୍ପ୍ରେକ୍ଷା କଲା । ସେ ଚନ୍ଦ୍ରକର ଯଶକୁ ବର୍ଣ୍ଣନା କରି ଆମ୍ଭ ଗୁରୁ (ବୃହସ୍ପତି) କବି (ଶୁକ୍ର) ଦୁହେଁ ମୂକ ହେଲେ (ବର୍ଣ୍ଣି ନ ପାରିଲେ) । ୯ ।

---

୧—ଭଙ୍ଗୁର ଶବ୍ଦର ଅର୍ଥ ଚନ୍ଦ୍ର ହୁଏ—
କେରଲୀକୁଚଭଙ୍ଗୀଭଙ୍ଗୁରଂ । ଇତି ପ୍ରୟୋଗଃ ।
୨—ଚନ୍ଦ୍ର ଓଘେ ପୁମ୍ବାନ କ୍ଳୀବ ତ୍ରନେ ସୈନ୍ୟରଥାଙ୍ଗୟୋଃ
ଗୃହଷ୍ଟ ଦନ୍ତାନ୍ତରେ ଭୂକ୍ତକାଷ୍ଟେପକରଣାସ୍ତୟୋଃ । ଜଳାବର୍ତ୍ତେଽପିଚ ତ ମେଦିନୀ
୧—ଆଲେଖ୍ୟାଶ୍ଚର୍ଯ୍ୟୋଶ୍ଚିତ୍ରଂ କ୍ଳୀବଂ ସ୍ୟାତ୍ତିଲକେଽପି ଚ ଇତି ରଭସଃ ।

ବୟସୀ ମାଣିକ୍ୟଗୁଣା ମୁକ୍ତା । ବେନି ପୁଟେ ଦେଇ ନାସା ଶୋଭିତ
ବଦନକୁ ଚାହିଁ ଚନ୍ଦ୍ରକୁ ଚାହିଁ । ବିମଳ ଏହି ତ ସମଳ ସେହି ଯେ ।
ବ୍ୟଭିଚାରୀ ହେଲେ ପରା ସେ ।
ବିଧିରେ ଆରଦ୍ରା-ଚନ୍ଦ୍ରରେ ଆରଦ୍ରା ରୋହିଣୀ ଏ ବେନି ତାରା ଯେ ॥
ବଲ୍ଲଭ ରଥେ ଯା କେତୁ ମକର । ବଲ୍ଲୀରଥେ ତା ମକରୀ କର ।
ବିବେକୀ ସଜନୀ ସୌନ୍ଦର୍ଯ୍ୟଗୋଳେ । ବଳେ ଛଡ଼ାଇ ଦେଖାଇ କପୋଳେ ସେ

---

୧୦ମ ପଦ—ଏ ଉତ୍ତାରୁ ବୟସୀ (ବୟସ୍ୟା ସଖୀମାନେ) ମାଣିକ୍ୟଗୁଣା (ମାଣିକ୍ୟଯୁକ୍ତ ଗୁଣା) ମୁକ୍ତାଯୁକ୍ତ ନଥ ନାକରଣା ଏହାକୁ ବେନି ପୁଟରେ ଦେଉଁ ନାସା ଶୋଭିତା ହେଲା । କବି ଉତ୍ପ୍ରେକ୍ଷା କଲେ । ବଦନକୁ ଚାହିଁଲେ ଚନ୍ଦ୍ରକୁ ଚାହିଁଲେ ଏହି ତର୍କ ହୁଏ, ବଦନ ବିମଳ (ନିର୍ମଳ), ଚନ୍ଦ୍ର ସମଳ (ସକଳଙ୍କ) ଏଣୁ ଆର୍ଦ୍ରା ରୋହିଣୀ ଏ ତାରା ଦୁହେଁ ବିଧିରେ (ଅଧାର-ସ୍ଥିବରେ) ଆର୍ଦ୍ର [ଆର୍ଦ୍ର ହୃଦୟା ଆର୍ଦ୍ରା ଚନ୍ଦ୍ର ହୋଇ ବ୍ୟଭିଚାରୀ ହେଲେ ପରା ଅର୍ଥାତ୍ ଆର୍ଦ୍ରା ରକ୍ତବର୍ଣ୍ଣ ରୋହିଣୀ ଶୁକ୍ଳବର୍ଣ୍ଣ ସେ ଦୁଇ ତାରା ଚନ୍ଦ୍ରକୁ ସମଳ ଦେଖି ଛାଡ଼ିଲେ] ମୁଖଚନ୍ଦ୍ରକୁ ବିମଳ ଦେଖି ଭଜିଲେ । ୧୦ ।

୧୧ଶ ପଦ—ଯାର [ଯେଉଁ କନ୍ଦର୍ପର] ରଥରେ [୧]ମକର କେତୁ [ଧ୍ୱଜ] ହୋଇ ବଲ୍ଲଭ [ପ୍ରିୟ] ହୋଇଅଛି ତାହାର ରଥ [ବଲ୍ଲୀ-ରୂପ ରଥ] ଏଥିରେ ଏ ସୀତା ସ୍ତ୍ରୀରୂପ ରଥ ହେଲେ, ଏହାଙ୍କଠାରେ ମକରୀ କର [ମକରୀ ଚିତ୍ରଲେଖ] । ଏମନ୍ତ କହନ୍ତେ କେହି ମକରୀ ଲେଖିବାକୁ ଆରମ୍ଭ କରନ୍ତେ ସେକାଳରେ ସୌନ୍ଦର୍ଯ୍ୟ ବିଷୟରେ ଗୋଳ ହେବାରୁ [ଭୁ ସୁନ୍ଦରକରି ଲେଖି ଜାଣୁ ନାହିଁ ମୁଁ ଜାଣେ ଏରୂପ ପରସ୍ପର ଗୋଳ ହୁଅନ୍ତେ] [୨]ବିବେକୀ ଅଟଇ ଯେଉଁ ସଜନୀ ସେ ବଳେ ତୂଳିକା ଛଡ଼ାଇ ସୀତାଙ୍କ ଗଣ୍ଡସ୍ଥଳରେ ମକରୀକ ଦେଖାଇଲା । [ମକରୀଚିତ୍ର ରଚନା କଲା]

---

୧—ପୁଷ୍ପଧନ୍ୱା ରତିପତି ର୍ମକରଧ୍ୱଜ ଅମୃତ୍ଭୂରତ୍ୟମରଃ ।
୨—ବିବେକଃ ସ୍ୟାନ୍ମଲଦୋଣ୍ୟାଂ ପୃଥଗର୍ଥ ବିସ୍ମିତ୍ୟୋରତି ମେଦିନୀ ।

ବାନ୍ଧୁଏ ମୃଗମଦରେ ଯେ ।
ବିହେ କେ ଚିବୁକେ ମଧୁମକ୍ଷିକା ଏ ନୂକତ ସଙ୍ଗ ଭଙ୍ଗରେ ଯେ ।୧୧
ବଡିଶ ସାରେଣୀ ଲକ୍ଷ ଦେଖି ନେତ୍ର । ବିଲମ୍ବିତ କଲେ ଅଞ୍ଜନସୂତ୍ର ।
ବାନ୍ଧାରି ପକ୍ଷ୍ମ ପେଡ଼ାରୁ ପଳାଇ । ବଳ-ଶ୍ରୋଣେ କି ଦନ୍ତଦଂଶଅହିସେ
ବିଶେଷକ ନ ଜାଣି ତତ୍ତ୍ୱ ଯେ ।
ବିକାଶ ମୀନଦ୍ୱିଶି ବେନି ପାଶୁରେ ହେଲ ବେନି ଧୂମକେତୁ ଯେ ।୧୨

---

ଏ ବିଶ୍ୱରୁ ଯେ (ଯେଉଁ ସ୍ତ୍ରୀମା) ମୃଗମଦରେ (କସ୍ତୁରୀରେ) ବାନ୍ଧୁଏ (ଗୋଟିଏ ବାନ୍ଧ) ଚିବୁକରେ (ଅଧର ଅଧୋଭାଗରେ) ବିହେ (ବିଧାନ ହରେ) । ତହିଁରେ ଏମନ୍ତ ଉତ୍ପ୍ରେକ୍ଷା ହେଲା । ସଙ୍ଗଭଙ୍ଗ ହେବାରେ, ମଧୁମକ୍ଷିକାଏ (ଏକ ମଧୁ ମକ୍ଷିକା) ନୂକତ (ନକ୍ଟକ) ହୋଇ ରହି ଅଛି କି ? । ୧୧ ।

୧୨ଶ ପଦ—ତଦନନ୍ତର ନେତ୍ରରେ କଜ୍ଜ୍ୱଳ ଦେବରୁ ଏମନ୍ତ ଉତ୍ପ୍ରେକ୍ଷା ହେଲା ଯେ ନେତ୍ର ବଡ଼ିଶ (ମତ୍ସ୍ୟଭେଦନ) ସାରେଣୀ ଏ ଦୃଷ୍ଟିରେ ଲକ୍ଷ (ଦମନ) ଅଛି । ତେଣୁ ଅଞ୍ଜନସୂତ୍ର (ଭଲାସୂତା) ହେଲା । ତାହା ଶ୍ରୁ ବିଲମ୍ବିତ (ଲମ୍ବ ଇଲେ । ବଡ଼ିଶ ଆଉ ସାରେଣୀରେ ସୂତ ଲମ୍ବିଥାଏ ପୁଣି କଜ୍ଜଳ ଲକ୍ଷିକ ହବ ଏମନ୍ତ ଉତ୍ପ୍ରେକ୍ଷା କଲା, ଦନ୍ତ (ଧେର୍ଯ୍ୟରୁ) ଦଂଶ (ଦଂଶନକାରୀ) ଅହି (ସର୍ପ) ସେ, ପକ୍ଷ୍ମ (ନେତ୍ରଲୋମ) ପେଡ଼ା ହେଲା ତହିଁରୁ ବାହାରି ଶ୍ରୋଣ (କର୍ଣ୍ଣ ବିଲ ଗର୍ତ୍ତ) ହେଲା ତହିଁକି ପଳାଇ ଯାଉ-ଅଛି ଏଥିରେ କି ବିଶେଷ (କେଉଁ ବିଶେଷ ଅଛି) ଏଥିରେ ତତ୍ତ୍ୱ (ତତ୍ତ୍ୱ) ନ ଜାଣି (ଜାଣୁ ନ ଥାଉଁ) । ମୀନଦ୍ୱିଶିର ବେନି ପାଶୁରେ (ଦୁଇ ପାଖରେ) ବୋଧ ହୁଏ ବେନି ଧୂମକେତୁ (ଲଙ୍ଗୁଳା ତାରା) ବିକାଶ (ପ୍ରକାଶ) ହେଲା । ଏହାଦ୍ୱାରା ମହୋତ୍ପାତ ସୂଚିତ ହେଲା । ଯୁବକ ଧୈର୍ଯ୍ୟାଧ୍ୱଂସ ଉପଦ୍ରବ ନିମିତ୍ତ ॥ ଏମନ୍ତ ଭାବ । ନେତ୍ର ମୀନ ସଦୃଶ ତାହା — ନେତ୍ରତାର ଲକ୍ଷ— କଜ୍ଜଳଲକ୍ଷି । ୧୨ ।

---

୩—ସରଘା ମଧୁମକ୍ଷିକା ଇତ୍ୟମରଃ ।

॥—ଯଦୁକ୍ତଂ—କଜ୍ଜଳରେଖା କାନ୍ତେ ବିଜରେ ସ୍ତ୍ରଳ୍ପକେନ । ଯୂନାଂ ମାନସଗୃହଧୈର୍ଯ୍ୟାଧ୍ୱଂସନାୟ ଧୂମକେତୁଃ । ଇତି ।

ବିଚରଣରେ ମୋତିଗ୍ରୀବସରୁ । ବିତର୍କ ତହିଁରେ ବେଗେ ପ୍ରସରୁ ।
ବାଞ୍ଛି ନିଷ୍କ୍ରାନ୍ତ ପାରାବତ । ବନ୍ଦୀ ହେଲା ଯହିଁ ପାଶରେ ସତ ଯେ
ବନ୍ଧୁକମାନଙ୍କ ରଞ୍ଜି ଯେ ।
ବର୍ଣ୍ଣନା ଅଛି ଶଙ୍ଖ ବୋଲି ଯାହାକୁ କେ ତାହା ପାରିବ ଭଞ୍ଜି ଯେ ।
ବ୍ୟବସ୍ଥା କଲେ ବାହୁଦଣ୍ଡ ବିଧି । ବିନତ ସ୍କନ୍ଧ କ୍ଷତ୍ର ପ୍ରତିନିଧି ।
ବଳୟ ତ ଉପାଧିକୁ ନଯୋଗି । ବକ୍ଷୋଜ ଭୂମିକା ଥିବାରୁ ଲାଗି ଯେ

୧୩ଶ ପଦ—ତହିଁ ମୁଗ୍ରୀବ କଣ୍ଠରେ ଯେ (ସଖୀମାନେ) ମୋତି-ଗ୍ରୀବସରୁ (ମୋତିସମ୍ବନ୍ଧୀୟ ଗ୍ରୀବାଭରଣମାଳା) ବିଚରଣ କଲେ (ଦେଲେ) ତହିଁରେ (ସେହି କଣ୍ଠରେ) ୧ ବିତର୍କ (ଉତ୍ପ୍ରେକ୍ଷା) ବେଗରେ ପ୍ରସରିଲା (ସଂଚରିଲା) ୨ ପାରାବତ (କପୋତ) ମୋତିକ ନିଷ୍କ୍ରାନ୍ତ (ନିଷ୍କ୍ରାନ୍ତ) ବାଞ୍ଛି (ମନେକରି) ତା ପାଖକୁ ଯାଇ ପାଶରେ ବନ୍ଦୀହେଲା ସତ (ପ୍ରାୟ) ନହେଲେ ରହିଲା ସତ ଏ (ମିଥ୍ୟାନୋହେ) । ପୁଣି ବନ୍ଧୁକମାନଙ୍କ ରଞ୍ଜି (ବନ୍ଧୁକମାନଙ୍କୁ ରଞ୍ଜିତ କଲେ) । ଯାହାକୁ (ଯେଉଁ କଣ୍ଠକୁ) ଶଙ୍ଖ ବୋଲି ବର୍ଣ୍ଣନା କରାଯାଇଅଛି ତାହା କେଉଁଲୋକ ଭାଙ୍ଗି ପାରିବ ? କେହି ଭାଙ୍ଗି ପାରିବେ ନାହିଁ । ଶଙ୍ଖ ବନ୍ଧୁକ ମାଳାଦ୍ୱାରା ରଞ୍ଜିତ ହେଉ, ଏ କଣ୍ଠ ଶଙ୍ଖ ବନ୍ଧୁକ ମାଳରେ ରଞ୍ଜିତ ହେଲା । ୧୩ ।

୧୪ଶ ପଦ—ବାହୁ (ଭୁଜରେ) ଦଣ୍ଡ (ବାଣଦଣ୍ଡ) ବିଧିର ବ୍ୟବସ୍ଥା କଲେ ବିନତ (ଅନତ) ସ୍କନ୍ଧ କ୍ଷତ୍ର (କାଣ୍ଡକ୍ଷତ୍ରର) ପ୍ରତିନିଧି (ସଦୃଶ) ହେଲା ତହିଁରେ ବଳୟ (କଙ୍କଣ) ତ ଉପାଧି (ବାଣାଧାର) ହେଲେ । ତାହାକୁ ନିଯୁକ୍ତ କଲେ । ସେହି ବାହୁଦଣ୍ଡରେ ବକ୍ଷୋଜ (ସ୍ତନ) ଭୂମିକା ହେଲା, ସେ ଲାଗି-ବାରୁ ଦୁଇଗୋଟି ବାଣ ରେ ଯୋଡ଼ିଏ ଭୂମି ହେଲା, ବାହୁମୂଳ (ବାହୁଦ୍ୱୟ) ବିମୂଳ ହେଲା (ମୂଳ ନୋହିଲା) । ଦୁଇଗୋଟି ଭୂମି ହେଲେ ସକଳ ଲକ୍ଷ୍ୟ ଜୁଅନ୍ତା ସେହି ହେତୁରୁ ବାହୁ ବନ୍ଧ (ବାଜୁବନ୍ଧ) ଦେଇ ତହିଁରେ ମୁଦ୍ରା

୧—ଶଙ୍କେ ମନନ୍ଧୁ ଧ୍ରୁବ ପ୍ରାୟୋ ନୂନଂ ଜ ନାମି ତର୍କୟେ ।
କଣ୍ଠୈତ୍ୟାଦଭିରୁତ୍ପ୍ରେକ୍ଷା ଗମ୍ୟତେ କାବ୍ୟବର୍ତ୍ମନି । ଇତ୍ୟାଳଂକାରଶେଖରେ ।
୨—ପାରାବତଃ କଳରବଃ କପୋତ ଇତ୍ୟମରଃ ।

ବିମୂଳ ବାହୁ ଯୁଗଳ ଯେ ।
ବାହୁ ବନ୍ଧ ଦେଇ ମୁଦ୍ର ଦେଲେ ତାକୁ ନୋହିଲା ଲକ୍ଷ ସକଳ ଯେ ୧୪
ବଲ୍ଲୀପରି ଗିରି ନକ୍ଷତ୍ରୁ ମନ୍ଦା ବକ୍ଷୁସ୍ଥ ସ୍ଥାନରେ କି ସୂକ୍ଷ୍ମ ରଚନ ।
ବିଭୂଷ ସ୍ୱର୍ଣ୍ଣଜଡ଼ିତ-ନୀଳବେଳ । ବିଳସାଇ ହାର ବିଚିତ୍ର ଫଳ ସେ ।
ବିନ୍ଧ୍ୟ ମନ୍ଦର ଯୋଡ଼ି ଯେ ।
ବିଦ୍ୟୁମ୍ମାଳକେ ଘନଧାରେ ବଳକାପନ୍ତି ଏ ମିଳିଛନ୍ତି ଯେ ।୧୫।
ବଳା ତୁଳ କୋଟି ରଞ୍ଜିଲେ ପାଦେ । ବୋଲିବ ତୁଳାକୋଟି ଦୁନ୍ଦୁଭିନାଦେ
ବିଗୂଢ଼ ହଂସକ ହରେ ଗମନ । ବିଗୁଢ଼-ସ୍ୱନ ହଂସକ ମଣ୍ଡନ ଯେ ।

---

ଯାହା ଦେଲେ ବୋଝହୁଏ ସଜ୍ଜନମାନେ ସକଳ ଲକ୍ଷ ନେ ହୁଅନ୍ତି, ବୋଲି ବାହୁଦ୍ୱୟ ବାନ୍ଧି ମୁଦ (ମୁଦ୍ରିତ କରି ଦେଲେ ଏମନ୍ତ ଭାବ) । ୧୪ ।

୧୫ଶ ପଦ ବକ୍ଷୋଜଙ୍କ ଗିରି ଲକ୍ଷ ହେବାରୁ ୧ ମାଳକ ବଲ୍ଲୀ (ଲତା) ସଙ୍ଗେ ଉପମା କରୁଅଛି । ପର୍ବତରେ ଲତା ଥାଏ, ବକ୍ଷୁସ୍ଥ ସ୍ଥାନରେ (ବକ୍ଷୁସ୍ଥ ସ୍ଥାନରେ) ରଚ (ରଚିଲେ ଗଣ) ଅର୍ଥାତ କଣ୍ଠଶ୍ରୀପଦ ବଳୀ ରଚନା ସେ କି ସୂକ୍ଷ୍ମ ? (କି ଧ୍ୱଜନ) ? "ବଲ୍ଲୀପରି ଉପମା ବଳି ମାଧ" । ତହୁଁଆରୁ ସ୍ୱର୍ଣ୍ଣ ଜଡ଼ିତ ଯୁକ୍ତ ନୀଳବେଳ (ନୀଳବର୍ଣ୍ଣ କଞ୍ଚୁଳି) ବିଭୂଷିତ କଲେ ସେହି ସ୍ୱର୍ଣ୍ଣ ଜଡ଼ିତ ଯୁକ୍ତ ନୀଳବେଳି ଉପରେ ୨ହାର (ମୁକ୍ତା ମାଳ) ବିଳସି ଥିଲେ, ସେହି ହେତୁରୁ ସେ ବିଚିତ୍ର ଫଳ (ଅତ୍ୟନ୍ତ ଶୋଭା) ହେଲା । ତହିଁ ଉପରେ ଉତ୍ପ୍ରେକ୍ଷା କଲା, ବିନ୍ଧ୍ୟପର୍ବତ, ମନ୍ଦରପର୍ବତ, ଏ ଦୁହିଁଙ୍କ ଯୋଡ଼ି ଏ ବିଦ୍ୟୁଧାରକେ (ବିଜୁଳିଧ ଦିଶନ୍ତେ) ଘନଧାରେ (ଘନରେଖାରେ) ୩ବଳାକାପନ୍ତିରେ ମିଳିଅଛି ଏମନ୍ତ ଶୋଭା ପାଇଲା । ୧୫ ।

୧୬ଶ ପଦ—ବଳା (ପାଦ ଲଙ୍କର ବିଶେଷ) ୧ ତୁଳ କୋଟି (ପାଦ କଡ଼ା) ଏ ଦୁହିଙ୍କି ପାଦରେ ରଞ୍ଜିଲେ । ତୁଳ,କୋଟି (ଉପମା କୋଟି

---

୧ —ମଂସଂ କାଷ୍ଠେ ଘ୍ନବଧାରଣୀ ।
୨—ହାରୋମୁକ୍ତାବଳୀ ଦେବଚ୍ଛନ୍ଦୋଽସୌ ଶତଯଷ୍ଟିକା ଇତ୍ୟମରଃ ।
୩—ବଳକା ବିଷକଣ୍ଠିକା ।
୧ —ପାଦାଙ୍ଗଦ, ତୁଳାକୋଟି ମଞ୍ଜିରୋନୂପୁରୋଽସ୍ତ୍ରିୟାଂ ।

ତନ୍ତୁର ମାର୍ଗ ଜଣାନ୍ତେ ଯେ ।
ବର୍ଣ୍ଣଭେଦ ବିନା ଝୁଣ୍ଟି ଆଖୁଣ୍ଟି ଆ ପ୍ରପଦେ ରଖିଲେ ତହୁଁ ଯେ ।୧୬
ବେତସରପାଦର ଲେଖିଲେ ଲାକ୍ଷା । ବାକ୍ ହେଲା ବେନି ରଙ୍ଗ କଦକ୍ଷା
ବିକସିତ କୋକନଦ ମଧ୍ୟର । ବେଢ଼ି ଭ୍ରମେ କି ସରସ୍ୱତୀ ନୀର ଯେ ।

ଯେଉଁ ସ୍ୱର୍ଗୀୟ ଉପମା) ଏହାକୁ ସେ ତୁଚ୍ଛ ଏମନ୍ତ ୨ ନାଦ (ଧ୍ୱନି) ତହୁଁରେ ବୋଲିବ । ଅର୍ଥାତ୍ ଗମନ କାଳରେ ନାଦ ଶବ୍ଦବାରେ ସେ କହିବ । ଏ ସୀତାଙ୍କ ଯେଉଁ ଗମନ ରେ ୩ ଆବିର୍ଭୂତ (ପ୍ରକଟ) ତନ୍ତ୍ରି ହଂସର ୪ ... (ମୁଖକୁ) ଦ୍ୱନ୍ଦ୍ୱ (ବେଗ ଭରଅଛି) । ଏମନ୍ତ ସ୍ଥାନରେ ବମୂଢ଼ (ସବୃତ) ହୋଇଥିବା ୫ ହଂସକ (ପାଦକଟକକୁ) ମଣ୍ଡନ କଲେ । ଯେମନ୍ତ ସମୟରେ ପ୍ରକଟ କହିବ । ୬ ତନ୍ତୁର (ହୃନ୍ନତାନନ୍ତ) ମାର୍ଗ ତନ୍ତୁକୁ ଜଣାନ୍ତେ (ଚହ୍ଲାନ୍ତେ) ଏମନ୍ତ ବୋଲି ବର୍ଣ୍ଣେ (ବର୍ଣ୍ଣ ମାନଙ୍କରେ) ଭେଦ ବିନା । ଝୁଣ୍ଟିଆ ଖୁଣ୍ଟିଆ ହେଲା ତାକୁ ୭ପ୍ରପଦେ (ଆଦ ଗ୍ରରେ) ସେହି ହେତୁରୁ ରଖିଲେ । ୧୬ ।

୧୭ଶ ପଦ—ବେତସ୍ରାକୁ ପଦର ବେଢ଼ରେ ଲାକ୍ଷା (ଅଲକ୍ତକ) ରସ ଲେଖିଲେ (ଦେଲେ) ବେନି ରଙ୍ଗ (ନାଦରଙ୍ଗ ଓ ଅଳତାରଙ୍ଗ) ଏ ଦୁଇ ରଙ୍ଗ କି ଦକ୍ଷ (କି କୁଶଳରେ) ବାତହେଲ । ତହିଁକି କବି ଉତ୍ପ୍ରେକ୍ଷା କଲେ । ବିକସିତ କୋକନଦ (ରକ୍ତୋତ୍ପଳ) ମଧ୍ୟରେ ଯାହାର ଏମନ୍ତ ଯେ ସରସ୍ୱତୀ ନୀର ସେ ବେଢ଼ି ଭ୍ରମ ଅଛି କି ? ପାଦ କୋକନଦ ହେଲ । ସରସ୍ୱତୀ ନୀରପର ଅଳତାରସ ହେଲା । ଏ ହେତୁରୁ ବଣମାଳରେ ଥିବାର "ଅନ୍ତ ମୁକ୍ତ ଅଟଇ" ଦୂର୍ବାଦଳ ପ୍ରଯୁକ୍ତ ନୀଳବେଳ (ବସନ) ବାନ୍ଧି ପିନ୍ଧିଲେ ।

୨—ନାଦକ୍ୟୁସ୍ତାନନ୍ଦମୁନ ଇତ୍ୟମରଃ ।
୩—ସୁତଂରକ୍ତଂ ସୁହେ୍ୟ ଚ ନ ଦ୍ୱୟୋଃ ସଂବୃତେ ଜିଷ । ଇତି ମେଦିନୀ ।
୪—ମୁଖଶୀଳକଳେଷୁ କମିତ ମେଦିନୀ ।
୫—ହଂସକଃ ପାଦକଟକଃ ଇତ୍ୟମରଃ ।
୬—ତନ୍ତୁରଂ ତୃନ୍ନତାନନ୍ତଂ ।
୭—ପଦାଗ୍ରଂ ପ୍ରପଦମିତ୍ୟମରଃ ।

ବଂଶନଳରେ ଥିବାର ଯେ ।

ବାନ୍ଧି ମିଶ୍ର ଦୂବାଦଳ-ମାଳରେଳ ଚକାଳ ଚକ୍ରି ଶ୍ରୀରାମର ଯେ ।୧୭।

ବସନ ଅଳଯେତଳଲେ ଚବେଗେ । ବଦନାଠାରେ ସେଯୋଗିଙ୍କି ଯୋଗେ

ବିଭଙ୍କେ ତାହା ଆଗେ କୃଷ୍ଣାରଣ୍ୟ । ବ୍ୟକ୍ତ ନୋହୁ ଉରୁଂଚି ଏପାଂଶ୍ୱେ

'ବନ୍ଧ କଟିରେ କଙ୍କିଣୀ ଯେ ।

ବାଜ ଜଣି କଣି ଚତ୍ର ନେବ କଣି ଗୃହିଁଲେ ନୟନ ଏଣୀ ଯେ ।୧୮।

ବେଳା ଜାଣିବାକୁ ସଖୀ ବସାଇ । ବାଟିକା ନାଗବଲ୍ଲୀର ଭୁଞ୍ଜାଇ

ଢଉମ୍ବ ନୋହଳ ଅନ୍ତଶପୁରେ । ବାଳରବ ଦ୍ୟୋତ ଜବାକ ଧରେଯେ

୧ ଶ୍ରୀରାମ ଏପରି ବେଲ ଲଭନ୍ତୁ ଏମନ୍ତ ଇଚ୍ଛା କରି ଅଥବା ଶ୍ରୀରାମଙ୍କର ଏରୂପ ଦ୍ୱାର (ଆଶ୍ରୟ) ହେଉ ଏମନ୍ତ ଇଚ୍ଛା କରି ପିନ୍ଧିଲେ ।୧୭।

୧୮ଶ ପଦ ବର୍ଣ୍ଣନ ପଦାଧାନ ଜନ୍ମ ଇତ୍ୟାଦିରୁ ବସନାଞ୍ଚଳ (ପଣନ୍ତ) ଯୋଗେ (ସଂଯୋଗରେ) ଯାହା ଚଳାଇ କହିଲେ ଉଭ ଏମନ୍ତ ଦୃଷ୍ଟି ଦେଲ । ସେ. ବଦନାଞ୍ଚଳରେ ' ସମ୍ମାନଯାନଙ୍କ 'ସାନ୍ନରେ' (ଧ୍ୟାନରେ) ବସି ଯା (ବେଦ) ହୋଇ ଏମନ୍ତ ଠାର । ପୁଣି ସୀତାଙ୍କ ଆଗରେ ତାହା କହଙ୍କେ (ସେ ବସନକୁ ଖଙ୍ଗ) ଊର୍ (ଊର୍ଦ୍ଧ୍ୱମୁଖ) ଫୁଟି ବ୍ୟକ୍ତ ନୋହୁ ତୋଳି ଏକଥା ପଞ୍ଚ କୃଷ୍ଣା ତଞ୍ଚ (ବୃଞ୍ଚ କୁ ଗଚଲେ) ତହିଁଉତ୍ତାରୁ କଟୀରେ କଙ୍କିଣୀ (କ୍ଷୁଦ୍ର ଘଣ୍ଟିକା) ବନ୍ଧି (ବାନ୍ଧଲେ) ଦେଖିବଂ ଲୋକର ନୟନ ଏଣୀ(ମୃଗୀ) ହେଲ, ସେ ଗୃହିଁଲେ ଲଣିକଣି ହୋଇ ବାଜ ଉଠି ଚିତ୍ତକୁ କଣି ନେବ । ଘଣ୍ଟି ଶବ୍ଦରେ ମୃଗ ମୃଗୀ ବଶ ହୁଅନ୍ତି ଏମନ୍ତ ଭାବ ।୧୮।

୧୯ଶ ପଦ—ଏମନ୍ତ ବେଶ ବିଧାନସରଲ ଇତ୍ୟାଦିରୁ ବେଳା(ଶୁଭବେଳା) ଜାଣିବା ନିମିତ୍ତ ସଖୀମାନେ ସୀତାଙ୍କୁ ବସାଇ ନାଗବଲ୍ଲୀର ବଟିକା (ପାନ ଖିଲ) ଭୁଞ୍ଜାଇଲେ । ସେ ଅନ୍ତଃପୁରରେ ଢଉମ୍ବ ନୋହଳ (ସଦୃଶ) ହେଲ । ତାହାପରେ ? ଜବା (ଜବାପୁଷ୍ପ) ବାଳରବ (ବାଳସୂର୍ଯ୍ୟଙ୍କ) ଦ୍ୟୋତ ପ୍ରଭା-

୧ ନଦେହଃ କାଳଂ ଶମ୍ଫ ଗୃହଂ ଗଜାବନ୍ଧେଚନଂ । ଇତି ପ୍ରୟୋଗଃ ।

୧—କଙ୍କିଣୀ କ୍ଷୁଦ୍ରଘଣ୍ଟି କେତ୍ୟମରଃ ।

ବତିଶ ଲକ୍ଷଣା ପୁଷ୍ପ ଯେ ।

ବଧାମୀ ଉପମା ଗୀତ ଗୃଚ୍ଛୁସ୍ତ କି ଲକ୍ଷ ଲକ୍ଷ ଦତ୍ତ କରି ଯେ । ୧୯ ।
ବିଭୂଷା ହେମ ରତ୍ନ ଯେତେ କିସ୍ତ । ବାଳାମଣି ଶାଣ ଉପାଣ ଚହିଁ ।
ବିଦଳୀ ଅଞ୍ଜନ କସ୍ତୁରୀ ନଶି । ବଧୂ ବଧୂ ବର୍ଣ୍ଣ ଉଜ୍ଜ୍ୱଳ ଦିଶି ସେ ।
ବିଦେହଜା ପଦ ଗୁଣି ଯେ ।
ବିଂଶତିମଦେ ଏ ଛାନ୍ଦ ଉପଇନ୍ଦ୍ର ଭଞ୍ଜ ବାରବର ଭଣି ଯେ । ୨୦



ଶକୁ ଧଇଲୁ କି ? ପାନ ସଂଯୋଗରୁ ଓଷ୍ଠ ତେମନ୍ତ ଦିଶିଲା ଏ ସ୍ୱଭାବ । ସେ (ସୀତା) ବତିଶ ଲକ୍ଷଣାର ପୁଷ୍ପ ( ସ୍ଥାନ ) ରୂପେ ବଧାମୀ ହୋଇଅଛନ୍ତି । ଗୀତ ଗୁଚ୍ଛୁସ୍ତ (ଗୀତ ସ୍ୱରୂପ) ଧନିକ ( ବ୍ୟାଜରେ ) ଉପମାମାନଙ୍କ ଲକ୍ଷ (ସଦୃଶ) କରି ଦଣ୍ଡ କରି (ଦେଉଥାଇ) । କିନ୍ତୁ ତାହାଙ୍କ ଶୋଭାକୁ ଉପମା- ମାନେ ଯୋଗ୍ୟ ନୁହନ୍ତି ଏହି ଭାବ ।୧୯।

୨୦ଶ ପଦ —ଯେତେ ରତ୍ନଭୂଷା ଓ ଯେତେ ହେମଭୂଷା କଣ୍ଠଲ ତଦ୍ଭିନ୍ନ ବାଳ ମଣି (ସୀତା) ଶାଣ (କଷୋପଳ-ରସାଣପଥର) ପରି ଅଟନ୍ତି । ତାହାଙ୍କ ଦେହରୁ ଏମାନେ ଉଜ୍ଜ୍ୱଳ ହେଲେ । ବିଦଳିତ (ମର୍ଦ୍ଦିତ) ଅଞ୍ଜନ (କଜ୍ଜଳ) କସ୍ତୁରୀ ଏ ଦୁହେଁ ନଶି (ଗର୍ବି) ହେଲେ । ବଧୂ (ସୀତା) ବଧୂ ( ଚନ୍ଦ୍ର ) ହେଲେ, ତାହାଙ୍କ ବର୍ଣ୍ଣରୁ ଉଜ୍ଜ୍ୱଳ ଦିଶିଲେ । ଅର୍ଥାତ ସୀତାଙ୍କ ଅଙ୍ଗସ୍ପର୍ଶରୁ ଅଞ୍ଜନ କସ୍ତୁରୀ ଏଦୁହେଁ ଉଜ୍ଜ୍ୱଳ ହେଲେ । ଏମନ୍ତ ବିଦେହଜା (ବୈଦେହୀଙ୍କ) ପାଦପଦ୍ମକୁ ଗୁଣି (ସ୍ମରଣ) କରି ବୀରବର ଉପାଧି ଯାହାର, ଏମନ୍ତ ଉପେନ୍ଦ୍ର ଭଞ୍ଜ କବି ଏ (ବେଶୋପଶଳ) ଛାନ୍ଦ ବିଂଶତି ପଦରେ ଭଣିଲେ ।•।୨୦।



୧—ପଞ୍ଚଦୀର୍ଘଂ ପଞ୍ଚସୂକ୍ଷ୍ମଂ ସପ୍ତରକ୍ତଂ ଷଡ଼ୁନ୍ନତଂ ।
ତ୍ରିହ୍ରସ୍ୱପୃଥୁଗମ୍ଭୀରଂ ଦ୍ୱାତ୍ରିଂଶଲ୍ଲକ୍ଷଣୋ ମହାନ । ଇତିସାମୁଦ୍ରିକେ
୪ – ବ୍ୟାଜୋମିଷଂ ଛଳଂ ଲକ୍ଷ୍ୟଂ ସ୍ୱରୂପ ଦେଶସ୍ତୁ କୈତବେ ।
•। ମାନବା ମୌକ୍ତିକେ ବର୍ଣ୍ଣ୍ୟା ଦେବାଃ ଚରଣତଃ ପୁନଃ । ଇତି କବିକଳ୍ପଲତାୟାଂ ଅଥମନୁଷ୍ୟ.ବତ ବର୍ଣ୍ଣ ଦୋଷଃ ।

ରାଗ ବସନ୍ତ ବରାଡ଼ୀ ।

ବେଳ ଶୁଭଦରେ ପ୍ରବେଶ ଆବେଶ ବେଶ ସ୍ତ୍ରୀଏ ସାରଥିଲେ ।
ବନ୍ଦେ ସୁମନା ଶ୍ରୀ-କରେ ସୁମନା-ସୁମନା-ମାଳା ନେଇ ଦେଲେ ।
ବୋଇଲେ । ବଶକ ଏ କଳାଭୃଙ୍ଗର ।
ବସି ଦଶରଥ-ସୁତ-ଜାନ-ରଥ ଯେ ମନୋରଥ ସାର୍ଥ କର । ୧ ।

ଏକାଦଶ ଛନ୍ଦ ।

୧ମ ପଦ— ବେଳ [ସମୟ] ଶୁଭଦ [ଶୁଭପ୍ରଦରେଁ] ପ୍ରବେଶ ହେବା । ପୂର୍ବରୂପ ଆବେଶ [ବେଶକୁ] ସାରିଥିଲେ । କଅପନ ମୋହନାର୍ଥ ଇତ୍ୟାଦି ଆବେଶ ବେଶ ଏ ସ୍ତ୍ରୀମାନଙ୍କର ଅଷ୍ଟାବିଂଶତି ସଂଖ୍ୟକ ସ୍ୱଭାବ ଅଳଂକାର ଭିନ୍ନ + । ସର୍ବମାନେ ବନ୍ଦନ [ବନ୍ଦନକର] ସୁମନା [ସୀତାଙ୍କ] ଶ୍ରୀକରରେ ସୁମନା [ଆନନ୍ଦମନା] ହୋଇ ସୁମନାମାଳା [ପୁଷ୍ପମାଳା] ନେଇ ଦେଲେ । ଅଥବା ସୁମନା [ଇଷ୍ଟଦେବତାଙ୍କୁ] ବନ୍ଦି ଶ୍ରୀ [ଲକ୍ଷ୍ମୀରୂପା ସୀତାଙ୍କ] କରରେ ସୁମନା [ପ୍ରସନ୍ନମନା] ହୋଇ ସୁମନମାଳା [ପୁଷ୍ପମାଳା] ଦେଲେ, ବୋଇଲେ ଏ ପୁଷ୍ପମାଳା କଳାଭୃଙ୍ଗର [ଭ୍ରମରର] ବଶକ [ବଶକରେ] । କଳାଭୃଙ୍ଗ ପ୍ରାୟ ରାମଚନ୍ଦ୍ରଙ୍କୁ ବଶ କରିବ । ଦଶରଥ ସୁତ [ରାମଙ୍କୁ] ଜାନ ରଥ ହେଲ, ତହିଁରେ ବସି ତୋ ମନୋରଥକୁ ସାର୍ଥ କର ।୧।

+ ଯଥା ଦର୍ପଣେ— ଯୌବନେ ସତ୍ତ୍ୱଜା ସ୍ତ୍ରୀଣ ମଷ୍ଟାବିଂଶତ୍ୟଲଙ୍କୃତାଃ ।
ଅଙ୍ଗଂକାଗ୍ରସ୍ତତ ଭାବହାବହେଲାସ୍ତ୍ରୟୋଽଙ୍ଗଜାଃ ।
ଶୋଭା କାନ୍ତିଶ୍ଚ ଦୀପ୍ତିଶ୍ଚ ମାଧୁର୍ଯ୍ୟଂ ଚ ପ୍ରଗଲ୍ଭତା ।
ଔଦାର୍ଯ୍ୟଂ ଧୈର୍ଯ୍ୟମିତ୍ୟେତେ ସପ୍ତୈବ ସ୍ୟୁରଯତ୍ନଜାଃ ।
ଲୀଳା ବିଳାସୋ ବିଚ୍ଛିତ୍ତି ର୍ବିବ୍ବୋକଃ କିଳକିଞ୍ଚିତଂ ।
ମୋଟ୍ଟାୟିତଂ କୁଟ୍ଟମିତଂ ବିଭ୍ରମୋ ଲଳିତଂ ମଦଃ ।
ବିହୃତଂ ତପନଂ ମୌଗ୍ଧ୍ୟଂ ବିକ୍ଷେପଶ୍ଚ କୁତୂହଳଂ ।
ହସିତଂ ଚକିତଂ କେଲିରିତ୍ୟଷ୍ଟାଦଶ ସଂଖ୍ୟକା ।

ବେଷ୍ଟିତତର ତରଳାକ୍ଷୀକି ତାର ତାର ପରିଧି କି ବିଧୁରେ ।
ବିଧୁରେ ମଙ୍ଗଳବିଧିରେ କେ ହୁଳହୁଳିକି ବହିଲେ ବିଧିରେ ।
ବାଣ୍ଟନ୍ତି । ବିଧୁଚୂର୍ଣ୍ଣ କେହୁ ଆଗରେ ।
ବଜାଇ ଦେଖାଇଁ ମାର୍ଗ କେ ପ୍ରବୀଣା ବୀଣା ଧରି ଅନୁରାଗରେ । ୨ ।
ବ୍ୟଜନ ଭଞ୍ଜନ କରି କେ ବୁଲନ୍ତି ଢାଳନ୍ତି କେ ଖଡ ଘୁମର ।
ବକ୍ତା ମଣିମା ମଣିମା ପଦରେ କେ ଅଣିମାଦିଦାୟୀ ଗୁମୁର ।

---

୨ୟ ପଦ— ବରଣ କରିବା ନିମିତ୍ତ ସୀତାଙ୍କ କରରେ ପୁଷ୍ପମାଳା ଦେଇ ସୀତାଙ୍କୁ ବେଷ୍ଟିତତର (ଅତିଶୟରେ ବେଢ଼ିଲେ) ଏରୂପ ତରଳାକ୍ଷୀ ସଖୀମାନେ ସେମାନଙ୍କ ତାର (ଦୀପ୍ୟମାନ) ବିଧୁରେ (ଚନ୍ଦ୍ରଙ୍କଠାରେ) ତାର ପରିଧି (ନକ୍ଷତ୍ର ପଂକ୍ତି କି ସେ) ଏମନ୍ତ କବି ଉତ୍ପ୍ରେକ୍ଷା କଲେ । ସେ ସଖୀମଣ୍ଡଳ ମଧ୍ୟରେ କେ (କେତେକ ସଖୀ) ବିଧିରେ (ଦୈବ ଯୋଗରେ) ମଙ୍ଗଳ ବିଧିରେ (ମଙ୍ଗଳ ବିଧାନର୍ଥ) ହୁଳହୁଳି (ସ୍ତ୍ରୀ ମୁଖଧ୍ୱନି) ବିଧିରେ (ଉଚ୍ଚରେ) ବହିଲେ । କେହୁ (କେହି ସଖୀ) ବିଧୁଚୂର୍ଣ୍ଣ (କର୍ପୂରଧୂଳି) ଆଗରେ ବାଣ୍ଟିଲେ । ପ୍ରବୀଣା (କୁଶଳା) କେ (କେହି ସଖୀ) ଅନୁରାଗରେ ବୀଣାଧରି ବଜାଇ ମାର୍ଗକୁ ଦେଖାଇଲେ । ବୀଣା ବାଦନରେ ଜଣକୁ ତଳ ଉପରକୁ ଚାଳିବାରେ ନିମ୍ନୋନ୍ନତ ମାର୍ଗ ଦେଖାଇ ଦେଲେ ଏମନ୍ତ ଭାବ ।୨।

୩ୟ ପଦ— କେ (କେହି) ବ୍ୟଜନ (ତାଳବୃନ୍ତ) ଅର୍ଥାତ ଆଲଟ ଚାମର ଭଞ୍ଜନ କରି ବୁଲୁଅଛନ୍ତି । କେହୁଖଡ ଘୁମର ଢାଳୁଅଛନ୍ତି । ୧ ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ ଦାୟୀ (ସୀତାଙ୍କ) ଗୁମୁରେ କେ (କେହି ସଖୀ) ମଣିମା ମଣିମା ପଦରେ ବକ୍ତା ହୋଇଅଛୁ (ମଣିମା ମଣିମା ଡାକ ଦେଉଅଛୁ)। ତହିଁକି କବି ଏମନ୍ତ ଉତ୍ପ୍ରେକ୍ଷା କଲେ । ବାରିଧି (ସମୁଦ୍ର) ଦାରମଧ୍ୟରୁ ରମ୍ଭା

---

୧—ପରିବେଷସ୍ତୁ ପରିଧିରୁପସୂର୍ଯ୍ୟକେ ମଣ୍ଡଳେ ଇତ୍ୟମରଃ ।
୧—ଅଣିମା ଲଘିମା ପ୍ରାପ୍ତିଃ ପ୍ରାକାମ୍ୟଂ ମହିମା ତଥା ।
ଈଶିତ୍ୱଂ ଚ ବଶିତ୍ୱଂଚ ତଥା କାମବଶାୟିତା । ଇତି।

ବାଣୀ । ବାଣୀମଧୁଁ ବେଡ଼ି ରମ୍ଭାଦ ।
ବିଜେ କରନ୍ତି ଜଗପୃଷ୍ଠିହିନେ ହୃଦନ୍ଧୁର ଆଗେ ଶ୍ରୀ କ ସମ୍ବାଦ । ୩ ।
ବିତାନ-ଚିର ଧରନ୍ତି ଉପର ଶୀତର ରୁଚିର ସେହିତ ।
ବଳ ନନ୍ଦ ପ୍ରବାଳ ଅବଳାଙ୍କ ଶୁକ୍ତି ଉକ୍ତି କ ଦେ ମୋହିତ ।
ବାସ୍ତବ । ବାହୁକ ଉରଜ ମଦର ।
ବିଚଳିତ ସ୍ମିତଃ ଲଳିତ କଳିତ ଅଛି ହାସ-ସୁଧା ସାଗର ।୪।
ବିଳସି ବିଳସି ଗର୍ଭାଳସୀ ହଂସୀ ମନ୍ଥର ମନ୍ଥନ ଗତିବର ।
ବର ସନ୍ନିଧିକ ସେ ଶୋକନିଧିଙ୍କ ନେଇଁ ଧିକ ଧିକ ରଚିତର ।

ଅଥ ଅପସର୍ଗ ନେ ଦେଖି ଧର ଉପୃତ୍ତିହୀନରେ ଶ୍ରୀ (ଲକ୍ଷ୍ମୀଙ୍କ) ଶ୍ରୀ (ଦେଶ ସ୍ତ୍ରୀ) ଦମ୍ଭ ଦ ଶତ୍ରୁ ବଶ ରୂପ (ବୀରଧୀର) ରାଜାମାନେ ସୁରସ୍ତୁତ (ଦେବାସୁର) ହେଲେ, ତାହାଙ୍କ ଆଗରେ ବିଜେକରନ୍ତି କି ? ଅର୍ଥ ସୁସ୍ତୁକମାନେ ଦମୁଦ୍ର ମନ୍ଥିବାରେ ଶ୍ରୀ ଜଗପୃଷ୍ଠି ହୋଇଥିଲେ, ଏ ଉପୃତ୍ତିହୀନ ଅଟନ୍ତି ।୩।

୪ର୍ଥ ପଦ – ଯେଉଁ ସୀତାଙ୍କ ଉପରେ ଧରିଛନ୍ତି ଯେଉଁ ବିତାନଚିର (ଗୃହ ଆବାସ) ତର୍କେ, ସେ ଶୀତ (ଲକ୍ଷଣ) ଅତି ରୁଚିର ଅଛି । ଅବଳାମାନଙ୍କର ପ୍ରବଳ ଅଧର ଯେଉଁ ବଳାଧନ୍ଦ (ବଳାଧିକ) ସେ ୧ ଶୁକ୍ତି ଉକ୍ତି (ଶାମୁକା ଧ୍ୱନିପରି) ମୋହିତ କରୁଅଛି । ବାହୁ ବସୁକ (ନାଗରାଜ) ଉରଜ (ଉରୋଜ-ସ୍ତନ) ମନ୍ଦର (ପର୍ବତ) ବିଚଳିତ (ଚଳନକୁ) ସ୍ମିତଃସିଦ୍ଧରେ କଳିତ (କଳନା କରିଅଛି) । ଲଳିତ (ମନୋହର) ହାସ ସୁଧା ହେଲ, ତାହାଙ୍କର ସାଗର ଅଛି ।୪।

୫ମ ପଦ—ଗର୍ଭଭରରେ ଅଳସୀ ଅଟନ୍ତି ଏମନ୍ତ ଯେ ହଂସୀ (ବରଟା) ତାହାର ମନ୍ଥରଗତି (ମନ୍ଥନକାଙ୍କ୍ଷୀ ଗମନ) ତୁଲ୍ୟରେ ବିଳସି ବିଳସି (ବିହରି ବିହରି) ସେ ଶୋକନିଧିଙ୍କୁ (ସୀତାଙ୍କୁ) ବର (ରାମ) ସନ୍ନିଧିକ (ନିକଟକୁ) ନେଇଁ ଦେବ (ସୁରପ୍ରିୟା) ଠାରେ ଧିକ ଧିକ ହୋଇଅଛି (ରଚିତ ନିନ୍ଦା କରୁଅଛନ୍ତି) ତାହା ଦେଖି ସକଳ ବସୁମତୀପତି (ରାଜା)

୧—ମୁକ୍ତାସ୍ଫୋଟଃସ୍ତ୍ରିୟାଂ ଶୁକ୍ତିରିତ୍ୟମରଃ ।

ବିହ୍ୱଳେ । ବସୁମତୀ ପତି ସଙ୍କଳେ ।
ବିଧାତା'ବିଧାନୀ ଉକ୍ତ ଚନ୍ଦଧାନୀ ନେ ହେ ସାବଧାନୀ ହୋଇଲେ । ୭ ।
ବିଘ୍ନବିଜ ଯେତ ଉପମା ବିଜିତ ରାଜିତମାନ କରି ନେଇ ।
ବିହରିଭୂତ ହେବେ ବର୍ଣ୍ଣି ଅଣୁ ଯେଣୁ ସେମାନେ ସେ ମାନେ ବାହୁଡ଼ି ।
ତେବେକ । ତର୍ଜନ ଏ ତଦା ନୁହନ୍ତି ।
ବୃହତ୍‌କୁକ୍ଷି ତର୍ଣ୍ଣେ ସେ ପୂର୍ଣ୍ଣ ହୋଇଲେ ଧନ୍ୟ ସୀତା ମାଳେଜପନ୍ତି ।
ବିପୁଷ୍ଟି ଦୃଷ୍ଟି ସୃଷ୍ଟି ଯହିଁ ଉଶନା ଏକଦୃଷ୍ଟି କବି ବୋଲାଇ ।
ବଣା ହେବାରେ ଲକ୍ଷଣାବାରେ ବାରେ ଗଣା ତା କରିବା କହାଇ ।

---

ବିହ୍ୱଳେ "ରଚ କି ସୁନ୍ଦର ଏମନ୍ତ କହି ଜନ୍ମା କଲେ" । ଉକ୍ତ ଚନ୍ଦଧାନୀ (ଉକ୍ତ ଚନ୍ଦ୍ରମା) ଯାକ ବିଧାତାବିଧାନୀ (ବିଧିନିର୍ମିତା) ନୁହନ୍ତି, ସୁ ୁଂନିର୍ମିତ ଏ ଏମନ୍ତ ସାବଧାନୀ ହୋଇଲେ (ସାବଧ ନରେ ଚିନ୍ତିଲେ) ୭

୭ମ ପଦ ଗଣେଶ ବିଘ୍ନରାଜ ଏ ତଥା ଯେତ; ଉପମା ବିଜିତ (ଉପମା ବିଜିତ) ରାଜିତ ମାନ କରି ନେଇ ଅଣିଲେ ସୀତ କ ରୂପ ବର୍ଣ୍ଣି ଅଣୁ ବିହ ଭୂତ ହେଲେ, ତେଣୁ ସେମାନେ (ସେ ଉପମାମାନେ) ସେ ମାନେ ( ସେହି ଅଙ୍ଗମାନରେ ) ଆମ୍ଭଙ୍କୁ ବିହ ଭୂତରେ ବର୍ଣ୍ଣିବେ" ଏମନ୍ତ ଅଙ୍ଗମାନରେ ବାହୁଡ଼ିଲେ । କି ହେଉଛି ? ସେ ଉପମାମାନେ କଦା ( କେବେ ) ବିଶେଷରେ ବ୍ୟକ୍ତିବର୍ଜନ ନୁହନ୍ତି ( ଅବ୍ୟକ୍ତୋଚିଶନ୍ତ ନୁହନ୍ତି ) ଏହି ନ୍ୟାୟରୁ ଭୂର୍ଣ୍ଣରେ ( ହସ୍ତରେ ) ସେ (ଉପମାବିଜ) ଗର୍ଭରେ ପୂର୍ଣ୍ଣ ହେବାରୁ ଗଣେଶ ବୃହତ୍‌କୁକ୍ଷି (ପେଟୁଆ) ହେଲେ । ତଥାପି ବର୍ଣ୍ଣି ନ ପାରି 'ସୀତା ଧନ୍ୟ" ସୀତା "ଧନ୍ୟ' ଏମନ୍ତ ବେଳେ ମଳରେ ଜପ କରୁଅଛନ୍ତି ।୭

୭ମ ପଦ ଯହିଁ (ଯେଉଁ ସୀତ ଙ୍କଠାରେ ) ବିପୁଷ୍ଟି ଦୃଷ୍ଟି ( ବିଶେଷ ପୁଷ୍ଟି ଦୃଷ୍ଟ ) ସୃଷ୍ଟି (ସର୍ଜନ: କରିବ ହେ) ଉଶନା ( ଭାର୍ଗବ ) ଏକ ଦୃଷ୍ଟି ହୋଇ କବି ବୋଲାଇଲେ । ଏକଦୃଷ୍ଟି ଲେଁଙ୍କୁ ଯରୁ ଦେଖଇ ନାହିଁ । ଲକ୍ଷଣ ବାରେ (ଲକ୍ଷଣା ସମୂହରେ) ବଣା ହେବାରେ ବାରେ [ଥରେ] ତା

---

୧—ବିହାସ୍ୟେ ବଦନଂ ଭୂଣ୍ଡମାଜନଂ ଲପନ ମୁଖ ମିତ୍ୟମରଃ ।

ବାଳା ରେ । ବର୍ଣ୍ଣନ କରି ତୋ ଶୋଭିତ ।
ବସିଲେ ଅନନ୍ତ ଅନନ୍ତବଦନ ବର୍ଣ୍ଣି ଆଣିଲେ ଲାଳାସ୍ଥିତ । ୭ ।
ବିଦ୍ୟାବିଶାରଦା ଶାରଦା ବିନମ୍ରା ଧରିତ୍ରୀ ! ହେଲେ ତୋତେ ।
ବଡ଼ିମା ରକ୍ଷଣେ ସୁଷମା ଅସମା ଉପମା ଅଙ୍ଗୀକାରେ କୁତେ ।
ବାଳା ରେ । ବହଳା ହେଲେ ଉକ୍ତିଯୁକ୍ତେ ।
ବିନ୍ୟାସ କରନ୍ତି କବିଏ ବ୍ୟୁତ୍ପତ୍ତି କବି ସମ୍ମତେ ମତେ ମତେ । ୮ ।
ବିଷ୍ଫେଠନ ମୁଖ ପୟୋଧର ଶିକ୍ଷା ଦେଖି କେତେ ଯୋଖି ଉପମା ।
ବିଷମସନ୍ତାପ ସମ୍ଭୂତେ ଶମ୍ଭୂର ଶୂନ୍ୟ ଖସି ଆସି ଚନ୍ଦ୍ରମା ।

(ହେ କବିକୁ) କପାଇଁ ଗଣନା କରିବା (ଗଣନା କରିବା ନାହିଁ)[?] । ରେ ବାଳା ତୋହର ଶୋଭିତ୍ (ଶୋଭାକୁ) କେହି ବର୍ଣ୍ଣନ (କେମନ୍ତେ ଦେଖି) ଅନନ୍ତ (ଶେଷଦେବ) ଅନନ୍ତ (ଅପରିମିତ) ବଦନ (ମୁଖ) ବସିଲେ ଅର୍ଥାତ୍ ସହସ୍ର ମୁଖ ହେଲେ । ତୋ ଶୋଭାକୁ ବର୍ଣ୍ଣି ଆଣିଲେ ୧ ଲାଳାସ୍ଥିତ (ଲାଳାଯୁକ୍ତ ମୁଖ) ହେଲେ । ତେଣୁ ବର୍ଣ୍ଣି ନ ପାରିଲେ । ୭ ।

୮ମ ପଦ – ହେ ଧରିତ୍ରୀ (ପୃଥିବୀ) ବିଦ୍ୟାବିଶାରଦା (ବିଦ୍ୟା-ପ୍ରସିଦ୍ଧା) ଶାରଦା (ସରସ୍ୱତୀ) ତୋତେ ବିନମ୍ରା ହେଲେ । କି ହେତୁରୁ ? ଆପଣାର ବଡ଼ିମା (ବଡ଼ପଣ) ରକ୍ଷଣେ (ରକ୍ଷିବା ନିମିତ୍ତ) ତୋହର ସୁଷମା (ପରମଶୋଭାକୁ) ଅସମାନ ଅଟନ୍ତି । ଏମନ୍ତ ଉପମାମାନଙ୍କର ଅଙ୍ଗୀକାର କରିବା ବିଷୟରେ ରେ ବାଳା । ତୋଠାରେ ଉକ୍ତିଯୁକ୍ତ ହେବାରେ ବହଳା (ସ୍ନେହଯୁକ୍ତା) ହେଲେ ତୋ ସମ୍ମତେ ମତେ ମତେ (ପ୍ରକାରେ ପ୍ରକାରେ) କବିମାନେ କବିତ୍ୱରେ ବ୍ୟୁତ୍ପତ୍ତି (ବ୍ୟୁତ୍ପନ୍ନ) ବିନ୍ୟାସ କରୁଅଛନ୍ତି । ୮ ।

୯ମ ପଦ – ସଙ୍କୋଚବଶରୁ ବିଷ୍ଫେଠନ (ଅଧୋଗତ) ମୁଖ ଉନ୍ନତ ପୟୋଧରରୁ ଶିକ୍ଷା । ଏ ଦୁହିଙ୍କି ଦେଖି କେ କେ (କେତେ ଜନପଦ) ଉପମା ଯୋଖିଲେ । ଶମ୍ଭୁଙ୍କର ବିଷମ ସନ୍ତାପ (ଅତିଶୟ ଗରଳ ତାପ) ସମ୍ଭୂତେ (ଜାତ ହେବାରେ) ସନ୍ତାପ ଶାନ୍ତ ନିମିତ୍ତ ଶୂନ୍ୟରୁ ଚନ୍ଦ୍ରମା ଖସି ଆସି

୧—ଅଥ ଲାଳାସ୍ଥିତ ଫଣୀ ଇତି । ସନୀକ ସାନ୍ଦ୍ରମ୍ନୀ ଲାଳ । ଇତ୍ୟମରଃ ।

ବାଳାର । ବଗତ ହୋଇଁ କୋଣେ ଡୋଳା ।
ବହର ହରିଣ କ ବିଷଧାରଣ ବେନ ସଂଶୟ ଉପୁଜିଲା । ୯ ।
ବିଭ୍ରମ ପଦର ଗମନେ ଆଦର କରି କେ ସୁମନେ ଘାଳଇ ।
ବିଶାଳ ଉରୁ କରେ ବ୍ୟୁରୁ ଯୌବନକଷ୍ଟ କୋକନଦ ଗୃଳଇ ।
ବାଳାର । ବୋଲେ କ ନିରେଖି ଅଙ୍ଗୁଳି ।
ବାଳକା ମଧ୍ୟ ମାଳିକା କରି ଚହିଁ ଅଶୋକକଳିକାରୁ ଝଳ । ୧୦ ।
ବିଘଟନା ଲକ୍ଷକୁଟେ କେତେ ଦକ୍ଷ ବୁହିଁ ଦେଇ ଚୁର୍ଣ୍ଣଅଳକ ।
ବିଲୋମଲୋମ ବର୍ଣ୍ଣି ଗ୍ରାମ ଏ କ ମଦରକୁ କରତା ତାରକ ।

---

ରହିଅଛନ୍ତି କି ? ପୟୋଧର ଶମ୍ଭୁ ହୋଇ, ମୁଖ ଚନ୍ଦ୍ର ହୋଇ । ବାଳାଭ ଡୋଳା, କେଶ (ନେତ୍ର ପ୍ରାନ୍ତକୁ) ବଢଇବାରୁ ବେନି ସଂଶୟ (ସନ୍ଦେହ-ଦ୍ୱୟ) ଉପୁଜିଲା । ହରିଣ (ମୃଗ) ବାହୁଡ଼ି ଅଛି କି ? ବିଷଧାରଣ (ସର୍ପ) ବାହୁଡ଼ି ଅଛି । କଟାକ୍ଷ ବିଷଧାରଣ ରୂପେ ବର୍ଣ୍ଣିତ ହୁଅନ୍ତି ✣ । ୯ ।

୧୦ମ ପଦ – ପଦର (ପାଦର) ବିଭ୍ରମ (ପଦକ୍ଷେପ) ଅଟେ ଯେଉଁ ଗମନ ତହିଁରେ ଆଦରକରି ବୁଦ୍ଧିକେ (ସ୍ତ୍ରୀ) ସୁମନରେ (ମୃଦୁଭାବରେ) ଗ୍ଳାଳୁଅଛି । ବ୍ୟୁରୁ (ମନୋହର) ଯୌବନ ସେ କଷ୍ଟ ହୋଇ, ବିଶାଳ ଉରୁ କର (ଶୁଣ୍ଡାଦଣ୍ଡ) ହୋଇ, ତହିଁରେ କୋକନଦ (ରକ୍ତପଦ୍ମକୁ) ଗୃଳୁଅଛି କି ? ବାଳାର ପାଦାଙ୍ଗୁଳିକି ନିରେଖି (ଦେଖି) କେ (କେଉଁ ସ୍ତ୍ରୀ) ବୋଲଇ, ଅଶୋକ କଳିକାରୁ ଝଳ (ଅଧିକ କାନ୍ତିବିଶିଷ୍ଟ) ପାଦ-ଙ୍ଗୁଳିରେ ବାଳକା (ଏ ବାଳା) ମଧ୍ୟର ମାଳିକା କରିଅଛି କି ? (ପୃଥ୍ୱୀକି ମାଳା କରି ଦେଇଅଛି) । ଏଠାରେ ଉତ୍ପ୍ରେକ୍ଷା ଗମ୍ୟ ହୋଇ ।୧୦।

୧୧ଶ ପଦ – ବ୍ୟୁରୁ (ମନୋହର) ଅଳକ (ଚୂର୍ଣ୍ଣକୁନ୍ତଳକୁ) ବୁହିଁ-ଦେଇ କେତେ ଦକ୍ଷ (ଚତୁରସ୍ତ୍ରୀ) ଲକ୍ଷକୁଟେ (ଲକ୍ଷ କରନ୍ତେ) ବିଘେଟେ-ଷରେ ଘଟନା ହୋଇ, ବିଲୋମଲୋମ (ଅନୁଲୋମ ବିଲୋମ) ହୋଇ ବର୍ଣ୍ଣି

---

✣ କଟାକ୍ଷୋ ଯମୁନା ବୀଚଭୁଙ୍ଗା ବଳିବଶ ମୁଟେିଃ । ଯଥା —
ହାଳାହଳଂ ବା ବଳଭୂଦ୍‌ଧା ବା ଭୁଙ୍ଗାବଳିର୍ବା ଯମୁନୋର୍ମୟୋ ବା ।
ନିଶାଦେଶୁଷ୍ଟା ମଦନେ ଷବୋ ବା କିଂ ବାକଟାକ୍ଷୌ ମୃଗ୍ରେଖଣାୟାଃ ।ଚେଷାହେଟ୍ୟ
✣ —ଇବାଦକପଦ ଝବେ ଗମ୍ୟୋପ୍ରେକ୍ଷା ପ୍ରତୀୟତେ । ଇତ୍ୟଳଂକାରେ ।

ବାଳାର । ବଚନ ତିଳକ ସାୟକ ।
ବଶ୍ୱକେତୁକୁ ଧନ୍ୱୀ ହୋଇ ଦଇବେ ହୋଇବକ ଏବେ ଫରକ ।୧।
ବୁଧାନେ ଉପମା ବଧାନେ ଆଣିଲେ କେଶ ବେଶ ଜାଲ ସିନ୍ଦୂରେ ।
ବହୁରତ୍ନିସୂତ ମଧ୍ୟ ପାଟସୂତ୍ର ସିନ୍ଥାରୁ ଭୂଷିତ ଟୋପରେ ।
ବାଳାର । ବର୍ଣ୍ଣିଷ୍ଠ ଝିଲମିଲମାଳ ।
ବଜୃମ୍ଭିତବତେ ଜମ୍ଭାଦ ଦନ୍ତାଳ ଉତ୍ତଂସ ଘେନ ଦଂଶ ଝଳ ।୨।

---

୧ ଘୋଷ (ଅକ୍ଷର ଶ୍ରେଣୀ) ଏ । ଦାମଦରଙ୍କୁ (କନ୍ଦର୍ପଭସ୍ମଙ୍କୁ) ଭରବା (ଭକ୍ତବା ଦେବାର) ତାରକ (ତାରକେନ୍ଦ୍ରା) ଏ ବାଳାର ବଚନ (ଆକ୍ଷଣି) ତିଳକ ସାୟକ (ତେଜ ଶର ହେବ । ବଶ୍ୱକେତୁଙ୍କୁ (କନ୍ଦର୍ପଙ୍କୁ) ଦଇବେ (ଦୈବଯୋଗେ) ୨ ଧନ୍ୱୀ (ଧାନୁଷ୍କ) ହୋଇ । ସେ ଏବେ ଫରକ (ଫାନ୍ଦାର) ହେବ କି ? । ଫରକାର ଫରଖଣ୍ଡା ଡେରଥାଏ । ଏ ବାଳାର ଲଲାଟ ଫରହେଲା । ତହିଁରେ ତିଳକ ଖଡ୍‌ଗକୁ ଡେରଅଛୁ ।୧।

୧୨ଶ ପଦ—୧ବୁଧନେ (ପଣ୍ଡିତମାନେ) କେଶର ବେଶ ଅଟଇ ଜାଲ (ମୋତିଜାଲ) ସିନ୍ଦୂରଙ୍କାର ସେ ଦୁହିଙ୍କି ଦେଖି ବଧାନରେ ଉପମାକୁ ଆଣିଲେ ବହୁରତ୍ନସୂତ (ରତ୍ନ) ସେ । ମଧ୍ୟରେ ପାଟସୂତ୍ରରେ ସିନ୍ଥାରୁ (ସିନ୍ଥି) ହୋଇଥିବାରୁ ଟୋପର (ଟୋପିରେ) ଭୂଷିତ ହୋଇଅଛୁ କି ? କେଶ ରତ୍ନ ମୁକ୍ତା ଜାଲ ସିନ୍ଦୂରଗାର ଟୋପରରେ ଭୂଷିତ ହୋଇଅଛୁ ଏମନ୍ତ ଉପମା କଲେ । ବାଳାର ବର୍ଣ୍ଣିଷ୍ଠ (ବିପୁଳ) ୦ ଝିଲମିଲ ମାଳ ବଜୃମ୍ଭିତ (ବିଶେଷରେ ଜୃମ୍ଭାଙ୍କାତବେରେ,ହାଇମାର) ଜମ୍ଭ ଅଦରର ଦନ୍ତାଳ (ଦନ୍ତ-ସମୂହ) ଉତ୍ତଂସ (କର୍ଣ୍ଣାବତଂସ) ଘେନ ଝଳ ଦଶୁଅଛୁ । ସେ ରତ୍ନ ହୋଇ ମାଣଦାରେ ଉତ୍ତଂସ ଚଳାଦନ୍ତ ହେଲା । ଝିଲମିଲମାଳ ଗ୍ରମୁକ୍ତାଳ ହେଲା । ସେ ଦଶୁଅଛୁ ଏମନ୍ତ ଭାବ ।୧୨।

---

୧—ପ୍ରେମୌଘ ନକରବ୍ରାତବାରସଂଘାତସଂଚୟାଃ ।
୨ – ଧନ୍ୱୀ ଧରୁଷ୍ମାନ୍ ଧାନୁଷ୍କ ଇତ୍ୟମରଃ ।
୧– ବୁଧାନସ୍ତୁ ନବୌବଙ୍କ ଇତ ମେଦନୀ ।

ବିଲକ୍ଷିତ କଲେ କ୍ଷତ୍ରକ୍ଷିତ କୁଳେ ପ୍ରାପ୍ତ ତାଙ୍କ ଅନାଇ ।
ବିଶ୍ବକେତୁତମ ଘୋଟିତ ଜନରେ ପ୍ରସନ୍ନ ଦରଶନ ପାଇଁ ।
ବାଳା ଯେ । ବହମ୍ପାଇ ବେନି ପ୍ରଦୀପ ।
ବିକୁଳିତକାଶ ନୟନ ଘୃଣାରେ ଜତନ ଦିଶଇ ସ୍ୱରୂପ । ୧୩ ।
ବ୍ୟକ୍ତ ଏ ଓଷ୍ଠ ପର ତୋର ସ୍ଫୁରଙ୍ଗେ ପରମାର ନାହିଁ କେ ଘନ ।
ବଳେ ତାମ୍ବୂଳ ଷାଳିତ ବୁଦ୍ଧିଦଳେ ଦେଖିଲେଟି ତାହା ଦର୍ପ ଦଳ ।

୧୩ଶ ପଦ—୧କ୍ଷେତ୍ରକ୍ଷିତ (ରାଜା) ତାହାଙ୍କର କୁଳ (ବଂଶ) ପ୍ରାପ୍ତ ତାଙ୍କୁ ଅନାଇ ବିଲକ୍ଷିତ (ବିଶେଷରେ ଲକ୍ଷିତ କଲେ) । ବିଶ୍ବ-କେତୁତମ (କନ୍ଦର୍ପ ଶରର) ଦ୍ୱାରା ଘୋଟିତ (ଆଚ୍ଛାଦିତ) ଜନରୁ ପ୍ରସନ୍ନ ଦର୍ଶନ (ନିର୍ମଳଦର୍ଶନ) ପାଇଁ ବାଳା ତନ୍ତ୍ରରେ ଏ ବେନି ପ୍ରଦୀପ (ତାଙ୍କ ପ୍ରଦୀପଦ୍ୱୟ) ବହମ୍ପାଇ ଅଛି କି ? ଋନୁମାନେ ଘୃଣା ହେଲେ ତହିଁରେ ବିକୁଳିତନାସ (ପ୍ରଫୁଲ୍ଲିତ ଅଛି) ବୋ ହେକାଣୁ ଯନୁ ହୋଇ ୨ ସ୍ୱରୂପ (ଆପଣାର ରୂପ) ସୌନ୍ଦର୍ଯ୍ୟ ଦିଶଇ । ୧୩ ।

୧୪ଶ ପଦ—ପରମାର ଜନ୍ମ ସ୍ଫୁରଙ୍ଗ (ଛତ୍ରମରଙ୍ଗ) ଯେତେକ ପଦାର୍ଥ ତହିଁରେ ଓଷ୍ଠ ତୋର ପର ତୋର ବ୍ୟକ୍ତ (ଗୋଚର) ନାହିଁ ଏମନ୍ତ ତେଜ ଘୃଣ୍ଣି ଖଳନ । ଏ ତାମ୍ବୂଳ ଦୋଳରେ ଯାହା ଷାଳିତ ହୋଇ ଅଛି ତେଣୁ ଏମନ୍ତ ବୋଲୁଅଛି । ବୁଦ୍ଧିଦଳରେ ଏହାର (ଏ ତାମ୍ବୂଳର) ଦର୍ପ (ଗର୍ବ) ଦଳି ଦେଲେଟି । ବାଳାର ୧ବିମ୍ବଗଣ୍ଡ (ଗଣ୍ଡମଣ୍ଡଳ) ଅଥବା ବିମ୍ବ (ଦର୍ପଣ) ପର ଯେଉଁ ଗଣ୍ଡସ୍ଥଳ ତାହାର ତଟ (ମଳମୀଚଳରୁ) ଅନାଇ କେଉଁ ରାଜା ବିକ୍ଷିପ୍ତ (ବିଶେଷରେ କ୍ଷିପ୍ତ ହୋଇଅଛି) । ରସ (ଅନୁରାଗ) ହର୍ଷ (ପ୍ରମୋଦ) ହସ ଏମାନଙ୍କର ପୂର୍ଣ୍ଣ ସ୍ଥାନ ସ୍ଥାନକର ଏକ ଏକାର (ଗୋଟି ଗୋଟିକଠେ) ଲକ୍ଷଣ ମଣିଲ । ଅଥବା ୨ରସ,

୧—ନୃପ ଭୂପ ମହୀକ୍ଷିତ ଇତ୍ୟମରଃ ।
୨—ରୂପଂ ସ୍ୱଭାବେ ସୌନ୍ଦର୍ଯ୍ୟେ ଇତି ବିଶ୍ୱଃ ।
୧—ଗଣ୍ଡୋ ଦ୍ୱୌ ମଣ୍ଡଳଂ ବିମ୍ବ ।
୨—ଶୃଙ୍ଗାରାଦୌ ବିଷେ ବୀର୍ଯ୍ୟେ ଗୁଣେ ରାଗେ ଦ୍ରବେ ରସ ଇତ୍ୟମରଃ ।

ବାକାର । ବମ୍ଭ ଗଣ୍ଡ ଶବ ଅନାଇ ।
ବିକ୍ଷିପ୍ତ ରସ ହ୍ରେଷ ହାସ ପୃଷ୍ଠସ୍ଥାନ ଏକେ ଲକ୍ଷ ମଣାଇ । ୧୪ ।
ବଲ୍ଗୁ ଚବୁକେ କସ୍ତୁରୀ ଜାଣି କେହ୍ନେ ସୁମରେ ତିଳକୁସୁମରେ ।
ବଶରେ ଯାଇଁ ଭ୍ରମର ଶ୍ୱାସ ବତାସ ପାଡିକା ଲବଣ୍ୟ ଭ୍ରମରେ ।
ବଳାର । ବିଲମ୍ବିମାଳ ଫୁଲ ଦେଖି ।
ବାମା ଚରମ ମନୋରମ ପ୍ରଶ୍ନରେ ବନ୍ଧା କି ଏମନ୍ତ କେ ପୋଖି । ୧୫ ।
ବାଜନ୍ତି ରସନା ବଳା ବରଜନା ନୂପୁର ପ୍ରଚୁର ମାଧୁର୍ଯ୍ୟ ।
ବୋଲନ୍ତି ରସ ନା ବଳା ନା ସୁମନା ବିସ୍ମୁରଣୋଚିତ ଏ ହେଜ ।

---

ହର୍ଷ ଓ ହାସ ଏମାନଙ୍କର ପୃଷ୍ଠସ୍ଥ ଓ ଗଣ୍ଡଦ୍ୱୟ, ଏମନ୍ତ ଯେଉଁ ଲକ୍ଷ ତାକୁ ବିକ୍ଷିପ୍ତ (ଫିଙ୍ଗିଦେଲପରି ମଣିଲେ) । ୧୪ ।

୧୫ଶ ପଦ ବଲ୍ଗୁ (ମନୋହର) ଚିବୁକେ (କଣ୍ଠରେ) କସ୍ତୁରୀ (ମୃଗମଦ ଭ୍ରମରେ) ବୁଦ୍ଧିଁ କେଉଁଜନ ସୁମରେ (ସ୍ମରଣ କଲେ) । ନାସକୁ ତିଳକୁସୁମ ମଣି ବଶରେ ଯାଇ ଭ୍ରମନ୍ତେ (ଏଭ୍ରମର) । ଶ୍ୱାସ ବାତ (ନିଃଶ୍ୱାସ ପବନ) ତହିଁରେ ଲବଣ୍ୟ ଭ୍ରମ (ଜଳବର୍ତ୍ତ) ହେଲ ତହିଁରେ ପାଡିକା ପତନ ହେଲା । ଏମନ୍ତ ଉତ୍ପ୍ରେକ୍ଷା କଲେ । ବାଳାର ବିଲମ୍ବି (ଲମ୍ବିତା) ମାଳମାନଙ୍କର ଫୁଲ ଦେଖି ଏମନ୍ତ କେ ? ସେ ଉତ୍ପ୍ରେକ୍ଷା କଲେ । ଚରମ (ପୃଷ୍ଠଦେଶ) ମନୋରମ ପ୍ରଶ୍ନ ହେଲା । ତହିଁରେ ବାମା ବନ୍ଧା ହୋଇ ଅଛି କି ? ଏମନ୍ତ ପୋଖିଲେ । ୧୫ ।

୧୬ଶ ପଦ—ସୀତାଙ୍କ ସଖୀମାନେ ବନୋଭବଳ ଅଣନ୍ତେ ବାଜନ୍ତି ରସନା ବଳା (କାଞ୍ଚୀଯୁକ୍ତ କଟିମେଖଳା ଓ ବଳା ଏ ଦୁହେଁ) ବର୍ଜନା କରୁଅଛନ୍ତି । ନୂପୁର ମାଧୁର୍ଯ୍ୟ ନିକ୍ୱଣରେ ପ୍ରସ୍ତୁତ ବର୍ଣ୍ଣିତ) କରୁଅଛି । ସେ ବାଜନାବାଦ୍ୟ ଏମନ୍ତ ବୋଲନ୍ତି (କହୁଅଛନ୍ତି) । ହେ ସଖୀମାନେ ଏ ସୀତାଙ୍କଠାରେ ରସ ନ (ନ ରହ) "ରସୀଭୂତ ନ ହୁଅ" । ଏ ଭଙ୍ଗ ହେଲା । ବଳା ନାଁ ସୁମନ (ହେ ଉତ୍ତମ ମନ ମନକୁ ନ ବଳାଅ) । ବଳାଶବ୍ଦରେ "ନା ସୁମନ" ଏ ସୁବର୍ଣ୍ଣ ଦର୍ଶ ଦୁଅନ୍ତେ ଅଙ୍ଗ ଦଗ୍ଧାକ୍ଷର ହେଲା । ନୂପୁର ଶବ୍ଦର

---

୧— ଭ୍ରମେ ମନ୍ଦର୍ଗନ୍ଦଭନ୍ତ୍ରୌ କୁହ୍ନାକ୍ଷ୍ୟେ ଶିଳ୍ପି ତନ୍ତ୍ରକେ ଲଢ ଧରଣୀଃ ।

ବାଳାର । ବପୁସଞ୍ଚାରଙ୍ଗ ପଣ୍ଡିତ ।
ବ୍ୟଞ୍ଜତରଙ୍ଗାଭଙ୍ଗ ଦଣ୍ଡାକ୍ଷର ଯେ ଚ୍ୟୁତଦଣ୍ଡାକ୍ଷରେ ମଣ୍ଡିତ । ୧୬ ।
ଭୂଝି ଏ ଶବଦ ରାଜନେ ସ୍ତବଦ୍ଧ ବାଗ୍ରସ୍ତୁଧମାନ ପତନ ।
ବଦାବଦ ଯାଇଥିଲେ ଲଜେ କେହ୍ବ ଏ ଶୋଭା ହୁଅନ୍ତା ଦର୍ଶନ ।
ବାଳା ଯେ । ବରଣମାଳା ଧରିଥିଲେ ।
ବ୍ରୀଡ଼ାସଂଯୁକ୍ତେ କଣ୍ଠକଣ୍ଠୀ ସୁକଣ୍ଠୀ ରାମଗଳାରେ ଲମ୍ବାଇଲେ । ୧୭ ।

ଆଦ୍ୟବର୍ଣ୍ଣ ଚ୍ୟୁତହୋଇ ସଦାଓ ହେଲା ପ୍ରାନ୍ତରେ 'ଶୋଭା' ପ୍ରଦତ୍ତହେଲା । ନିପୁରଶୋଭା ହେଲା । ନୂପୁର ଭହେଲା । ନିପୁରଂଶୋଭାନ୍ତି ଏ (ଜଟନ୍ତୁ ତା ଏ) । ହେଜ (ଏମନ୍ତ ଦବ୍ଦର ଜର) । ଏ ଚ୍ୟୁତ ଦଣ୍ଡାକ୍ଷର ହେଲା । ଜର୍ଜାବ ପଦାର୍ଥ ଯେମନ୍ତେ ଜହଲେ ଏମନ୍ତ ବୋଲିବ ଅଟା । ବାଳା (ସୀତାଙ୍କ) ବପୁ ସଞ୍ଚାରଙ୍ଗକୁ ଯେମାନେ ଣ୍ଡିତ ହୋଇଅଛନ୍ତି । ଜଟାଉଁ ନ କହିବେ । ବ୍ୟକ୍ତହୋଇ ରଙ୍ଗ, ଅଭଙ୍ଗ ଦଣ୍ଡାକ୍ଷର ଚ୍ୟୁତଦଣ୍ଡାକ୍ଷର ଏମନଙ୍କରେ ମଣ୍ଡିତ ହୋଇଅଛୁ ଏହା ବୁଝିବ । କେହ୍ବ ରସନା ଦେଇ ଆଦ୍ୟରେ ହୃ କର ଦର କରନ୍ତ, ତାହାହେଲେ ହୃ ରସନ: ହେଲା । ବନା ଶବର ଆଦ୍ୟରେ ପ୍ରଦତ୍ତ କରନ୍ତେ ପ୍ରବଳା ହେଲା । ହର୍ଷହୋଇ ପ୍ରବଳା ନା (ମନକୁ ନ ପ୍ରବ-ଳା ଅ) ଏମନ୍ତ ଅର୍ଥ । ଏ ଦଣ୍ଡାକ୍ଷର ହେଲା । ରସନା ଶବର ର ଚ୍ୟୁତକରି ବକାର ଦଅନ୍ତେ ବସନା ହେଲା, ବଳାଶବର ବ ଚ୍ୟୁତକରି ପକାର ଦଅନ୍ତେ ପ୍ରାନ୍ତରେ ଅକାର ଦଅନ୍ତେ ହେଲା । ନ ବସ । ଚଳୋଥ ଏମନ୍ତ ଛନ୍ଦ ।୧୬।

୧୭ଶ ପଦ—ଏ ଶବ୍ଦ ବୁଝି ରାଜନେ (ରାଜାମାନେ) ସ୍ତବ୍ଧ ହେଲେ । ତାହାଙ୍କ ହସ୍ତରୁ ବାଗସ୍ତୁଧ (ଖଡ୍ଗଆଦି ଶସ୍ତ୍ର) ଖସି ପଡ଼ିଲେ । ସେମାନେ ଏମନ୍ତ ବଦାବଦ (ବୁଦ୍ଧାବୁଦ୍ଧି) ପରସ୍ପର ହୋଇଲେ । ଲଜରେ ଆମ୍ଭେମାନେ ଯାଇ ଥିଲେ ଏ ସୀତାଙ୍କ ଶୋଭା କବୁପେ ଦର୍ଶନ ହୁଅନ୍ତା ? ବଦାବଦ କୁ ଲଜ୍ଜାରେ ସ୍ତବ୍ଧ ପୂର୍ବରେ ଏମନ୍ତଯାହା ବର୍ଣ୍ଣନ କରିଥିଲେ ତାହା ସତ୍ୟ କଲେ । ବରଣ ମାଳା ଧରିଥିଲା ଏମନ୍ତ ଯେ ବାଳା (ସୀତା) ବ୍ରୀଡ଼ା ସଂଯୁକ୍ତ (ଲଜ୍ଜା ସଂଯୁତ) ହୋଇ ୧ ଉତ୍କଣ୍ଠାରେ ସେ ସୁକଣ୍ଠୀ ସୀତାଦେବୀ ରାମଚନ୍ଦ୍ରଙ୍କ ଗଳାରେ ବରଣ ମାଳା ଦେଇ ଦେଲେ । ୧୭ ।

୧—ଉତ୍କଣ୍ଠୋଲଳିକେ ସମେ ଇତ୍ୟମରଃ ।

ବର୍ଯ୍ୟା ପ୍ରଶ୍ରାନ୍ତି କୋଣିଆଇ ଅନାଇ ସେ ଭଙ୍ଗୀ ଧୈର୍ଯ୍ୟ ଭଙ୍ଗି ହେଲ ।
ବାହୁତେଜ ହୁଡେ ସେ ପଥରେ ମନ୍ଦିରର ମନ ପାଲଟ କର ନେଲ ।
ବାହୁର । ବିମଳ ଚମ୍ପାଦାମ ଭବ ।
ବାହୁଡାଇ ଧନ ଈଶ ହେବା ଦନ ଦେବାକୁ ବଶରେ ରାଘବ ।୧୮।
ବର୍ତ୍ତୀ ହୋ ଛଗଲ ସୁବିଷ୍ଟାରତନ ନେତ୍ରରୋଗ ଗଲ ନବର୍ତ୍ତି ।
ବିସ୍ମାପନ ରଚ ଜାଳିକ ଯେମନ୍ତ ଦେଖାଇ ହରଇ ଚଡ଼ତ ।
ବାଳାର । ବିଲୋକନ ସେହି ପ୍ରକାର ।
ବିସର୍ଜନେ ସଞ୍ଜ ବଜନେ ଗମିଲେ ସ୍ଥିତ ରାମ ଆରାମପୁର ।୧୯।

---

୧୮ଶ ପଦ—ବର୍ଯ୍ୟା—ପଦ୍ମସ୍ବର । ଚମ୍ପଦାମ—ଚମ୍ପାମାଳା । ଈଶ ମହାଦେବ, ପତି ।

ଅର୍ଥ— ପଦ୍ମସ୍ବର ସୀତା ବରଣମାଳା ପ୍ରଦାନ କରିବା ସମୟରେ ରାମଚନ୍ଦ୍ରଙ୍କ ଉପରେ କଟାକ୍ଷପାତ କରି ତାହାଙ୍କର ଧୈର୍ଯ୍ୟ ଲୋପ କଲେ । ସୀତା ବିରଣମାଳା ପ୍ରଦାନ କରି ସେଠାରୁ ଫେରିଯିବାବେଳେ ଖୁବ ଧୀରେ ଯାଉଥିଲେହେଁ ସେ ରାମଙ୍କଠାରେ ଚିତ୍ତ ସମର୍ପଣ କରି କାମ ବଶରେ ବାହ୍ୟ ଜ୍ଞାନଶୂନ୍ୟ ହୋଇଥିବାରୁ ପଥ ଭୁଲି ଯାଉଥିଲେ, ତାହାଙ୍କୁ ଫେରିଯିବାର ଦେଖି ରାମଚନ୍ଦ୍ର ମନେ କଲେ, ଏ ଚମ୍ପାଦାମ ସଦୃଶ ସ୍ତ୍ରୀୟ ବାହୁ ଯୁଗଳକୁ ମୋ ଗଳାରେ ଅର୍ପଣ ନ କରି ଫେରିଗଲେ କାହିଁକି ? ଈଶ ଯେ ମହାଦେବ ସେ ଚମ୍ପାଫୁଲରେ ପୂଜ୍ୟ, ସୁତରାଂ ମୁଁ ଯେଉଁଦିନ ତାହାଙ୍କର 'ଈଶ' ପତି ହେବି, ସେ ସେହିଦିନ ମୋ ଗଳାରେ ସ୍ତ୍ରୀୟ ବାହୁ ଚମ୍ପକମାଳା ଅର୍ପଣ କରିବେ ।

୧୯ଶ ପଦ—ବର୍ତ୍ତୀ—ନେତ୍ରାଞ୍ଜନ ବା ନେତ୍ର ରୋଗର ଔଷଧ ବିଶେଷ । ବିସ୍ମାପନ—କୁହୁକ । ଆରାମପୁର—ଉପବନସ୍ଥିତ ଗୃହ ।

ଅର୍ଥ—ସୁବିଷ୍ଟାରତ୍ନ ସୀତାଙ୍କରି ଶୋଭାରୂପ ନେତ୍ରାଞ୍ଜନରେ ରାମଙ୍କର ଚକ୍ଷୁରୋଗ ଉପଶମିତ ହେଲା, ଅର୍ଥାତ୍ ସୀତାଙ୍କ ଦର୍ଶନ ନମିତ୍ତ ତାହାଙ୍କର ବ୍ୟାକୁଳତା ବା ଅସ୍ଥିରତା ଦୂରୀଭୂତ ହୋଇଗଲା । ମାତ୍ର ସୀତାଙ୍କର ଶୋଭା-ଦର୍ଶନ ଐନ୍ଦ୍ରଜାଲିକ କୁହୁକ ଦେଖାଇଲା ପରି ହେଲା । ଅନନ୍ତର ସଙ୍ଗଭଙ୍ଗ

ବିଭା ମଙ୍ଗଳ କାଳପର୍ ଜରବା ବିଶ୍ୱାମିତ୍ରେ କହେ ଜନକ ।
ବିରୋଧିଲେ ଶୁଣି ସେ ବାଣୀ ଲକ୍ଷ୍ମଣ କ ବିଭା ନ ଜାଣି ଜନକ ।
ବନ୍ଧୁଭୁ । ବହନ ସତାନନ୍ଦ ହେଲେ ।
ବଂଶପଦେ ଶେଷ ଶେଷଶାୟୀ ଚିନ୍ତି ଉପେନ୍ଦ୍ର ଭଞ୍ଜ କହିଲେ ।୨୦।

—୦—

## ଦ୍ୱାଦଶ ଛାନ୍ଦ ।

ରାଗ – ବଙ୍ଗଳା । ଆଷାଢ଼ଶୁକ୍ଳ ବାଣୀ

ବିଭବର ସାର ବିଳମ୍ବ ଶୁଣି । ବିଭବଶ ହେଉଁ ରମଣୀମଣି ।
ବିଭବଶରଶ ଘୋଟିଲ ଗ୍ରାସେ । ବିଭବ ସ୍ୱଭୁରୁ ନିଦ୍ରା ନ ଆସେ ।
ବିରହେ ଭୂଷେ ସେ । ସାର ହେ ! ସ୍ୱଚ୍ଛେ ସେ ତାଡ଼କା ହାସେ ।୧।

---

ହେବାରୁ ରାଜମାନେ ସ୍ୱ ସ୍ୱ ଦେଶକୁ ପ୍ରତ୍ୟାବୃତ୍ତ ହେଲେ । ରାମଚନ୍ଦ୍ର ଜନକଙ୍କର ଉପନେଷ୍ଟିତ ଗୃହରେ ଅବସ୍ଥାନ କଲେ ।

୨୦ଶ ପଦ:—ଅର୍ଥ— ତଦନନ୍ତର ଜନକ ଆନନ୍ଦରେ ବିଶ୍ୱାମିତ୍ରଙ୍କୁ କହିଲେ, 'ବିବାହୋତ୍ସବ କାଳ କିମ୍ବା ପରିହନ କରାଇବା ।" ଏହା ଶୁଣି ଲକ୍ଷ୍ମଣ ନିଷେଧ କରି କହିଲେ, "ପିତାଙ୍କର ଅନୁପସ୍ଥିତିରେ କି ପୁଣି ବିବାହ କାର୍ଯ୍ୟ ହୁଏ ?" ଲକ୍ଷ୍ମଣଙ୍କର ଏହି କଥା ଶ୍ରବଣ କରି ଜନକ ଦଶରଥଙ୍କୁ ଏହି ସମ୍ବାଦ ଦେବା ନିମିତ୍ତ ସତାନନ୍ଦ ଋଷିଙ୍କୁ 'ବନ୍ଧୁରୁ' ଦୂତ କରି ତାଙ୍କ ନିକଟକୁ ପଠାଇଲେ । କବି ଉପେନ୍ଦ୍ର ଭଞ୍ଜ ଅନନ୍ତ ନାଗୋପରି ଶୟାନ ବିଷ୍ଣୁଙ୍କୁ ସ୍ମରଣ କରି ଏ ଛାନ୍ଦକୁ ବଂଶପଦରେ ରଚନା କଲେ ।

—୦—

ଦ୍ୱାଦଶ ଛାନ୍ଦ

୧ମ ପଦ – ବିଭାବରୀ—ରାତି । ବିଭାବରୀଚରୀ—ରାକ୍ଷସୀ ବା ରାକ୍ଷସୀ ।

ଅର୍ଥ –ରମଣୀମଣି ସୀତା ରାମଚନ୍ଦ୍ରଙ୍କୁ ବରଣ କରି ସାରିବା ପରେ ବିବାହ ବିଳମ୍ବରେ ହେବାର ଶୁଣି ପାରିଲେ, ସୁତରାଂ ତାଙ୍କର କାମବିକାର

ବାସରେ ନଟେ ସଜ ସବେଳ ଯେ । ବାସରେ ତା ପାଟେଭ୍ରମ ଜପୂଟଜ ।
ବାସରେ ଯୁଗ କରଇ ବଗ୍ଭର । ବାସରେ ଯୁଗ ନୋହୁଁ ପଞ୍ଚଶର ।
ବନାଶିଲେ ପୁନଃ । ବନା ରତ୍ତରେତ ଗଲା ଜୀବନ ।୨।
ବରେଚନ ହେଲା ସୁଧା ଆହାର । ବରେଚନକଣ କର୍ପୂର ଚୂର ।
ବରେଚନ ଉଦେ ହେଉଇବା ଶୁଣି । ବରେଚନ କର ନ ଗ୍ରହେ କହି ।
ବସୁଧୀଙ୍କ ସାର । ବସୁଧି ! ମେରୁ ହେଲା ଅସ୍ତପୂର ।୩।

---

ବୃଦ୍ଧି ହେଲା । ଗ୍ରୀଷ୍ମ ଉପସ୍ଥିତ ହୁଅନ୍ତେ ସେ ମନେ ଭଲେ, ଏ ଗ୍ରୀଷ୍ମ ରୂପା-ଷ୍ଟଷସୀ ମୋତେ ଗ୍ରାସ କରିବ କି ? ଏଥିପର ବିଶେଷ ଷ୍ଟବନା ହେଲୁ ତାଙ୍କୁ ନିଦ୍ରା ହେଲା ନାହିଁ । ସେ ବିରହ-ଜଳରେ ସ୍ନାନ କରୁ ଥିଲେ ନ ହୋଇ କହିଲେ ହେ ବୀର ରାମଚନ୍ଦ୍ର ! ଅପଣ ତାଡ଼କା ରାକ୍ଷସୀ ଭୟରୁ ମୁନିମାନଙ୍କୁ ରକ୍ଷା କରି-ଅଛନ୍ତି, ଅତଏବ ମୋତେ ଏ ଗ୍ରୀଷ୍ମ-ରାକ୍ଷସୀ ଭୟରୁ ରକ୍ଷା କରନ୍ତୁ ।

୨ୟ ପଦ—ବାସରେ—ସୁଗନ୍ଧରେ । ବାସରେ ବସ୍ତ୍ରରେ । ବାସରେ—ଦିବସରୁ । ବାସରେ—କେଳି ଗୃହରେ । ପଞ୍ଚଶର—କନ୍ଦର୍ପ ।

ଅର୍ଥ—ଯେଉଁ ସୀତାଙ୍କର ଅଙ୍ଗସୌରଭ ସଦ୍ୟ ବିକଶିତ ପଦ୍ମକୁ ନିନ୍ଦା କରୁଅଛି, ତାହାଙ୍କର ପରିଧେୟ ବସ୍ତ୍ରରେ ନାଶ ଭ୍ରମ ହେଲା, ସେ ଗୋଟିଏ ଦିବସକୁ ଗୋଟିଏ ଯୁଗ ସମ ନ ବିଗ୍ଭର କଲେ ଏବଂ ଭାବିଲେ, କେଳିଗୃହରେ ରାମଚନ୍ଦ୍ରଙ୍କ ସହିତ ମିଳନ ନ ହେବାରୁ କନ୍ଦର୍ପ ମୋତେ ବିନାଶ କଲେ ବିନା ଗତିରେ ମୋ ଜୀବନ ଗଲା । କାରଣ ପତିହିଁ ରମଣୀମାନଙ୍କର ଏକମାତ୍ର ଗତି ।

୩ୟ ପଦ—ବରେଚନ—ଅରୁଚ । ବରେଚନକଣା ଅଗ୍ନିକଣା । ବରେଚନ—ଚନ୍ଦ୍ର । ବରେଚନ—ସୂର୍ଯ୍ୟକିରଣ ।

ଅର୍ଥ—ବିରହର ଆଧିକ୍ୟ ହେତୁ ସୀତାଙ୍କୁ ସୁଧ ଭଳି ଭୋଜନପଦାର୍ଥ ଅରୁଚ ହେଲା, କର୍ପୂର ଚୂର୍ଣ୍ଣ ଅଗ୍ନିକଣା ପରି ବୋଧ ହେଲା । ଚନ୍ଦ୍ରୋଦୟ ହେବା ଦେଖି ସୀତା ବସୁଧୀଙ୍କ ସାର ଜଣେ ବିଶ୍ୱସ୍ତା ସଖୀକୁ କହିଲେ, ଗୋ ବସୁଧି ! ଆମ୍ଭ ଗୃହ ମେରୁପର୍ବତ ହେଲା କି ?” କାରଣ ମେରୁପର୍ବତରୁ ସୂର୍ଯ୍ୟକିରଣ କେବେ ହେଲେ ଗ୍ରହେ ନାହିଁ ଅର୍ଥାତ୍ ବିରହ ବଶରୁ ସେ ଚନ୍ଦ୍ରୋଦୟକୁ ସୂର୍ଯ୍ୟୋଦୟ ପରି ମଣିଲେ ।

ବସନ୍ତ ଋତୁ ବଶୁଁ ମତ୍ତଭରେ । ବସନ୍ତ ରସାଳ ତରୁ ଉପରେ ।
ବସନ୍ତ ଦୂତ କୁତ ଉଚ୍ଚସ୍ୱରେ । ବସନ୍ତ ବସନା ଅଗସ୍ତ୍ୟ ସ୍ମରେ ।
ବ୍ୟାଧିଘାତକର । ବ୍ୟାଧିଘାତି ଗୁଚ୍ଛୁଁ ଉଡ଼ୁ ଭ୍ରମର ।୪।
ବାରେ ବାରେ ଶିବ ଶିବ ସେ ଘୋଷେ ।
ବାରେ ବାରେ ବ୍ରତମାନ ମାନସେ ।
ବାରେ ବାରେ ନାହିଁ ମୂର୍ଚ୍ଛାରେ ସଖୀ ।
ବାରେ ବାରେ ଭସ୍ମ ସଂଶୟ ଲଖି ।
ବନରୁହନାଡ଼ । ବନଜାକ୍ଷୀ ଦେଖି ଚିନ୍ତୁ ଗରୁଡ଼ ।୫।

---

୪ର୍ଥ ପଦ—ରସାଳତରୁ—ଆମ୍ରଗଛ । ବସନ୍ତଦୂତ—କୋକିଳ । ବସନ୍ତ ବସନା—ପୀତବସନା । ବ୍ୟାଧିଘାତ—ସୁନାରୀଗଛ ।

ଅର୍ଥ—ବସନ୍ତ ସମସ୍ତ ହେତୁ କୋକିଳ ଆମ୍ରବୃକ୍ଷ ଉପରେ ବସି ଉଚ୍ଚସ୍ୱରେ ରବ କରିବାର ଶୁଣି ସୀତା ଅଗସ୍ତି ଋଷିଙ୍କି ସ୍ମରଣ କଲେ ଅର୍ଥାତ ବଜ୍ରପାତ ହେବା ସମୟରେ ଲୋକେ ଅଗସ୍ତିଙ୍କି ସ୍ମରଣ କରିଥା'ନ୍ତି । ଅତଏବ କୋକିଳ ରବ ତାହାଙ୍କୁ ବଜ୍ରଘୋଷ ପରି ପ୍ରତୀତ ହେବାରୁ ସେ ଏପରି କଲେ । ପୁନଶ୍ଚ ସୁନାରୀ ଫୁଲରେ ଭ୍ରମରମାନଙ୍କୁ ଉଡ଼ିବାର ଦେଖି ସେ (ସୀତା) ବିଶେଷ କଷ୍ଟ ଅନୁଭବ କଲେ ଅର୍ଥାତ୍ ତଦ୍ୱାରା ତାଙ୍କର ବିରହଯନ୍ତ୍ରଣା ବୃଦ୍ଧି ପାଇଥିଲା ।

୫ମ ପଦ—ବାରେ ବାରେ—ପୁନଃ ପୁନଃ । ବା'ରେ ବାରେ—ରକ୍ଷ ସେମାନେ ବାରମାନଙ୍କରେ । ବାରେ ବାରେ—ନିବାରଣ ବା ନିଷେଧ କରିବାରେ । ବନରୁହ ନାଡ଼-ପଦ୍ମନାଡ଼ । ବନଜାକ୍ଷି—ପଦ୍ମାକ୍ଷି ।

ଅର୍ଥ—ଏହି ବିରହତାପ ନିବାରଣ ନିମିତ୍ତ ସୀତାଦେବୀ ପୁନଃ ପୁନଃ ଶିବନାମ ଉଚ୍ଚାରଣ କଲେ । ପୁଣି ରବ୍ୟାଦି ବାସରମାନଙ୍କରେ ବ୍ୟାଧିପତି ଦେବତାମାନଙ୍କର ବ୍ରତ ଉପବାସ ମନାସିଲେ । ସେ ଥରକୁଥର ମୂର୍ଚ୍ଛା ହେବାର ଦେଖି ସଖୀମାନେ ନିଷେଧ କରି କହିଲେ, ତୁମ୍ଭେ ବିରହ-ଯନ୍ତ୍ରଣାରେ ଏପରି ଅସ୍ଥିର ହେଲେ ଲୋକଜନମାନେ ଜାଣିବେ, ସୁତରାଂ ଲଜ୍ଜା ହେବ । କେଉଁ ବିଷୟରେ ସଂଶୟ ହୁଏ ଧୀରମାନେ ତାହାକୁ ଗୋପନ କରି ରଖନ୍ତି,

ବସନ୍ତ ସଖୀଜନଙ୍କ କଥିତ । ବିଶ୍ୱସ୍ତ ଜନେ ବୋଲନ୍ତି ମରୁତ ।
ବହଇ ପୁଣ ବ୍ୟାଧି ନାମ ସେହ୍ନ । ବହଇ ମନ୍ଦଗୁଣେ ହୋଇ ସ୍ନେହ୍ନ
ବଧିରେ ଅସୁର । ବଧୀରେ ସୁର୍ ଜଲେ ପୁରନ୍ଦର ।୬।
ବିଷଦକର ଗୋଷ୍ଠୀ ଏ ଆତୁର । ବିଷଦମାର୍ଗରେ ଗମନ କରି ।
ବିଦ୍ୟାଗୁରୁ ପତ୍ନୀ ହରଣେ ଅଗ । ବିଦ୍ୟାଂଶୁ କଳଙ୍କ ଧରଇ ଅଙ୍ଗ ।
ବିଷଇ ଶୋଦର । ବିସୋର ନୁହେ ବାରୁଣୀ ଆଦର ।୭।

---

ମାଧ ତୁମ୍ଭେ ଅଧୀଷ୍ଟ ହୋଇ ତାହା ପ୍ରକାଶ କରୁଅଛ । ହେ ବନଜାକ୍ଷି ! ତୁମ୍ଭେ ଭ୍ରମବଶତଃ ପଦ୍ମନ ଡ଼କୁ ସ୍ୱପକ୍ଷୀନ କରି ତରୁକ୍ଷୁକୁ ଚିନ୍ତା କରୁଅଛ, ଏହା ଅନୁଚିତ ।

୬ଷ୍ଠ ପଦ—ମରୁତ—ପବନ,ନଷ୍ଟ ହେଉ । ବଧୀରେ—ମୂର୍ଖ ତାହେରୁ । ସୁର—ଦେବତ । ପୁରନ୍ଦର—ଇନ୍ଦ୍ର ।

ଅର୍ଥ—ସୀତାଙ୍କର ଏପରି ବିରହାବସ୍ଥାରେ ମୃଦୁ ସମୀରଣ ଅତିଶୟ ପୀଡ଼ାଦାୟକ ହେବାରୁ ସେ ଜଣେ ବିଶ୍ୱାସୀ ସଖୀକୁ କହିଲେ, ବିଶ୍ୱାସୀ ଲୋକମାନେ ଯାହାକୁ ମରୁତ ବୋଲି କହନ୍ତି, 'ମରୁତ' ଅର୍ଥାତ ବିନଷ୍ଟ ହେଉ । ପୁଣି ସେ 'ବାତ' ଏବ ବ୍ୟାଧି ନାମକୁ ଧାରଣ କରେ, ଅତଏବ ପୀଡ଼ାଦାୟକ । ମନ୍ଦପ୍ରବାହ ଛଳରେ ସ୍ନେହରେ 'ମନ୍ଦ' ଗୁଣକୁ ରକ୍ଷିଅଛି । ସେ ସ୍ୱଭାବତଃ ଅସୁର, ତେବେ ଅସୁର ଭାବ ପ୍ରକାଶ ନ କରି କିପରି ସଦାଚରଣ କରିବ ? ଇନ୍ଦ୍ର ତାହାକୁ ଅଣିମଣିଶ ଖଣ୍ଡ କରି ହାଣିଥିଲେ, ପୁନଶ୍ଚ ମୂର୍ଖତାବଶତଃ ଅମୃତ ଭକ୍ଷଣ କରାଇ ଦେବତା କଲେ, ସୁତରାଂ ସେ ଦେବତାରେ ଗଣୀ ଓ ମହାବଳିଷ୍ଠ ହେଲା ।

୭ମ ପଦ—ବିଷଦକର—ଚନ୍ଦ୍ର । ବିଷଦମାର୍ଗ—ଆକାଶମାର୍ଗ, ଅସନ୍ମାର୍ଗ । ବାରୁଣୀ - ପଶ୍ଚିମଦିଗ, ମଦ୍ୟବିଶେଷ ।

ଅର୍ଥ—ପୁଣି କହିଲେ, ଚନ୍ଦ୍ର ଆକାଶମାର୍ଗରେ ଭ୍ରମଣ କରୁଅଛି, ଅର୍ଥାତ୍ ସେ ଅସତ୍ ମାର୍ଗରେ ମଧ୍ୟ ଗମନ କରୁଅଛି । କାରଣ ସେ ସ୍ୱୀୟ ଗୁରୁପତ୍ନୀଙ୍କୁ ହରଣ କରିଥିଲେ । ସୁତରାଂ ନିଜ ଅଙ୍ଗରେ କଳଙ୍କ ଧାରଣ କରିଅଛନ୍ତି । ସେ ମୋତେ ସ୍ୱହସ୍ତରେ ବିଷଦାନ କରୁଅଛନ୍ତି ଅର୍ଥାତ ମୋତେ ଏପରି କଷ୍ଟ

ବିଗ୍ରହ ଯାକହିଁ ଯାଇଛି ପୋଡ଼ି । ବିଗ୍ରହ ମୋରେ ସେ ପ୍ରେତ ରଚିଲେ ତି
ବାମଲୋଚନା ବୋଲି ଛାଡ଼ି ନାହିଁ ।
ବାମମାର୍ଗରେ ଯୋଗଭଙ୍ଗ ଧାଇଁ ।
ବିହଗ ଯୋଡ଼ାଏ । ବିହଙ୍କ ପୁଣି ଏକାକୀ ପୀଡ଼ାଏ ।୮।
ବକୁଳ-ଆସବ ପାନେ କେ ରତେ । ବ୍ୟାକୁଳଦାରା ଜନିତ କରିତେ ।
ବିମୁଖ କରେ ମଧୁରେ ଧିଆନ । ବ୍ୟଞ୍ଜକେ ପାନ ସେ ନ କରେ ଆନ ।
ବଧ ମୋ ଇଚ୍ଛନ୍ତି । ବୃଜିନୀ ପାଞ୍ଚ ପାଞ୍ଚ କରନ୍ତି ।୯।

---

ଦେଉଥାନ୍ତି । ଅଛି ସେ ଚନ୍ଦ୍ର ବିଷର ଭାଇ ( ଉଭୟେ ସମୁଦ୍ରରୁ ଜାତ ) ଅତଏବ ସେ ବିଷତୁଲ୍ୟ କାହିଁ ଛାଡ଼ିବେ ? ବିଶେଷତଃ ପଦ୍ମିନୀ ଦଳରୂପ ମନ୍ଦିରକୁ ସେ କ୍ଷଣକାଳ ବର୍ଜିତ ହେବ ନାହାନ୍ତି ଅର୍ଥାତ୍ ସେ ମଦୁଆ ଅଟନ୍ତି ।

୮ମ ପଦ—ବିଗ୍ରହଯାକ—ଶରୀରଯାକ । ବିଗ୍ରହ—କଳହ । ପ୍ରେତ—କନ୍ଦର୍ପ । ବାମଲୋଚନା—ସ୍ତ୍ରୀ । ବାମମାର୍ଗରେ—ଅନ୍ୟ ମାର୍ଗରେ । ବିହଗ—ପକ୍ଷୀ

ଅର୍ଥ—ଯେ ପ୍ରତିକୂଳାଚରଣଦ୍ୱାରା ଶିବଙ୍କ ଯୋଗଭଙ୍ଗ କରିବାକୁ ଯାଇ ତାହାଙ୍କର ନେତ୍ରାନଳରେ ଦଗ୍ଧୀଭୂତ ହେଲା, ସେହି କନ୍ଦର୍ପ ମୋତେ ଅବଳା ବୋଲି ଛାଡ଼ି ନଦେଇ ମୋହ ସହିତ ଶରୀରରେ ଯନ୍ତ୍ରଣା ଦେଉଅଛି । ତାହା ବ୍ୟତୀତ ପକ୍ଷୀ ଦୁଇଟା (ଭ୍ରମର ଓ କୋକିଳ) ମୋ ସଦୃଶ ଏକାକିନୀ ଅବଳାକୁ ପୀଡ଼ା ଦେଉଅଛନ୍ତି ।

୯ମ ପଦ—ବକୁଳ ଆସବ-ବକୁଳ ମକରନ୍ଦ ଅର୍ଥାତ ମଦ୍ୟ । କରଟ—କାକ, ମଧୁ—ପୁଷ୍ପରସରୂପ ମଦ୍ୟ । ବୃଜିନୀ—ପାପୀ ।

ଅର୍ଥ—ସେହି ପକ୍ଷୀଦ୍ୱୟ ମଧ୍ୟରୁ କାକପାଳିତ କୋକିଳ ଆମ୍ରଦଳରେ ରସ ପାନକରି ଉନ୍ମାଦଗ୍ରସ୍ତ ହୋଇ ମୋତେ ସର୍ବଦା ବ୍ୟାକୁଳ କରୁଅଛି । ଭ୍ରମର ପୁଷ୍ପରସ ବ୍ୟତୀତ ଅନ୍ୟ କୌଣସି ପଦାର୍ଥ ଭକ୍ଷଣ ନ କରି ଅର୍ଥାତ ମଦୁଆ ହୋଇ ମୋତେ ଅତ୍ୟନ୍ତ କଷ୍ଟ ଦେଉଅଛି । ଏପରି ପବନ, ଚନ୍ଦ୍ର, କାମ, କୋକିଳ ଓ ଭ୍ରମର ଏହି ପାଞ୍ଚ ପାପୀ ମୋତେ ବିନାଶ କରିବା ନିମିତ୍ତ ବ୍ୟଗ୍ର କରୁଅଛନ୍ତି ।

ବୋଧଇ ଆଳୀ ଯେ ଏଣୁ ନିମିତ୍ତ । ବପାଳ କର୍ମ ପାକ ହେଲା ମିତ । ବଳି କର୍ମେ ଅଛୁ ଇନ୍ଦ୍ର ପଦବୀ ନୋହିବ ବଜ୍ର ପ୍ରହାରେ ନ ଦ୍ରବ ।
ବାମନ ରକ୍ଷଣ । ବାମନ ନୋହି ବଶୁର ରକ୍ଷଣ ।୧୦।
ବୋଧହେଲା ଚିତ୍ତ ସାତ୍ତ୍ୱିକେ ତାର ।
ବିଟଳକ ହେଲା କେତେ ହାସ-ତାର ।
ବିଗତ ପ୍ରଭା ଦ ପ୍ରଭାତ ତାର । ବେତନ ପାଣି କେତେ ଯଥା ତାର ।
ବେଦନାରୁ ତାର । ବୋଲି ବଚନେ ସ୍ତୁତି ସେ ବିଧାତାର ।୧୧।
ବାଉବର୍ଣ୍ଣ୍ୟ ଦଶା ଅବକାଶର । ବର୍ଣ୍ଣି ବଢିଗଲା କେତ୍ତେ ଧାତ୍ର ।
ବଇଦେଲା କଣ୍ଠ କର କେଶର । ବନଯୂପ ଦେ ଦେଖି ସାରସର ।
ବନ ନିବାସର । ବଞ୍ଚେ ବାହୁଡ଼ାଇ ନେବାନିବାସର ।୧୨।

---

୧୦ମ ପଦ—ବିପାକକର୍ମ—ଦୁର୍ଦ୍ଦଶା । ପାକ—ଶେଷ ।

ଅର୍ଥ—ଏହିରୂପେ ସୀତାଙ୍କର ଖେଦୋକ୍ତି ଓ ମନୋବ୍ୟଥା ଶୁଣି ସଖୀମାନେ ତାହାଙ୍କୁ ବୋଧ କରି କହିଲେ, ହେ ସଖି ! ତୁମ୍ଭର ଦୁର୍ଦ୍ଦଶା ଶେଷ ହେଇ ଆସିଲାଣି । ବଳିରାଜା ଐଶ୍ୱର୍ଯ୍ୟରେ ଇନ୍ଦ୍ର ପଦବୀ ପ୍ରାପ୍ତି ଯୋଗ୍ୟ ଥିବାରୁ ହେ ତାହାଙ୍କର ବଜ୍ରକୁ ଭୟ କରୁ ନ ଥିଲେ । ତୁମ୍ଭେ ସେହିପରି ପବନାତ୍ମଜଙ୍କୁ ଭୟ କର ନାହିଁ । ବଳିଙ୍କୁ ଯେପରି ବାମନ ରକ୍ଷା କରିଥିଲେ, ସେହିପରି ତୁମ୍ଭକୁ ରାମରୂପୀ ବାମନ ରକ୍ଷା କରିବେ । ଅର୍ଥାତ ତୁମ୍ଭେ ଏ ବିପଦମାନଙ୍କୁ ଧୈର୍ଯ୍ୟର ସହିତ ସହ୍ୟ କରି ରହିଥିଲେ, ରାମଚନ୍ଦ୍ର ତୁମ୍ଭଙ୍କୁ ଶଶୁର ଘେରରୂପ ଇନ୍ଦ୍ର ସମ୍ପତ୍ତି ଦାନ କରିବେ । ଅତଏବ ତୁମ୍ଭେ ଅସ୍ଥିର ନ ହୋଇ ଶ୍ରୀସ୍ୱ ବଚନଙ୍କବଳରେ ଧୈର୍ଯ୍ୟ ଅବଲମ୍ବନ କର ।

୧୧ଶ ପଦ—ଅର୍ଥ—ସଖୀମାନେ ଏପରି କହିବାରୁ ସୀତାଙ୍କର ଚିତ୍ତବୋଧ ହେଲା । ତହୁଁ ସେ ସାତ୍ତ୍ୱିକ ବିକାର ପ୍ରକାଶ ପୂର୍ବକ ହାସ ପ୍ରକାଶ କଲେ । ତାହାଙ୍କର ସ୍ନେହ ହାସ ଦେଖି ପ୍ରଭାତ ତାରାଗଣ ହୀନପ୍ରଭ ହୋଇ ଆକାଶରୁ ସ୍ଖଳିତ ହେଲାପରି ବୋଧହେଲା । ତତ୍ପରେ ସେ ବିରହଯନ୍ତ୍ରଣାରୁ ନିସ୍ତାର ଲାଭ କରିବା ନିମିତ୍ତ ହାତ ଯୋଡ଼ି ଈଶ୍ୱରଙ୍କୁ ଅତି ବିନୟରେ ଉଚ୍ଚସ୍ୱରରେ ସ୍ତୁତିକଲେ ।

୧୨ଶ ପଦ—ବାହୁଡ଼େଇ—ବ୍ୟସ୍ତକଲା । ସ ରସ—ପଦ୍ମ । ନିବାସର—ସଦ୍ମର ।

ବକ୍ଷୋଜରେ ନବ ପାଣ୍ଡୁ ବିଳାସ । ବିଫଳ କି ଶିବ ସେବା ଭୂଳାଶ ।
ବଢ଼ାଇ ଆଣିଲୁ ଗିରି କୈଳାସ । କେଉଁ ବେଳୁଁ ଜାତ କରି ଉଲ୍ଲାସ ।
ବିଟମ୍ବି ଅଭିଳାଷ । ବହିବେ ରଙ୍ଗ ଲକ୍ଷ କୁଚକଳସ ।୧୩ ।
ବଶୀଭୂତ ରାମ ପ୍ରତି ଆଦରେ ।ବସି ଭୂତପତି ରିପୁର ଦରେ ।
ବାରବାଣ ହେବ ସୁନ୍ଦରୀ ଶର । ବାରବାଣକୁ ପଞ୍ଚ ବିଶିଖର ।
ବି-ଶାଖା ସ୍ୱଭାବେ । ବିଶାଖା-ପତି ମୁଖଛବି ଭାବେ ।୧୪।

---

ଅଥ - ବିରହାବସ୍ଥାରେ ସୀତାଙ୍କର ଦେହକାନ୍ତି ଧବଳ ବର୍ଣ୍ଣ ହୋଇଗଲା । ଏଥିରୁ ହେବାର ଦେଖି କେ ଧହେଲା, ପଦ୍ମ କାନ୍ତିରେ ତ ତାଙ୍କଠାରେ ପରାଜିତ ହୋଇ ପାଦତଳେ ଶରଣାପନ୍ନ ହେବାରୁ ସେ ନଗର କାନ୍ତିରୁ କେତେକ ଅଂଶ ବ୍ୟମୃନର ପଦ୍ମକୁ ଦେଲେ କି ? ପୁନଶ୍ଚପଦ୍ମକୁ ଜଳ ମଧ୍ୟରେ ବାସ କରିବାର ଦେଖି ମନେହେଲା ସେ ତାହାଙ୍କର କାନ୍ତିକୁ ଛଡ଼ାଇ ନେବେ ବୋଲି ଭୟରେ ଗୋ ପମାସ୍ତ ସ୍ଥାନ ଦେଖି ହେଠରେ ବାସ କଲେ କି ?

୧୩ଶ ପଦ ବକ୍ଷୋଜ - ସ୍ତନ । ଭୂଳାଶ – ଭୁଳନା କନ୍ଦାର ଇଚ୍ଛା । କୁଚକଳସ—ଏଣ୍ଡି ଅ ।

ଅଥେ—ସୀତାଙ୍କର ସ୍ତନମୁଗଳ ପାଣ୍ଡୁରବର୍ଣ୍ଣ ଧାରଣ କରିବାରୁ ବର୍ଣ୍ଣ ସମତା ଦେଖି କୈଳାସ ପର୍ବତ ମନରେ ଗର୍ବ କରି ଓ ବୋଲକୁବୋଲ ଆନନ୍ଦିତ ହୋଇ ପାଇଲା, "ମୁଁ ଯେ ଏହାଙ୍କର ସ୍ତନ ସହିତ ତୁଳନୀୟ ହେବ ବୋଲି ମନ୍ତ୍ର ଦେବଙ୍କୁ ସେବା କରିଥିଲି, ତାହ କଣ ବିଫଳ ହୋଇନ୍ତା ?" କିନ୍ତୁ ଏଣ୍ଡି ଅ ପାଚିଲା ବମ୍ବୁଫଳ ବର୍ଣ୍ଣ ପରି ବର୍ଣ୍ଣ ଧାରଣ କରିବାରୁ ଇଚ୍ଛାକଲା ପରି, ସେହି କୈଳାସ ସୀତାଙ୍କ ସ୍ତନ ସହିତ ତୁଲନୀୟ ହୋଇ ପାରିଲା ନାହିଁ ।

୧୪ଶ ପଦ—ଭୂତପତିରିପୁ—କନ୍ଦର୍ପ । ବାରବାଣ—ସାଞ୍ଜୁ । ବାରବାଣକୁ ବାଣସମୂହକୁ । ପଞ୍ଚବିଶିଖ—କନ୍ଦର୍ପ । ବି-ଶାଖା—ପ୍ରିୟାହୀନ । ବିଶାଖାପତି-ଚନ୍ଦ୍ର ।

ଅଥ—ରାମଚନ୍ଦ୍ର ମଧ୍ୟ ସୀତାଙ୍କଠାରେ ଅତ୍ୟଧିକ ଆଦର ଓ ସ୍ନେହ ପ୍ରକାଶ କରି ବିଚ୍ଛେଦ ହେତୁ କାମଜ୍ୱରରେ ପୀଡ଼ିତ ହୋଇ ନିର୍ଜନ ସ୍ଥାନରେ ଉପବେଶନ ପୂର୍ବକ ସୀତାଙ୍କର ମୁଖଚନ୍ଦ୍ରକୁ ଭାବି କହିଲେ, 'ସୁନ୍ଦରୀ ସୀତା କନ୍ଦର୍ପର ଶରମାନଙ୍କୁ ବାରଣ କରିବା ବିଷୟରେ ସାଞ୍ଜୁ ପରି ଅଟେ ।"

ବାତୁଲତାରେ ସମ ନୋହୁ ଧନ ।
ବ ତୁଲତାରେ ତାଙ୍କୁ କେଉଁ ଧନ ।
ବାନ୍ଧି ବରଚିବ ନ କର ମଠ । ବ ନ୍ଧବ ! ବୋଲି ଧରିବ ନର୍ମଠ ।
ବନ୍ଧୁ ମୋ ବସୁଧା । ବନ୍ଧୁଙ୍କ ଅଧରୁ ପିଇବ ସୁଧା ।୧୫।-
ବଲାହକକେଶୀ ନେତ୍ର ଚଞ୍ଚଳା । ବଳାହକସ୍ତନୀ ସ୍ନେହପ୍ରବଳା ।
ବଳାଙ୍କ ରତିରେ ମତ୍ତ ଅବଳା । ବଳାର ସୁଖରୁ ହେବ କାବଳା।୧୬
ବଳାଇବ ବଳା । ବଳାଙ୍କ ରେ ମାର ହେବ ଦୁର୍ବଳା ।୧୬।
ବାତ୍ସଲ୍ୟ ସମ ପ୍ରାପତେ ହରଷ । ବସ୍ତୁ ଅନ୍ତର ଅଶନ ବିଷ ।
ବାଶ-ପ୍ରଭୁ ପ୍ରେମ-ବାଣିଜ୍ୟ ବଶ । ବଶଦବନ୍ଧୁ ବାନ୍ଧୁ ଏ କଲ୍ମଷ ।
ବଷଧର ବଷ । ବଷ୍ଟମଚାପ ବଶ ଏ ଭବଷ୍ୟ । ୧୭ ।

---

୧୫ଶ ପଦ—ନର୍ମଠ—ସ୍ତନ ଗ ବ' ଓଷ୍ଠ । ବନ୍ଧୁକ—ବଧୁଳୀ ଫୁଲ ।
ଅର୍ଥ—ପୁନଶ୍ଚ ରମଚନ୍ଦ୍ର ଭାବିଲେ, "ବଶେଷରେ ବଶନ୍ତ ପଶ ନ ହୋଇ କେଉଁଧନ ତାଙ୍କୁ ବଳମ୍ଭ ନ କର ଭୁଳକ ହାଲେ ବରନ ବର ବୋଲି କହିବ କମ୍ଭା ନବନ୍ଧ ଆଲିଙ୍ଗନ କରିବ ? କେଉଁଧନ ରେ ବାନ୍ଧବ ! ସମ୍ବୋଧନ କରି ତାହାଙ୍କର ସ୍ତନାଗ୍ର ବ ଓଷ୍ଠ ଧ ରଣ କରିବ ? କେଉଁଧନ ମେ ବ୍ରର ଦେହି ନର୍ମକହୁଦସ୍ଥ। ବନ୍ଧୁର ବଧୁଳୀ ଅଧରରୁ ଅମୃତ ପାନ କରିବ ?
୧୬ଶ ପଦ—ବଳାହକକେଶୀ ଘନକେଶୀ । ଚଞ୍ଚଳା-ବବିଧ ଭଙ୍ଗୀ—ବିଚକ୍ଷିତା । ବଳାହକସ୍ତନୀ-ପର୍ବତସ୍ତନୀ । ସ୍ନେହପ୍ରବଳା—ସ୍ନେହମୟୀ ବଳ ଶ—ଇନ୍ଦ୍ର ।
ଅର୍ଥ—ଘନକେଶୀ, ବିଚକ୍ଷଣାକ୍ଷୀ, ପର୍ବତସ୍ତନୀ, ସ୍ନେହପ୍ରବଣା ସୀତା ରତିରସରେ ଆସକ୍ତ ହୋଇଥିଲେ ଇନ୍ଦ୍ର ସୁଖକୁ ଗ୍ରାସ କରିବ, ଅର୍ଥାତ ଇନ୍ଦ୍ର ସୁଖଠାରୁ ବଳ ପଡ଼ିବ । ଅର୍ଥାତ ସେ ଯେତେବେଳେ ମୋତେ ଇନ୍ଦ୍ରସୁଖଠାରୁ ଅଧିକତର ସୁଖ ପ୍ରଦାନ କରିବ, ତେତେବେଳେ ସେ ମଧ୍ୟ ସେହିପରି ସୁଖ ଅନୁଭବ କରିବ । ସେହି ସମସ୍ତରେ ତାହାଙ୍କର ବଳାହର କନ୍ଦର୍ପ ମୋ ମାନଙ୍କଠାରୁ ଦୁର୍ବଳ ବୋଲି ତାହାକୁ ସ୍ୱୀକାର କରାଇବ ଅଥ ତ୍ର ସ୍ତ୍ରୀତାଙ୍କର ତତ୍କାଳୀନ କଳାଧିକ୍ୟ ଶୁଣି କନ୍ଦର୍ପ ସ୍ୱୟଂ ବଳହୀନ ହେବ ।
୧୭ଶ ପଦ—ବାଶ—ଗରୁଡ଼ । ବଶଦବନ୍ଧୁ—ଚନ୍ଦ୍ର । କଲ୍ମଷ—ପାପ ।

ବସି ପାବ୍ବତ ହୁଁ କୃତ ସ୍ୱନେ । ବଶିଷ୍ଠ ଆଦ ଆସେ ସୁଖାସନେ ।
ସାଥିରେ ଶ୍ୟାମଳ କମଳ ବାସୀ । ସାଥିରେ ଦେଖିବା ଅଯୋଧ୍ୟାବାସୀ ।
ବତକ ଚିତ୍ତରେ । ବତରଣକୃତ ନେନ କାତରେ । ୧୮ ।
ବଭ୍ରାଜ ପଳଶହୀନ ପଳାଶ । ବଭ୍ରାନ୍ତ ହୁଏ ପତଗ ବଳାସ ।
ବଳାକାପନ୍ତ ଯାଉଁ ଭ୍ରକସାର । ବଳାନ୍ତ ଚିତ୍ର ପତାକା ପ୍ରସାର ।
ବଳଟେସ ସ୍ମନନ । ବଳଟେ୍ମ ତେଜ କଲେକ ଗମନ । ୧୯ ।

---

ଅର୍ଥ—ବୈଶ୍ୟଚଣ ବାଣିଜ୍ୟରେ ବସ୍ତର ଲସ୍ତ ରହିଲ ପର ଶ୍ରୀରାମଚନ୍ଦ୍ର ପ୍ରେମରେ ଏକାନ୍ତ ଅସକ୍ତ ହୋଇ କାମବ୍ୟାଧି ମହୌଷଧିରୂପିଣୀ ସୀତାଙ୍କୁ ଶୀଘ୍ର ପାଇବା ଆଶାରେ ବ୍ରତ ଆଚରଣ ପୂର୍ବକ ହବିଷ୍ୟ କଲେ । ଅନ୍ୟ ସମସ୍ତ ଭାବ ତାଙ୍କ ହୃଦୟରୁ ଅନ୍ତହିତ ହୋଇଗଲା । ସେତେଜନ ତାହାଙ୍କୁ ବଷରୂଳୀ ବୋଧ ହେଲା; ପକ୍ଷାନ୍ତରେ ସେ ଅନଶନ ବ୍ରତୀ ହେଲେ । ଚନ୍ଦ୍ର କାଞ୍ଚଣ ଦେହକୁ ଅସହ୍ୟ ବୋଧ ହେଲା । ପୁଣି ସେହି ଚନ୍ଦ୍ରଙ୍କ ଦେହରେ କଳଙ୍କ ଦେଖି ସେମୂର୍ତ୍ତ ସର୍ପବଷ ବୋଲି ମନେ କଲେ ଏବଂ କହିଲେ, "ଚନ୍ଦ୍ର ହୃଦୟରେ ବଷ ଧାରଣ କରିଥିବାରୁ ସେହି ତାପରେ ମୋତେ ପୋଡ଼ି ପକାଉଛି । କେବଳ ତାହାଙ୍କର (ସୀତା) ଯୋଗୁଁ ଏପରି ଜବଷ୍ୟ ବା ବପଘାତ ହେଉଅଛି ।"

୧୮ଶ ପଦ:—ସୁଖାସନେ—ଯାନରେ । ସାଥିରେ—ଅସ୍ଥିର ହୋଇ । ସାଥିରେ—ଏକାସଙ୍ଗେ ।

ଅର୍ଥ—ଶ୍ୟାମଳ, ପଦ୍ମତନ୍ଦ୍ର ବଶିଷ୍ଟ ଶରୀର ଶ୍ରୀରାମଚନ୍ଦ୍ର ଏହିପରି ଚିନ୍ତା କରୁଥିବା ସମୟରେ କପୋତମାନଙ୍କର ହୁଂକୃତ ଧ୍ୱନିକୁ ଶିବକ ବାହକମାନଙ୍କର ଶବ୍ଦ ବୋଲି ବସ୍ତର ବଶିଷ୍ଠ ପ୍ରମୁଖ ଗୁରୁଜନମାନେ ଆସିଲେ କି? ସୁତରାଂ ଅଯୋଧ୍ୟାବାସୀମାନଙ୍କୁ ଏକାସଙ୍ଗରେ ଦେଖିବା ନିମିତ୍ତ ଉଦ୍‌ବଗ୍ନ ମନରେ ସ୍ୱିର ହେଲେ ।

୧୯ଶ ପଦ:—ଅର୍ଥ—ପୁନଶ୍ଚ ପତ୍ରବହୀନ ପୁଷ୍ପିତ ପଳାଶ ବୃକ୍ଷକୁ ଦେଖି ପଦାତକମାନେ ବହାର କରୁଥିବାର ଶ୍ରୀରାମଚନ୍ଦ୍ରଙ୍କର ଭ୍ରମ ହେଲା । ବକପଂକ୍ତି ବାଉଁଶ ଗଛରୁ ଉଡିଯିବାର ଦେଖି ତାହାକୁ ସୈନ୍ୟମାନଙ୍କର

ବିରଳେ ଆଦ୍ୟ ଯମକେ ବାଦ୍ୟକ । ବିଭୂଷିତ ଧ୍ୱନ ପ୍ରାନ୍ତ ଯମକ ।
ବିଶ୍ରାମ ଯମକ ଆଦ୍ୟ ପ୍ରାନ୍ତରେ । ବିଶୁଦ୍ଧ ରୂପକ ବଂଶ ପଦରେ ।
ଶାରବର କବି । କାଳଦେଶ ବିମ୍ମୟ ବୁଧଙ୍କୁ ମୋହି । ୨୦ ।

---

## ତ୍ରୟୋଦଶ ଛାନ୍ଦ

ରାଗ—ଭୂପାଳ

ବସିଛନ୍ତି ଦଶରଥ ସଭାମଧ୍ୟେ ।
ବେତ୍ରହସ୍ତ ଦ୍ୱାସ୍ଥ କହେ ଅତିତ୍ରାସେ । ୧ ।
ବାରଣ ଦ୍ୱାରେ ହୋଇଛନ୍ତି ସ୍ଥିତ ।
ବହି ଶ୍ରୀରାମବାର୍ତ୍ତା ମିଥିଳା ଦୂତ । ୨ ।
ବେଗେ ରାଜା ଆଣିବୋଲୁଁ ନେଲା ମୁନ ।
ବଶିଷ୍ଠରେ ନମି ନୃପମାନ୍ୟ ଯେନ । ୩ ।

---

ଯତାକା ଦୋଳି ମନେ କଲେ । ଏ ସଂନ୍ତ ଦେଖି ଯେ କାଃସନ୍ଦେହରୂପେ ସ୍ଥିର କଲେ ଯେ, ଦଶରଥାଦି ସୁରୁଜନମାନେ ବିଲମ୍ବ ନ କରି ସସୈନ୍ୟରେ ଏଠାକୁ ଆସୁଅଛନ୍ତି ।

୨୦ଶ ପଦ; —ଅର୍ଥ— ଶାରବର ଛନ୍ଦେ ଭଞ୍ଜ ଏହି ପ୍ରକାରେ 'ବିରଳ' ଅର୍ଥୋକ୍ତ ଆଦ୍ୟଯମକ ଶୋଭିତ ଧ୍ୱନ୍ୟର୍ଥ ଓ ପ୍ରାନ୍ତଯମକ ଭୂଷିତ, ଆଦ୍ୟପ୍ରାନ୍ତ ଯମକ ଯୁକ୍ତ, ରୂପଭେଦ ଏହି ଛନ୍ଦକୁ ବଂଶପଦରେ ରଚନା କଲେ । ଏହା ଶ୍ରବଣ କଲେ ମୂର୍ଖଲୋକେ ବିସ୍ମୃତ ହେବେ ଏବଂ ପଣ୍ଡିତମାନେ ମୋହିତ ହେବେ ।

---

ତ୍ରୟୋଦଶ ଛାନ୍ଦ

୧ମ, ୨ୟ ୩ୟ ପଦ;—ଅର୍ଥ—ମହାରାଜ ଦଶରଥ ସଭାମଧ୍ୟରେ ଉପବେଶନ କରିଅଛନ୍ତି, ଏପରି ସମୟରେ ତାହାଙ୍କର ବେତ୍ରହସ୍ତ ଦ୍ୱାରପାଳ ସେଠାରେ ଉପସ୍ଥିତ ହୋଇ ଅତି ଆନନ୍ଦରେ କହିଲା "ମିଥିଳାଦୂତ

କାର୍ତ୍ତା କହନ୍ତ ସରୂପଙ୍କେ ସତାନନ୍ଦ ।
ବିଶ୍ୱାମିତ୍ର ଗୁରୁ ସଙ୍ଗେ ରାମଚନ୍ଦ୍ର । ୪ ।
ବନ-ବ୍ୟୋମେ ଉଦେକରି ପ୍ରଭାତରୁ ।
ବିଧ୍ୱଂସିଲେ ତାଡ଼କା ଘୋରାନ୍ଧକାର । ୫ ।
ବିଚେଷ୍ଟିତ ମାରୀଚ ବାୟସ କରି ।
କଟପଣ୍ଡ ସୁବାହୁକୁ ସେ ନିବାରି । ୬ ।
ବିକଶିତ ଯେ ଯଜ୍ଞ-କୁମୁଦ କଲେ ।
ବିଧୁଶିଳା ଅହଲ୍ୟାକୁ ଦବାଇଲେ । ୭ ।

---

ଶ୍ରୀରାମଚନ୍ଦ୍ରଙ୍କର ସମ୍ବାଦ ଘେନି ସିଂହଦ୍ୱାରେ ଅବସ୍ଥାନ କରୁଅଛୁ ।” ଏହା ଶୁଣି ଦଶରଥ ତାହାଙ୍କୁ ଭିତରକୁ ଆଣିବା ନିମିତ୍ତ ଆଦେଶ କରିବାରୁ ଦୂତ ସତାନନ୍ଦ ମୁନିଙ୍କୁ ଦ୍ୱାର ସମୀପକୁ ଘେନି ଆସିଲା । ରାଜାଙ୍କର ସମୀପରେ ଉପସ୍ଥିତ ହୋଇ ମୁନି ପ୍ରଥମେ ବଶିଷ୍ଠଙ୍କୁ ନମସ୍କାର କରି ତତ୍ପରେ ଦଶରଥଙ୍କର ପୂଜା ଗ୍ରହଣ କଲେ ।

୪ର୍ଥ ଓ ୫ମ ପଦ;—ଅର୍ଥ - ଅନନ୍ତର ସତାନନ୍ଦ ଋଷି ଦଶରଥଙ୍କୁ ରୂପକରେ କହିଲେ, “ବୃହସ୍ପତିଙ୍କ ସହିତ ଚନ୍ଦ୍ର ଆକାଶରେ ଉଦିତ ହୋଇ କିରଣ ପ୍ରଭାବରେ ଅନ୍ଧକାର ବିନାଶ କରିବାପରି ବିଦ୍ୟାଗୁରୁ ବିଶ୍ୱାମିତ୍ରଙ୍କ ସହିତ ରାମଚନ୍ଦ୍ର ବନରେ ଉଦିତ ହୋଇ ଅର୍ଥାତ୍ ଭ୍ରମଣ କରି ବାହୁବଳରେ ତାଡ଼କା ରାକ୍ଷସୀଠାରୁ ଭୟପ୍ରାପ୍ତ ଋଷିବର୍ଗଙ୍କର ଚିନ୍ତାନ୍ଧକାରକୁ ବିନାଶ କଲେ ଅର୍ଥାତ୍ ତାଡ଼କା ରାକ୍ଷସୀକୁ ବଧ କଲେ ।

୬ଷ୍ଠ ପଦ;—ଅର୍ଥ—ରାତ୍ରିରେ ଚନ୍ଦ୍ର ବାୟସମାନଙ୍କୁ ନିଦ୍ରାରେ ବିଚେଷ୍ଟିତ ଓ ବିଟ ପୁରୁଷମାନଙ୍କ ଗମନକୁ ନିବାରଣ କଲାପରି ରାମଚନ୍ଦ୍ର, ମାରୀଚ ରାକ୍ଷସକୁ ପବନାସ୍ତ୍ର ଯୋଗେ ଶତଯୋଜନ ନିକ୍ଷେପ ପୂର୍ବକ ଚେଷ୍ଟାହୀନ କଲେ ଏବଂ ସୁବାହୁ ରାକ୍ଷସକୁ ବିନାଶ କଲେ ।

୭ମ ପଦ,—ଅର୍ଥ—ଚନ୍ଦ୍ର କୁମୁଦକୁ ବିକଶିତ ଓ ଚନ୍ଦ୍ରକାନ୍ତ ମଣିକୁ ଦ୍ରବୀଭୂତ କଲାପରି ରାମଚନ୍ଦ୍ର ଯଜ୍ଞର ବିକାଶ ସାଧନ କଲେ ଅର୍ଥାତ୍ ନିର୍ବିଘ୍ନରେ ଯଜ୍ଞକାର୍ଯ୍ୟ ସମାପନ କରାଇଲେ ଏବଂ ଅହଲ୍ୟାଙ୍କୁ ଅଭିଶାପ ମୁକ୍ତ କଲେ ।

ବ୍ୟବସ୍ଥିତେ ପୂର୍ଣ-ସଲକ୍ଷଣ ସେନ୍ବ ।
ବୈଦେହ୍ବକ ଜନ ଚକୋରକୁ ମୋହ୍ବ । ୮ ।
ବଇଦେଶୀ ଧୈର୍ଯ୍ୟଧନୁ ଅଜଗବ ।
ବିଭଜନ କଲେ ସ୍ପର୍ଶରେ ଜବ । ୯ ।
ବସୁପତ୍ତ ପଦ୍ମ ମୁଦ୍ର ଲଜ୍ଜାବଳେ ।
ବସାଇବେ ସୀତା ରୋହ୍ବଣୀକି କୋଳେ । ୧୦ ।
ବଧିବେତ ଜନକ ସାଗରସୂତ ।
ବିଭଙ୍ଗର ଛଳେ ତୋଷ ଇଛୁଳିତ । ୧୧ ।
ବେଳା ଅଣ୍ଡହମି ହେଲେ ସ୍ନେହ ବାର ।
ବିଷରିବେଳି ସଙ୍ଗେ ମୀନ ଗ୍ରଣିବାର । ୧୨ ।

---

୮ମ ପଦ;—ଅର୍ଥ—ଚନ୍ଦ୍ର କଳଙ୍କଯୁକ୍ତ ହୋଇ ସ୍ୱୀୟ କରାମୃତରେ ଚକୋରମାନଙ୍କୁ ମୋହ୍ବତ କଲାପରି ରାମଚନ୍ଦ୍ର ଲକ୍ଷ୍ମଣଙ୍କ ସହ୍ବତ ବିଦେହ୍ବ ଦେଶବାସୀମାନଙ୍କୁ ସୌଜନ୍ୟରେ ମୋହ୍ବତ କଲେ ।

୯ମ ପଦ;—ଅର୍ଥ—ଚନ୍ଦ୍ର କିରଣ ସ୍ପର୍ଶରେ ବିଦେଶୀ ଅର୍ଥାତ କିରହ୍ବୀମାନଙ୍କର ଧୈର୍ଯ୍ୟଭଙ୍ଗ କଲାପରି ରାମଚନ୍ଦ୍ର ଅଜଗବ ଧନୁ ସ୍ପର୍ଶ କରିବା-ମାତ୍ରେ ତାହାକୁ ଭଗ୍ନ କଲେ ।

୧୦ମ ପଦ;—ଅର୍ଥ—ଚନ୍ଦ୍ର ପଦ୍ମକୁ ମୁଦ୍ରିତ କରି ରୋହ୍ବଣୀ ନାମ୍ନୀ ତାରକାକୁ କୋଳରେ ବସାଇଲା ପରି ରାମଚନ୍ଦ୍ର ସ୍ୱୀୟ ବୀରତ୍ୱ ଦ୍ୱାରା ଏ ପୃଥିବୀର ରାଜାମାନଙ୍କ ପଦ୍ମନେତ୍ରକୁ ମୁଦ୍ରିତ କରି ସୀତାଙ୍କୁ କୋଳରେ ବସାଇବେ ।

୧୧ଶ ପଦ;—ଅର୍ଥ—ଯେପରି ଚନ୍ଦ୍ର ସମୁଦ୍ରରୁ ଜାତ ହୋଇ ସ୍ୱୀୟ କିରଣଦ୍ୱାରା ତାହାକୁ ଉଚ୍ଛୁଳାଇ ଦେଲାପରି ରାମଚନ୍ଦ୍ର ସଗରବଂଶଜ ଦଶରଥ-ଙ୍କଠାରୁ ଜାତହୋଇ ସ୍ୱୀୟ କୀର୍ତ୍ତି ପ୍ରଭା ଦ୍ୱାରା ଦଶରଥଙ୍କର ଆନନ୍ଦ ସାଗରକୁ ଉଦ୍‌ବେଳିତ କଲେ ଅର୍ଥାତ୍ ସତାନନ୍ଦ ଋଷିଙ୍କଠାରୁ ଏହି ବାର୍ତ୍ତା ଶ୍ରବଣ କରି ବିଶେଷ ଆନନ୍ଦିତ ହେଲେ ।

୧୨ଶ ପଦ;—ବେଳା—ସମୁଦ୍ରତଟ, ଅଶୁଭ ସମୟ । ସ୍ନେହବାରି—ସ୍ନେହଜଳ । ମୀନ ରାଶିବାର—ମୀନାଦିରାଶି ଓ ରବ୍ୟାଦି ବାର ସମୂହ ।

ବାର୍ଭଟ କି ଗଜଯୂଥ ଭେଳା ହୟ ।
ବହିତ୍ର କି ରଥ ଭେକ ପତ୍ତିଚୟ । ୧୩ ।
ବାଦ୍ୟନାଦ ଗରଜନ ତହିଁ ଟିମଳ ।
ବଡ଼ ବଡ଼ ଲୋକ ନକ୍ରେଁ ପୋତପାଳ । ୧୪ ।
ବନ୍ଦର ଯେ ମିଥିଳା ମିଳବେ ଯାଇ ।
ବିଲୋକିଲା କ୍ଷିଣୀ ରାମା ରତ୍ନ ତହିଁ । ୧୫ ।

---

ଅର୍ଥ—ସମୁଦ୍ର ଉଦବେଳିତ ହେଲବେଳେ ଅର୍ଥାତ୍ ଉଚ୍ଛୁଳିବା ସମୟରେ ସେ ଯେପରି ମୀନାଦି ଜଳଚରମାନଙ୍କୁ ବକ୍ଷରେ ବହାର କରାଇ ତୀରକୁ ଅତିକ୍ରମ କରେ, ସେହିପରି ଦଶରଥଙ୍କର ହୃତ୍‌ସିନ୍ଧୁ ଉଦ୍‌ବେଳିତ ହେଲ ଅର୍ଥାତ୍ ସେ ଆନନ୍ଦରେ ଅଧୀର ହୋଇ ଶୁଭାଶୁଭ ବିଚାର ନ କରି ମୀନାଦି ଦ୍ୱାଦଶ ରାଶି ଓ ରବ୍ୟାଦି ସପ୍ତବାରଙ୍କୁ ସଙ୍ଗରେ ଘେନି ମିଥିଳା ଉଦ୍ଦେଶ୍ୟରେ ଯାତ୍ରା କଲେ ।

୧୩ଶ ପଦ;—ବାର୍ଭଟ—କୁମ୍ଭୀର । ହୟ—ଘୋଡ଼ା । ବହିତ୍ର—ବୋଇତ । ପତ୍ତିଚୟ—ପଦାତି ସମୂହ ।

ଅର୍ଥ—ସମୁଦ୍ରରେ ଯେପରି କୁମ୍ଭୀର, ଭେଳା, ବୋଇତ ଓ ଭେକମାନେ ଦେଖାଯାନ୍ତି, ସେହିପରି ଦଶରଥ ଆଡ଼ମ୍ବର ସହିତ ଯିବାବେଳେ ତାଙ୍କସହିତ ଯାଉଥିବା ଗଜ ଅଶ୍ୱ ଓ ପଦାତି ସମୂହ ଯଥାକ୍ରମେ ତତ୍‌ସଦୃଶ ଦେଖାଗଲେ ।

୧୪ଶ ପଦ;—ଅର୍ଥ—ସମୁଦ୍ରରେ ଲହରୀସମୂହ ଗର୍ଜନ କଲାପରି ଏଠାରେ ବାଦ୍ୟନାଦ ହେଉଛି ଏବଂ ତହିଁରେ ପୋତାଧ୍ୟକ୍ଷମାନେ ଥିଲାପରି ଏ ଦଳରେ ବହୁତ ବଡ଼ଲୋକ ଅର୍ଥାତ ଧନୀଲୋକେ ଅଛନ୍ତି ।

୧୫ଶ ଓ ୧୬ଶ ପଦ;—ଅର୍ଥ—ଏଠାରେ କବି ମିଥିଳାକୁ ବନ୍ଦର ଓ ତହିଁରେ ଥିବା ରମଣୀମାନଙ୍କୁ ରତ୍ନସ୍ୱରୂପ କଳ୍ପନା କରିଅଛନ୍ତି । ରାଜା ଦଶରଥ ମିଥିଳା ବନ୍ଦରରେ ଉପସ୍ଥିତ ହୋଇ ସେଠାରେ ଥିବା ରମଣୀ-ରତ୍ନମାନଙ୍କର ଅପୂର୍ବ ଶୋଭା ନିରୀକ୍ଷଣ ପୂର୍ବକ ସେମାନଙ୍କୁ ଜଗତରେ ଅନୁପମ ସୁନ୍ଦରୀ ବୋଲି କହିଲେ । କବି ବିଶେଷ ଜ୍ଞାନର ସହିତ ଚିନ୍ତା କରି ସେମାନଙ୍କ

ବୋଲାଇବେ ଯେ କି ଉପମାଏ ଅମୂଲ୍ୟ ।
ବ୍ୟୁତ୍ପତ୍ତିରେ ନବ କାନ୍ତି ଏତେ ମୂଲ୍ୟ । ୧୬ ।
ବାଙ୍କା ଏ ଦୃଷ୍ଟି ଜନକ ରାଜଋଷି ।
ବାଲ୍ମୀକି କୌଶିକ ଗୌତମ ମିଶି । ୧୭ ।
ବୈଖାନସଗଣ ଯେନ ବାଟେ ମେଳା ।
ବାରିନିଧି ସଙ୍ଗମ କି ଋଷିକୁଲ୍ୟା । ୧୮ ।
ବିଶ୍ରାମକୁ ସୁଖାସନ ଦୂରେ କରୁ ।
ବ୍ରହ୍ମପୂର୍ବେକ ପୁରୁଷୋତ୍ତମ ଅଛୁ । ୧୯ ।
ବ୍ୟାପ୍ତଦ୍ରବ୍ୟ କଟକରେ ନେଇକରି ।
ବକ୍ଷା ନବାସେ ରଖି ଜନକ ଠାରି । ୨୦ ।

---

ଶୋଭାର ମୂଲ୍ୟ ନ ଥିବାରୁ ଅମୂଲ୍ୟ ବୋଲି ତାହାର ମୂଲ୍ୟ ସ୍ଥିର କଲେ ବା ନିରୂପଣ କଲେ ।

୧୭ଶ ଓ ୧୮ଶ ପଦ;—ବୈଖାନସଗଣ—ଋଷିମାନେ । ବାରିନିଧି—ସମୁଦ୍ର ।

ଅର୍ଥ—ରାଜର୍ଷି ଜନକ ବାଲ୍ମୀକି, ବିଶ୍ୱାମିତ୍ର, ଗୌତମ ଓ ଅନ୍ୟାନ୍ୟ ଋଷିମାନଙ୍କ ସହିତ ଦଶରଥଙ୍କ ସମୀପରେ ଉପସ୍ଥିତ ହେଲେ । ସେ ସମୟର ଦୃଶ୍ୟ ଋଷିକୁଲ୍ୟା ନଦୀ ସମୁଦ୍ରରେ ମିଳିତ ହେବା ଦୃଶ୍ୟପରି ଦେଖାଗଲା ।

୧୯ଶ ପଦ:—ସୁଖାସନ—ଅନନ୍ତଶୟନ; ଯାନ ବାହାନ ଇତ୍ୟାଦି ।

ଅର୍ଥ—ସମୁଦ୍ର ତଟରୁ କିଛିଦୂରରେ ଭଗବାନ ବିଷ୍ଣୁ ଅନନ୍ତ ଶୟନରେ ବିଶ୍ରାମ କରିଥାନ୍ତି; ତହିଁରେ ଗରଳ ଥାଏ, ସେହିପରି ପୁରୁଷଶ୍ରେଷ୍ଠ ରାମଚନ୍ଦ୍ର ଯେଉଁଠାରେ ଥିଲେ, ତାହାର କିଛିଦୂରରେ ଦଶରଥ ଯାହାନ ତ୍ୟାଗକରି ବିଶ୍ରାମ କଲେ; ସେମାନଙ୍କ ସଙ୍ଗରେ ଗରଳ ତୁଲ୍ୟ ବଶିଷ୍ଠଋଷି ଥିଲେ ।

୨୦ଶ ପଦ:—କଟକ—ନଗର । ସାମୁଦ୍ରିକ—ଲବଣ ।

ବିଶ୍ୱରହିଁ ହୋଇଥିଲେ ସତାନନ୍ଦ ।
ବଶିଷ୍ଠରେ କହିଲେ ଏ ଶୁଭପଦ । ୨୧ ।
ଦେବଙ୍କୁଁ ଶ୍ରୀରାମ ହେଲେ ତ୍ରିପୁରଜେତା ।
ବିଶ୍ୱରଇ ତାଙ୍କ ଧାର୍ମିକର ସୀତା । ୨୨ ।
ବାଛ ଲକ୍ଷଣ ଗମ୍ଭୀର ଗୁଣଗ୍ରାହୀ ।
ବହୁ ଉର୍ମିଳା-କନ୍ୟ କେଳାଜ ସେହି । ୨୩ ।
ବିଦ୍ୟମାନ ଶୁଭରତ ସୁମୂର୍ତ୍ତିକ ।
ବିଧି ନ ଦେବା ସୁମନେ ମାଣ୍ଡବିକ । ୨୪ ।

---

**ଅର୍ଥ** — ସମୁଦ୍ର ଯେପରି ଲବଣରେ ବ୍ୟାପ୍ତ ହୋଇଥାଏ, ସେହିପରି ଦଶରଥ ମିଥିଳା ନୃପଧାମରେ ହର୍ଷେନଂରେ ବ୍ୟାପ୍ତ ହେଲେ । ଜନକ ସେହା ଦେଖି ସେମାନଙ୍କୁ ଉପଯୁକ୍ତ ବାସଗୃହ ଦେଇ ରଖିବା ନିମିତ୍ତ ଭୃତ୍ୟବର୍ଗଙ୍କୁ ସଙ୍କେତ କଲେ ।

୨୧ଶ ପଦ :—ସତାନନ୍ଦ ଋଷି ଜନକଙ୍କ ସହିତ ପରାମର୍ଶ କରି ନିମ୍ନଲିଖିତ ଭାବରେ କହିଲେ ।

୨୨ଶ ପଦ :—ସତାନନ୍ଦ କହିଲେ, "ତ୍ରିପୁରବିଜୟୀ ମହାଦେବଙ୍କ ଧନୁକୁ ଭଗ୍ନ କଲାପରି ତ୍ରିଭୁବନବିଜୟୀ ରାମଚନ୍ଦ୍ର ସୀତାଙ୍କୁ ଗ୍ରହଣ କରିବା ମୋ ବିଚାରରେ ଉଚିତ ।"

୨୩ଶ ପଦ :—ଯୁଗଣ୍ଡି ସମୁଦ୍ରରେ 'ଭ୍ରମ' ଲହରୀ ଶୋଭା ବିସ୍ତାର-ପୂର୍ବକ ବିହାର କଲାପରି ତଣ୍ଡିରି ଗୁଣଗ୍ରାହୀ ଅର୍ଥାତ୍ ଗାମ୍ଭୀର୍ଯ୍ୟଶୀଳା ଲକ୍ଷ୍ମଣଙ୍କ-ଠାରେ ଉର୍ମିଳା ନାମ୍ନୀ କନ୍ୟା ଶୋଭା ବିସ୍ତାର ପୂର୍ବକ କ୍ରୀଡ଼ା କରନ୍ତୁ ଅର୍ଥାତ୍ ଉର୍ମିଳାଙ୍କୁ ଲକ୍ଷ୍ମଣ ବିବାହ କରନ୍ତୁ ।

୨୪ଶ ପଦ :—ବିଦ୍ୟମାନ—ଦେଦୀପ୍ୟମାନ । ସୁମୂର୍ତ୍ତି—ମନୋହର ମୂର୍ତ୍ତି । ସୁମନେ – ନିର୍ମଳ ମନରେ ।

**ଅର୍ଥ**—ସର୍ବଦା ମଙ୍ଗଳ କାର୍ଯ୍ୟରେ ରତ ମନୋହର ମୂର୍ତ୍ତି ଭରତଙ୍କୁ ନିର୍ମଳ ମନରେ ମାଣ୍ଡବୀଙ୍କୁ ପ୍ରଦାନ କରିବା ଉଚିତ ନୁହେଁ କି ? ଅର୍ଥାତ୍ ଭରତ ମାଣ୍ଡବୀଙ୍କୁ ବିବାହ କରନ୍ତୁ ।

ବୈରି-ଘନ ସୁକୀର୍ତ୍ତିରେ ଯୁକ୍ତ ସେତ ।
ବଚନରେ ସତାନନ୍ଦ କହେ ଜାତ । ୨୫ ।
ବିଧାନକୁ ପ୍ରଶଂସନ୍ତି ସଧୂଜନେ ।
ବର ଚାରି କନ୍ୟା ଏକ ସ୍ଥାନେ । ୨୬ ।
ବିହିଥିଲା ନୋହିଲେ କାହିଁକି ବିଧି ।
ବାହୁଡ଼ିଲେ ଜନକ ପ୍ରମୋଦ ବଢ଼ି । ୨୭ ।
ବ୍ୟତିପାତ ବୃଷ୍ଟି ବିବର୍ଜିତ ଦିନ ।
ବୁଝି କନ୍ୟା ଦେଖିବାକୁ ଆଗମନ । ୨୮ ।
ବାମଦେବ ଜାବାଳି କଶ୍ୟପ ଭିନ ।
ବଶିଷ୍ଠଙ୍କୁ ସୁମନ୍ତ୍ରଙ୍କୁ ସଙ୍ଗେ ଘେନ । ୨୯ ।
ବିଜେ କନକ ମଣ୍ଡପରେ ଦଶରଥ ।
ବେଢ଼ିଲେ କେମାନ୍ତେ ଆଣି ଦେଖୁଣି ଅର୍ଥ । ୩୦ ।
ବେଶ କରି ସାତିଥିଲେ ଆଗୁଁ ଜାଣି ।
ବେଢ଼େଇବାଏ ସର୍ବ ଶୋଭାପୂର୍ଣ୍ଣ ପୁଣି । ୩୧ ।

---

୨୫ଶ ପଦ;—ବୈରିଘନ—ଶତ୍ରୁଘ୍ନ ।

ଅର୍ଥ—ଶତ୍ରୁଘ୍ନ ନେକ ଯେପରି ସୁକୀର୍ତ୍ତିଯୁକ୍ତ ହୁଅନ୍ତି, ସେହିପରି ଶତ୍ରୁଘ୍ନ ଏବା ଶ୍ରୁତକୀର୍ତ୍ତି ଯୁକ୍ତ ହୁଅନ୍ତୁ, ଅର୍ଥାତ୍ ଶ୍ରୁତକୀର୍ତ୍ତି ଶତ୍ରୁଘ୍ନଙ୍କୁ ବିବାହ କରନ୍ତୁ । ସତାନନ୍ଦ ଏହିରୂପେ ବଶିଷ୍ଠଙ୍କୁ କହିଲେ ।

୨୬ଶ ଓ ୨୭ଶ ପଦ—ବିଧାନ—ବିଧାତା ।

ଅର୍ଥ—କନ୍ୟା ଚତୁଷ୍ଟୟଙ୍କୁ ଏହି ବରଚତୁଷ୍ଟୟଙ୍କର ପତ୍ନୀ ହେବ ନିମିତ୍ତ ସର୍ବାଂଶରେ ଉପଯୁକ୍ତ ଦେଖି ପଣ୍ଡିତମାନେ କହିଲେ, "ବିଧିଙ୍କ କାର୍ଯ୍ୟ ବିଧାନ କରନ୍ତି ବୋଲି ତାହାଙ୍କ ନାମ ବିଧାତା ହୋଇଅଛି ।" ଏହା କହି ସେହି ବିଧାତାଙ୍କୁ ପ୍ରଶଂସା କଲେ ।

୨୮, ୨୯ ଓ ୩୦ଶ ପଦ ;—ଅର୍ଥ—ଦଶରଥ ବ୍ୟତିପାତ ଓ ବୃଷ୍ଟି ବିବର୍ଜିତ ଉତ୍ତମ ଦିନ ବୁଝି ବାମଦେବ, ଜାବାଳି, କଶ୍ୟପ, ବଶିଷ୍ଠ ଓ ସୁମନ୍ତ୍ରଙ୍କୁ

ବିଦ୍ୟାକୁନ୍ତଳଚମ୍ପାପୁଷ୍ପାଲିଙ୍ଗନ ।
ବିମଳକରୈଳ ମାଳବରେ ପୁନ । ୩୨ ।
ବିଚଳିତ କାଞ୍ଚନ କଟକ, କାଞ୍ଚି ।
ବେଳେ ବେଳେ ଖଞ୍ଜିତ ହେବାର ପାଞ୍ଚି । ୩୩ ।
ବିଚିତ୍ରଣ ରତ୍ନପୁର ଶ୍ରୀନଗର ।
ବିଶାଳରେ କରଥିବା ସେ ଆଦର । ୩୪ ।

---

ସଙ୍ଗରେ ଯେମନ ଜନକଙ୍କ ମନ୍ଦିରରେ ଉପସ୍ଥିତ ହେଲେ ଏବଂ ଦେଖିବା ନିମିତ୍ତ କନ୍ୟାଙ୍କୁ ଆଣିବା ପାଇଁ କହିଲେ ।

୩୧ଶ ପଦ;—ଅର୍ଥ—ଏ ସମୟ ଆସନ୍ନ ଜାଣିପାରି ଦଶରଥ କନ୍ୟାମାନଙ୍କୁ ଦେଖିବା ନିମିତ୍ତ ସେହିବେଳକୁ ସଖୀମାନେ ସୀତାଙ୍କୁ ବେଶ କରାଇଥିଲେ । ତାହା ଦେଖି ଦଶରଥ ମନେ କଲେ, ଏମାନେ ନଗରମାନଙ୍କର ଶୋଭାର ଅଗ୍ରୀମ ଅଂଶ କି ?

୩୨ଶ ପଦ;—ଅର୍ଥ—କନ୍ୟାମାନଙ୍କର କେଶରେ ଚମ୍ପକମାଳ, ବକ୍ଷଦେଶରେ କଞ୍ଚୁକ ଏବଂ ଗଳରେ ସୁନ୍ଦର ହାରସମୂହ ଦେଖି ଉପସ୍ଥିତ ବ୍ୟକ୍ତିମାନଙ୍କ ମନରେ କୁନ୍ତଳ, ଚମ୍ପା, କୈଳ ଓ ମାଳବ ନଗରର ଭ୍ରାନ୍ତି ଜନ୍ମିଲା ।

୩୩ଶ ପଦ;—କାଞ୍ଚନ କଟକ—ସୁବର୍ଣ୍ଣ କଙ୍କଣ, ଲଙ୍କାପୁରୀ । କାଞ୍ଚୀ—କାଞ୍ଚୀ, କାଞ୍ଚୀନଗର ।

ଅର୍ଥ—ସମସ୍ତ ସମୟରେ ସ୍ୱର୍ଣ୍ଣକଙ୍କଣ ହାତ ଚଳାଇବେଲେ ଏବଂ କାଞ୍ଚୀ ଖୋଲିବେଲେ ଆଲୋକିତ ହେବ ବୋଲି ମନେ କରି ସଖୀମାନେ ତାହା ସୀତାଙ୍କ ଦେହରେ ଖଞ୍ଜି ଦେଇଛନ୍ତି । ଏହି ଅଳଙ୍କାରରେ ଅଳଂକୃତା କନ୍ୟାମାନଙ୍କର ଶୋଭା ଦେଖି ଦର୍ଶକମାନଙ୍କ ମନରେ ସ୍ୱର୍ଣ୍ଣପ୍ରାଚୀର ବେଷ୍ଟିତା ଲଙ୍କା ଓ କାଞ୍ଚୀନଗରର ଭ୍ରାନ୍ତି ଜନ୍ମିଲା ।

୩୪ଶ ପଦ;—ଅର୍ଥ—ଏହି କନ୍ୟାମାନେ ରତ୍ନପୂରିତ ଅର୍ଥାତ୍ ବହୁରତ୍ନ ଖଚିତ ଅଳଙ୍କାରମାନଙ୍କରେ ବିଶାଳ ଅର୍ଥାତ୍, ମହତ୍ତ୍ୱ ଶ୍ରୀ ର ଆଧାର

ବାହ୍ଲୀକରେ ଅଙ୍ଗକୁ କରାଇ କୋଳ ।
ବର୍ଦ୍ଧମାନ କରେ ହାସ ମନୋଜ୍ଜ୍ୱଳ ॥ ୩୫ ॥
ବଳାଇ ଯେ ପୁରୁଁ ଅଣିବାରେ ଦାସୀ ।
ବିଧି ଯନ୍ତ୍ର ଟିପୁଳା ପରାଏ ଦିଶି ॥ ୩୬ ॥
ବିଲୋକନ୍ତ ହେଲେ ସେ ରମଣୀ ଗୃର ।
ବ୍ୟତିରେକେ ରମଣୀୟା ନାହିଁ ନାରୀ ॥ ୩୭ ॥
ବେଧାଶ ବିକଳ୍ପି କର୍ମ ଆରମ୍ଭଣେ ।
ବଳ ଜ୍ୟାରୁ ଜନ୍ମ ଅନୁପମ ଜଣେ ॥ ୩୮ ॥
ବଳାରାତିର ଅବଳା ଉପାରମା ।
ବିଧି ଏକମୂରତି ନୋହିବେ ସମା ॥ ୩୯ ॥

---

ହେଉଥିବାରୁ ସେମାନଙ୍କୁ ଦେଖି ଏମାନଙ୍କ ମନରେ ରତ୍ନପୁର ଓ ବିଶାଳ ନଗରୀର ଭ୍ରାନ୍ତି ଜନ୍ମିଲା ।

୩୫ଶ ପଦ—ବାହ୍ଲୀକ—କୁଙ୍କୁମ, ନଗର ବିଶେଷ ।

ଅର୍ଥ—କନ୍ୟାଗଣ ଶରୀରରେ କୁଙ୍କୁମ ବୋଳି ହୋଇ ହାସ ପ୍ରକାଶ କରୁଥିବାରୁ ବାହ୍ଲୀକ, ଅଙ୍ଗ ଓ ବର୍ଦ୍ଧମାନ ନଗରୀ ତୁଲ୍ୟ ଶୋଭା ପାଉଥିଲେ ।

୩୬ଶ ପଦ—ଅର୍ଥ—ଦାସୀମାନେ ଯେବେ କନ୍ୟାମାନଙ୍କୁ ପୁରମଠରୁ ଘେନି ଆସିବା ସମୟରେ ସେମାନେ ବିଧାତାଙ୍କର ଯନ୍ତ୍ରନିର୍ମିତ ପୁତ୍ତଳୀପରି ଦେଖାଗଲେ ଅର୍ଥାତ୍ ସେମାନଙ୍କ ସୌନ୍ଦର୍ଯ୍ୟ ଦେଖିଲେ ବୋଧହୁଏ ଯେ ବିଧାତା ସେମାନଙ୍କୁ ସ୍ୱହସ୍ତରେ ନିର୍ମାଣ କରି ନାହାନ୍ତି ।

୩୭ଶ ପଦ—ଅର୍ଥ—ସେହି କନ୍ୟାମାନଙ୍କର ସୌନ୍ଦର୍ଯ୍ୟ ଦେଖିଲେ ସେମାନଙ୍କ ପରି ସୁନ୍ଦରୀ ରମଣୀ ଜଗତରେ ଆଉ ଅନ୍ୟପର ବୋଧହୁଏ ନାହିଁ ।

୩୮ ଓ ୩୯ଶ ପଦ—ବେଧାଶ—ବ୍ରହ୍ମା । ଜ୍ୟାରୁ—ପୃଥିବୀରୁ । ବଳାରାତି ଅବଳା—ଶଚୀ ।

ଅର୍ଥ—ଦଶରଥ ସୀତାଙ୍କୁ ଦେଖି ମନେକଲେ, ବ୍ରହ୍ମା କି କଳ୍ପନାକର ସୃଷ୍ଟିକର୍ମ ଆରମ୍ଭ କଲେ ଯେ, ତାଙ୍କ କଳ୍ପନାରୁ କିମ୍ବା ପୃଥିବୀରୁ ଗୋଟିଏ

ବ୍ୟକ୍ତେ ତାଙ୍କ ପଦରୁ ଅଧିକ ଧର ।
ବୋଇଲେ ଏ ସୁନ୍ଦରୀ ପୁରନ୍ଦରୀ । ୪୦ ।
ବାଣୀ ବଖ୍ୟାତ ଗଉରୀ ଶିରୋମଣି ।
ବଦ୍ୟାବନ୍ତେ ଯେ କମଳାଯାର ଭଣି । ୪୧
ବନାଇବାରେ ପୁଣି ଯେ ପ୍ରତିମାଏ ।
ବପବନ୍ତ ହେଲ ଘଣ୍ଟାକ୍ଷର ପ୍ରାୟେ । ୪୨ ।
ବୋଲି ସୃଷ୍ଟିମଧ୍ୟେ ଯେଉଁ ରମ୍ଭା ।
ବେଗେ ପାଦଦେଶ କେ ସେପର ରମ୍ଭା ।୪୩।

---

ଅନୁପମା ସୁନ୍ଦରୀ ଜାତ ହେବ ? ଶଚୀ, ପାର୍ବତୀ ଓ ଲକ୍ଷ୍ମୀ ଏମାନେ ଏକ-ମୂର୍ତ୍ତି ହୋଇ ମଧ୍ୟ ତାହାଙ୍କ ତୁଳ୍ୟର ହୋଇ ନ ପାରିବେ ନାହିଁ ।

୪୦ ଓ ୪୧ଶ ପଦ—ଅର୍ଥ—ସୀତା ସେହି ରମଣୀମାନଙ୍କଠାରୁ ଅଧିକ ସୁନ୍ଦରୀ ବୋଲି ପ୍ରକାଶ ପାଇଲେ । କାରଣ ଶଚୀଙ୍କ ନାମ ପୁରନ୍ଦରୀ, ମାତ୍ର ଏ ସୁନ୍ଦରୀ ପୁରନ୍ଦରୀ ଅଟନ୍ତି । ପାର୍ବତୀଙ୍କ ନାମ ଗୌରୀ, ଏ ଗୌରୀ ଶିରୋମଣି ବୋଲି ବିଖ୍ୟାତ ହୋଇଅଛନ୍ତି । ବିଦ୍ୱାନ ଲୋକମାନେ ଲକ୍ଷ୍ମୀଙ୍କୁ କମଳା ବୋଲି କହନ୍ତି, ଏହାଙ୍କୁ ଲୋକେ କମଳା-ସାର ଅର୍ଥାତ୍ ଦେବସ୍ତ୍ରୀ-ଶ୍ରେଷ୍ଠା ବୋଲି କହନ୍ତି ।

୪୨ଶ ପଦ—ଅର୍ଥ—ଦଶରଥ ଉର୍ମିଳାଙ୍କର ସୌନ୍ଦର୍ଯ୍ୟ ଦେଖି ମନେ ଭାବିଲେ, ବିଧି ତା ଗୋଟିଏ ପ୍ରତିମା ନିର୍ମାଣ କରୁ କରୁ ତାହା ଘଣ୍ଟାକ୍ଷର ନ୍ୟାୟ ସୁନ୍ଦରୀ ନାରୀରୂପ ଧାରଣ କଲା କି ? ଅର୍ଥାତ ଉର୍ମିଳା ଠିକ ପ୍ରତିମା ପରି ସୁନ୍ଦର ଦେଖା ଯାଉଥିଲେ। (ଘଣ୍ଟାକ୍ଷର ଅର୍ଥାତ କୀଟ କାଠ କାଟୁ କାଟୁ ତାହ ଦୈବାତ କୌଣସି ଅକ୍ଷରର ଆକୃତି ଧାରଣ କଲେ, ତାହାକୁ ଘଣ୍ଟାକ୍ଷର କହନ୍ତି ।)

୪୩ଶ ପଦ—ଅର୍ଥ—ଉର୍ମିଳାଙ୍କର ରମ୍ଭାବୃକ୍ଷ ସଦୃଶ ଜାନୁଦ୍ୱୟ ଦେଖି ମନେ ହେଲ, ଯେଉଁ ରମ୍ଭା ଅପ୍ସରା ଶ୍ରେଷ୍ଠା ସ୍ତ୍ରୀ ବୋଲି ସଂସାରରେ ଖ୍ୟାତି ଲଭ କରିଥିଲେ ସେ ଏହାଙ୍କ ପାଦରେ ଶରଣ ପଶିଲେ କି ?

ବିଶ୍ୱକର୍ମାଙ୍କୁ ଯେବେ ଗଢ଼ିଲେ ଦୁଇ ।
ବଚ୍ଛାଣିତ୍ୱ ବିବାଦକୁ ସେ ଦେଖାଇ ।୪୪।
ବାଳୀ ଏକତରେ ତିଲୋତ୍ତମା ହେଲା ।
ବାଳୀ ଏକ ରତି ରତି ତାକୁ ଦେଲା ।୪୫।
ବିଷ୍ଣୁ ମୋହିନୀ ରୂପକୁ ଧରିଥିଲେ ।
ବୃଷ ସନ ଦମ୍ଭକୁ ହରିଲେ ବଳେ ।୪୬।
ବାଦେ ଅଶେଷ ଲାବଣ୍ୟଶିଖ ଆଣି ।
ବନ୍ଧୁ ଜାଳେ ଦେଖାଇଲେ ଶିଖ ଆଣି ।୪୭।

---

୪୪ଶ ପଦ – ଅର୍ଥ—ମାଣ୍ଡବୀ ଓ ଶ୍ରୁତକୀର୍ତ୍ତିଙ୍କର ସୌନ୍ଦର୍ଯ୍ୟ ଦେଖି ଦଶରଥ ପଚାରିଲେ ବିଧାତା ଶିଳ୍ପନୈପୁଣ୍ୟରେ ବିଶ୍ୱକର୍ମାଙ୍କ ସହିତ ବିବାଦ କରିବାପାଇଁ ଏହି ମୂର୍ତ୍ତିଙ୍କୁ ଗଠନ କଲେ କି ?

୪୫ ପଦ:—ଅର୍ଥ—କନିଷ୍ଠା ମାଣ୍ଡବୀଙ୍କ ସହିତ ସୌନ୍ଦର୍ଯ୍ୟରେ ତିଲୋତ୍ତମା ଅଳ୍ପସ୍ୱଳ୍ପ ତିଳେ ମାତ୍ର ସମାନ ନ ହେବାରୁ 'ତିଲୋତ୍ତମ' ନାମ ଧାରଣ କଲା। ରତି ଶ୍ରୁତକୀର୍ତ୍ତିଙ୍କ ସହିତ ରତିମାତ୍ର ସମାନ ନ ହେବାରୁ ଅର୍ଥାତ୍ କୌଣସି ଅଂଶରେ ସମାନ ନ ହେବାରୁ 'ରତି' ନାମ ଧାରଣ କଲା।

୪୬ ଓ ୪୭ ପଦ —ବୃଷାସନ— ମହାଦେବ । ଲାବଣ୍ୟଶିଖ—ଶୋଭା ସମ୍ପଦ । ଶିଖ—ଲକ୍ଷ୍ମୀ ।

ଅର୍ଥ—ଅମୃତ ମନ୍ଥନ ସମୟରେ ବିଷ୍ଣୁ ମୋହିନୀ ରୂପ ଧାରଣ କରି ଶିବଙ୍କର ଧୈର୍ଯ୍ୟ ଧ୍ୱଂସ କରିଥିଲେ । ତାହାର ପ୍ରତିଶୋଧ ନେବାପାଇଁ ଶିବ ଲକ୍ଷ୍ମୀରୂପା ସୀତାଙ୍କ ଦ୍ୱାରା ବିମରୂପୀ ବିଷ୍ଣୁଙ୍କର ଧୈର୍ଯ୍ୟଧ୍ୱଂସ କରିବା ମାନସରେ ଜନକର କୋଷାଗାରିକୁ ଏହିପରି ସୌନ୍ଦର୍ଯ୍ୟଶାଳିନୀ ବସ୍ତ୍ରାଲଙ୍କାର ଏ କନ୍ୟାମାନଙ୍କୁ ରମଣୀ ସୃଷ୍ଟିଙ୍କୁ) ନିର୍ମାଣ କଲେ ।

ବାଳା-ଜ୍ୟେଷ୍ଠା ଶ୍ରେଷ୍ଠା କୋଟିବ୍ରହ୍ମାଣ୍ଡରେ ।
ବିଭୂଷଣା ଆଜ ଜନକନପୁରେ ।୪୮।
ବିଶ୍ୱମୋହିନୀ ରୂପ ସୀତାଙ୍କୁ ସାଜି ।
ବରହେବେଲେ ରାମରୂପେ ବିଷ୍ଣୁ ହେଜି ।୪୯।
ବର୍ଣ୍ଣୁଥିଲେ ନବ ପଦ ହୋଇ କବି ।
ବଇଷ୍ଣବ ଗୁଣେ ଗୃହପଦ ଲଭି ।୫୦।
ବଧୂ ଦେଖାକୁ ବହୁତ ଅଳଙ୍କାର ।
ବଢ଼ା ହୋଇଥିଲା ଚହୁଁ ନରେଶ୍ୱର ।୫୧।
ବନିତାରେ ମଥାମଣି ଦେଲେ ତୋଳି ।
ବନିତାରେ ଏପଦ ନ ଦିବୋଲିବୋଲି ।୫୨।

---

୪୮ ଓ ୪୯ ପଦ—କନ୍ୟାମାନଙ୍କ ମଧ୍ୟରେ ବୟସ୍କା ଅର୍ଥାତ୍ ଜ୍ୟେଷ୍ଠା ସୀତା କୋଟିବ୍ରହ୍ମାଣ୍ଡରେ ଶ୍ରେଷ୍ଠା, ଆଜ ଜନକାଳା ଜିପୁରରେ ବିଭୂଷଣୀ ଅଟନ୍ତି । ସେ (ସୀତା) ଜଗନ୍ମୋହିନୀ ଲକ୍ଷ୍ମୀଙ୍କ ତୁଲ୍ୟ ଶୋଭା ବିସ୍ତାର କରି ପୃଥିବୀରେ ଅବତୀର୍ଣ୍ଣା ହୋଇଥିବାର ଜାଣି ନାରାୟଣ ତାଙ୍କ ସ୍ୱାମୀ ହେବା ନିମିତ୍ତ ଏ ଜନ୍ମରେ ରାମରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି ।

୫୦ ପଦ – ଅର୍ଥ – ବିଷ୍ଣୁଭକ୍ତ ବୈଷ୍ଣବମାନଙ୍କ ମନରେ ନୂତନ ମନୋହର ଭାବରାଜି କ୍ରମଶଃ ଜାତ ହେଉଥାଏ, ସୁତରାଂ ବର୍ଣ୍ଣନାର ପରିସମାପ୍ତି ହୁଏ ନାହିଁ । ଏହା ଭାବି ଭଞ୍ଜକବି ସୀତାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନରୁ କ୍ଷାନ୍ତ ରହିଲେ ।

୫୧ ଓ ୫୨ ପଦ ଅର୍ଥ—ବଧୂମାନଙ୍କୁ ଦେଖି ସେମାନଙ୍କ ମୁହଁଦେଖା ସ୍ୱରୂପ ଦେବା ନିମିତ୍ତ ସେଠାରେ ବହୁତ ଅଳଙ୍କାର ଥୁଆ ହୋଇଥିଲା । ଦଶରଥ ସେଥିରୁ ମଥାମଣି ନାମକ ଅଳଙ୍କାର ଆଣିଲେ ଏବଂ ବନିତାମାନଙ୍କ ମଧ୍ୟରେ ସୀତା ଶିରୋମଣି ଏହା ଭାବ ମାତ୍ର ପ୍ରକାଶ୍ୟରେ ନ କହି, ତାହା ମୁହଁଦେଖା ସ୍ୱରୂପ ସୀତାଙ୍କୁ ପ୍ରଦାନ କଲେ ।

ବକ୍ଷ ଉରସ୍ଥ କୌସ୍ତୁଭ ନୃପମଣି ।
ବସି ଯେଉଁ ରାମନାମ ଗୁଣି ଭଣି ।୫୩।

ବଧୂର କ ହୁଅନ୍ତା ସେ ମୂର୍ତ୍ତିପାପ୍ତେ ।
ବ୍ୟାଜ ଏ ମଣିରୂପେ ପ୍ରବେଶ ଗୁପ୍ତେ ।୫୪।

ବପ୍ରେ ବଧୂରଙ୍କ ପୁଣି କାଳାନ୍ତରେ ।
ବଲେ ଏବେ ସୀତାରାମ ଭାବନାରେ ।୫୫।

ବରାଜିତ ଉପଇନ୍ଦ୍ର ଭଞ୍ଜ ମନେ ।
ବରଚନା ବନ୍ଧୁରକ ସାଧୁଜନେ ।୫୬।

---

୫୩ ଓ ୫୪ ପଦ—ନୃପମଣି—ମଣିଶ୍ରେଷ୍ଠ ବା ଉତ୍କୃଷ୍ଟ ମଣି । ବଧୂର ବମୁକ୍ତ

ଅର୍ଥ—ଦଶରଥ ସ୍ନେହ ମଥାମଣିଟି ସୀତାଙ୍କୁ ପ୍ରଦାନ କରିବାରୁ କବି ଏପରି ଭାବନା କଲେ – କୌସ୍ତୁଭ ନାମକ ନୃପ ସମାଧିରେ ବସି କମ୍ପା କଚ୍ଛେନ୍ଦ୍ର ଦେଇ ରାମନାମ କୀର୍ତ୍ତନ ପୂର୍ବକ ମଣିରୂପରେ ବିଷ୍ଣୁଙ୍କର ଉରସ୍ଥ ହେଲ ସୁତରାଂ ତାହା 'କୌସ୍ତୁଭମଣି' ନାମ ଧାରଣ କଲ । ବର୍ତ୍ତମାନ ଭଗବାନ ରାମରୂପରେ ଭୂମଣ୍ଡଳରେ ଅବତୀର୍ଣ୍ଣ ହୋଇଥିବାର ଦେଖି ତାଙ୍କଠାରୁ ବମୁକ୍ତ ନ ହେବା ମାନସରେ ସେ ମସ୍ତକମଣି ବ୍ୟାଜରେ ସୀତାଙ୍କଠାରେ ପ୍ରବିଷ୍ଟ ହେଲ କ ?

୫୫ ପଦ—ଅର୍ଥ—ସେହ ମଣି ସମୟାନ୍ତରେ ରାମଚନ୍ଦ୍ରଙ୍କ ବକ୍ଷସ୍ଥଳରେ ବିହାର କରିବ ଏଥୋଗ ନୀତ ଲଙ୍କାରୁ ତାହା ହନୁମାନ ହସ୍ତରେ ସଙ୍କେତ ସ୍ୱରୂପ, ଦେଲେ, ରାମ ତାହାକୁ ହୃଦୟରେ ଧାରଣ କରିବେ, ଏହା ଭାବି ବର୍ତ୍ତମାନ ସେ ରାମଚନ୍ଦ୍ରଙ୍କ ଗୃହ୍ନ ସୀତାଙ୍କଠାରେ ଅଧିକ ସ୍ନେହ ପ୍ରକାଶ ପୂର୍ବକ ହେଲ ।

୫୬ ପଦ—ଅର୍ଥ ସେହ ମଥାମଣି ସମ୍ବନ୍ଧରେ ଭଞ୍ଜ କବିଙ୍କ ମନରେ ଏପରି ଭାବ ପ୍ରକାଶ ହେବାରୁ ସେ ଯାହା ରଚନା କଲେ, ହେ ପଣ୍ଡିତମାନେ ! ତାହା ଯୁକ୍ତଯୁକ୍ତ ହେଲ କ ନାହିଁ ବିଚାର କରନ୍ତୁ ।

ବିଭୂଷିତ କରୁ ଶିରେ ଶିକୃକା'ସୀ ।
ବିବିଧରେ ଉତ୍‌ପ୍ରେକ୍ଷାକୁ ଜାତକରି ।୫୭।

ବିମଳନ ମାଳୋପୃକ ଦର୍ଶେ ଜଳ ।
ବିପୃଣ କ ପଡ଼ିବାରେ ଛଳଛଳ ।୫୮।

ବୃଷା–ମାଳମଣି ବୃନ୍ଦ ପ୍ରଭା ଗ୍ରେର ।
ବକ୍ରଠାରୁ କରି କବା କୋଳେ ଧରି ।୫୯।

ବିକ୍ରୁଳିତ କାଳୀମଣି କାଳନ୍ଦୀରେ ।
ବାଚି କୁଞ୍ଚିତେ କବା ଚାଞ୍ଚଲ୍ୟ ଧରେ ।୬୦।

---

୫୭ ପଦ—ଅର୍ଥ ପୁନଶ୍ଚ ବୈଣକ ଶଣୀମାନେ ସେହି ମସ୍ତକମଣିକୁ ସୀତାଙ୍କ ଶିରରେ ଭୂଷିତ କରିବା ସମୟରେ ନାନାପ୍ରକାର ଉତ୍‌ପ୍ରେକ୍ଷା ଜାତହେଲ ।

୫୮ଶ ପଦ – ଜଳବିପୃଣ – ଜଳିବିନ୍ଦୁ ।

ଅର୍ଥ – ସୀତାଙ୍କର ମସ୍ତକରେ ସେହି ମସ୍ତକମଣି ହଲୁଥିବାର ଦେଖି ବୋଧହେଲା, ପ୍ରସ୍ଫୁଟିତ ନୀଳପଦ୍ମ ପାଖୁଡ଼ାରେ ନିର୍ମଳ ଜଳବିନ୍ଦୁ ପଡ଼ି ଛଳ ଛଳ ହେଉଅଛି କି ? (କ ଲ୍ଷଣ ଜଳବିନ୍ଦୁ ଶୂନ୍ୟ । )

୫୯ ପଦ—ବୃଷାମାଳମଣିବୃନ୍ଦ—ଇନ୍ଦ୍ରନୀଳମଣି ସମୂହ । ବକ୍ରଠାରୁ —ହୀରାଠରୁ ।

ଅର୍ଥ—ପୁନଶ୍ଚ ସେହି ମସ୍ତକମଣିର ଶୋଭା ଦେଖି ମନେ ହେଲା, ଇନ୍ଦ୍ର–ନୀଳମଣି ସମୂହ ହୀରାଠାରୁ ପ୍ରଭା ଗ୍ରହଣ କରି କୋଳରେ ଧାରଣ କରି ଅଛନ୍ତି କି ?

୬୦ ପଦ—ଅର୍ଥ—କୁଞ୍ଚିତ କେଶ ଉପରେ ସେହି ମଣି ଦୋହଲୁଥିବାର ଦେଖି ବୋଧହେଲା, ଯମୁନାର ତରଙ୍ଗରେ ପ୍ରକ୍ଷୁଳିତ କାଳୀୟ ସର୍ପର ମସ୍ତକ-ମଣି ଝଲୁଅଛି କି ?

ଉଦିତ ଯେ ସନ୍ଧ୍ୟାକାଳେ ହେଲ ଘର ।
ବହ୍ନାସ୍ତବେ ଏକ କାବ୍ୟ ଉଦର୍ଯ୍ୟଚାର ।୭୧।
ବାରିବାହ ଭେଦ ଇନ୍ଦୁ ହେଲେ ଉର୍କି ।
ତାହାଙ୍କ ହେଉଥିଲେ କାରଣ କି ।୭୨।
ତାଙ୍କ ଅଶେଷ ଶୋଭା କହିବାପାଇଁ ।
କାର୍ତ୍ତିକେୟ ହୋଇ ପ୍ରଭା ଯଶ ଯାଇ ।୭୩।
ବଧୂତନଙ୍କି ଯେ ସିଂହାସନ ଦେଲେ ।
ହୃଦୋତ୍ସବେ ଅମୂଲ୍ୟ ରତନ ତନ ।୭୪।

---

୭୧ ପଦ  ବହ୍ନାସ୍ତବ  ଅଗ୍ନାଶ । କାବ୍ୟ  ଶୁକ୍ରଚାର ।

ଅର୍ଥ—ଆଉ ମଧ୍ୟ ସନ୍ଧ୍ୟାକାଶରେ ଉଜ୍ଜ୍ୱଳ କାବ୍ୟଚାର ଉଦିତ ହେବା ଘର ବୋଧ ହେଲା ।

୭୨ ପଦ—ବାରିବାହ—ମେଘ । ଇନ୍ଦୁ—ଚନ୍ଦ୍ର ।

ଅର୍ଥ—ଅଥବା ଦେଖ-ମେଘକୁ ଭେଦକରି ସଜୀରୂପ ଚନ୍ଦ୍ର ଉଦିତ ହୋଇଅଛି, ପୁନଶ୍ଚ ତାହାର କାରଣ କେଉଁ ସ୍ଥଳରେ ପ୍ରକାଶିତ ହେଉଅଛି କି ?

୭୩ ପଦ—ଅର୍ଥ  ଦେବ ସ୍ୱୟଂବଣିର କୋଦଣ୍ଡପଣ୍ଡ ବୃନ୍ଦର ବିସ୍ତୃତ ହୋଇଥିବାର ଦେଖି ମନେ ହେଲ, ସୀତାଙ୍କର ଅଶେଷ ଶୋଭା ଲେଶକୁ କହିବାପାଇଁ ସେ ଶ୍ରୀମୁ ଦୂତକୁ-ଦୂର କରି ପ୍ରେରଣ କରୁଅଛୁ କି ?

୭୪ ପଦ—ଅର୍ଥ—ଦଶରଥ ଅବର ବଧୂମାନଙ୍କୁ ସ୍ନୀତେ ଦେଖିଲେ, ସେମାନଙ୍କୁ କନ୍ୟାଙ୍କ ଅମୂଲ୍ୟ ରତ୍ନ ପୁରସ୍କାର ସ୍ୱରୂପ ଦେଲେ । ତାଙ୍କ ସେମାନେ ସ୍ନୀତେ ଥିବାର ପ୍ରକାଶିତ ହେଲା ।

ବିଲମ୍ବାଇଲେ ବାମା କାହାର ହୃଦେ ।
ବିନ୍ଧ୍ୟଗିରି ପାଶେ କି ଅଗସ୍ତ୍ୟ ଉଦେ ।୭୫।
ବାନ୍ଧି ମଣିବନ୍ଧରେ କାହାରି ଆଳୀ ।
ବନରୁହ ନାଡ଼ମୂଳେ କିବା ଅଳି ।୭୬।
ବିଭୂଷଣ କଲେ କାହା କଣ୍ଠ ଶୋଭା ।
ବୋଲି ପାନରୁ ଫୁଟି ଦିଶିଲା ପ୍ରଭା ।୭୭।

---

୭୫ ପଦ—ଅର୍ଥ—ସେହି କୋଟି ରତ୍ନ ମଧ୍ୟରୁ ସଖୀମାନେ ଗୋଟିଏ ରତ୍ନକୁ କୌଣସି କନ୍ୟାର ଗଳାରେ ଲମ୍ବାଇ ଦେଲେ । ତାହା ସ୍ତନପାଖରେ ପଡ଼ି ପରମ ଶୋଭା ଧାରଣ କଲା । ସେହି ଶୋଭା ଦେଖି ବୋଧ ହେଲା, ଅଗସ୍ତ୍ୟନକ୍ଷତ୍ର ବିନ୍ଧ୍ୟପର୍ବତ ସମୀପରେ ଉଦିତ ହୋଇଅଛି କି ? ଅଗସ୍ତ୍ୟ ନକ୍ଷତ୍ରର ଜ୍ୟୋତି ରକ୍ତବର୍ଣ୍ଣ । ଅତଏବ ତାହା ସହିତ ମଣିର ଜ୍ୟୋତିକୁ ତୁଳନା କରାଯାଇ ଥିବାରୁ ସେହି ମଣିଟି 'ପଦ୍ମରାଗ ମଣି' ବୋଲି ପ୍ରତୀତ ହେଉଅଛି ।

୭୬ ପଦ—ମଣିବନ୍ଧ—ହାତଟିର ଊର୍ଦ୍ଧ୍ୱ, ଯେଉଁଠାରେ କଙ୍କଣ ଦିଆଯାଏ । ବନରୁହନାଡ଼—ପଦ୍ମନାଡ଼ । ଅଳି—ଭ୍ରମର ।

ଅର୍ଥ—ଅବଶିଷ୍ଟ ଦୁଇଟି ମଣି ମଧ୍ୟରୁ ଗୋଟିଏ ସଖୀ କେଉଁ କନ୍ୟାର ମଣିବନ୍ଧରେ ଖଞ୍ଜିବାର ଦେଖି ବୋଧହେବ, ପଦ୍ମନାଡ଼ ମୂଳରେ ଭ୍ରମର ବସିଅଛି କି ? ଭ୍ରମର ବର୍ଣ୍ଣ ନୀଳବର୍ଣ୍ଣ । ଅତଏବ ତାହା ସହିତ ଉକ୍ତ ମଣିକୁ ତୁଳନା କରାଯାଇ ଥିବାରୁ ତାହା 'ନୀଳକାନ୍ତ ମଣି' ଅଟେ ।

୭୭ ପଦ—ଅର୍ଥ—ଦଶରଥ ପ୍ରଦତ୍ତ ଶେଷ ରତ୍ନଟିକୁ ସଖୀମାନେ ଅପର କନ୍ୟାର କଣ୍ଠରେ ଖଞ୍ଜି ଦେଲେ । ତାହା ଦେଖି ପାନ ବୋଲ କଣ୍ଠତଟରେ ଫୁଟି ଦିଶିଲାପରି ବୋଧହେଲା । ସେହି ମଣିଟିକୁ ପାନ ବୋଲ ସହିତ ତୁଳନା କରାଯିବାରୁ ଓ କନ୍ୟାର କଣ୍ଠଦେଶ ମଣ୍ଡନ କରିବାରୁ ତାହା 'ପ୍ରବାଳ' ବୋଲି ସ୍ପଷ୍ଟ ପ୍ରତୀତ ହେଉଅଛି ।

ବାହୁଡ଼ାଇଲେ କନ୍ୟା ସୈରନ୍ଧ୍ରୀ ବୃନ୍ଦ ।
ବୋଧଗଲା ଚକୋର ଦ୍ୱିଷାପ୍ସା ଚନ୍ଦ ।୬୮।
ଉଲ୍ଲକ୍ଷିତ ଏହା ଲକ୍ଷ୍ୟ ଦରଶନେ ।
ବିଦ୍ୟୁ ଫେଙ୍କିବା କାନ୍ତି ପରସନ୍ନେ ।୬୯।
ବହି ଇକାରଂ ନିଜ ନାମରେ କହି ।
ବଶିଷ୍ଠ ଯେ ସବ କନ୍ୟା ଗଣେ ଏହି ।୭୦।

---

୬୮ ପଦ—ସୈରନ୍ଧ୍ରୀବୃନ୍ଦ—ବେଶକାରିଣୀମାନେ ।

ଅର୍ଥ—ରତ୍ନ ଭୂଷିତ ଚଳ ପରେ ବେଶକାରିଣୀସମୂହ କନ୍ୟାମାନଙ୍କୁ ଅନ୍ତଃପୁରକୁ ବାହୁଡ଼ାଇ ନେଲେ । ଦ୍ୱିଷାପ୍ସାଚନ୍ଦ୍ର ଅଳ୍ପ ସମୟ ଚକୋର ପକ୍ଷୀର ତୃପ୍ତି ସାଧନ ପୂର୍ବକ ଅସ୍ତ ହୋଇଗଲା ପରି ଏ କନ୍ୟାମାନେ ଅଳ୍ପ ସମୟ ଦର୍ଶକ ନେତ୍ର-ଚକୋରଙ୍କୁ ତୃପ୍ତି ସାଧନ କରି ପ୍ରସ୍ଥାନ କଲେ ।

୬୯ ପଦ—ଅର୍ଥ—ସେହି କନ୍ୟାମାନଙ୍କୁ ଦେଖି ଚକ୍ଷୁ ଚକୋର ଲକ୍ଷ୍ୟ ଉନ୍ମିଳିତ ହେଲା । ପୁଣି ଯେପରି ବିଦ୍ୟୁତ୍ ଖୁବ୍ ଅଳ୍ପସମୟ ଆକାଶରେ ସ୍ୱୀୟ ଜ୍ୟୋତି ପ୍ରକାଶ କରି ଅନ୍ତର୍ହିତ ହୋଇଯାଏ, ସେହିପରି ଏମାନେ କ୍ଷଣକାଳ ସ୍ୱ ସ୍ୱ ଶ୍ରୀ ପ୍ରଦର୍ଶନ କରି ଅନ୍ତର୍ହିତ ହୋଇଗଲେ । ( କନ୍ୟାଗଣ ବିଦ୍ୟୁତ୍ ଗୌର ସୁତରାଂ ତଦ୍ୱାରା ସେମାନଙ୍କର ତୁଳନା ଯୁକ୍ତିଯୁକ୍ତ ହୋଇଅଛି । )

୭୦ ପଦ—ସେହି ସମସ୍ତଙ୍କୁ ବଶିଷ୍ଠ ନିଜ ନାମରେ 'ଇ'କାର ଯୋଗ କରି ବଶିଷ୍ଠି—ଅର୍ଥାତ୍ ସୁନ୍ଦରୀମାନଙ୍କ ମଧ୍ୟରେ ଏମାନେ ପ୍ରଧାନ ବୋଲି କହିଲେ ।

ବାମଦେବ ଯେ ସଫଳ ହେଲା ବୋଲେ ।
ବାମଦେବ ଯା ନିନେଇ ବନ୍ଧିଥିଲେ ।୭୧।
ବିଚକ୍ଷଣଙ୍କ ମନ ହୋଇଲା ତୋଷ ।
ବାର ଅଧିକ ନିବଂଶ ପଦେ ଶେଷ ।୭୨।

---

୭୧ ପଦ—ଅର୍ଥ—ବାମଦେବ ଋଷି କହିଲେ, ମହାଦେବଙ୍କର ନିନେଇ ଧାରଣ ସାର୍ଥକ ହୋଇଅଛି । କାରଣ ସେ ନିନେଇରେ ସମସ୍ତଙ୍କ ଅପେକ୍ଷା ବିଶେଷ କରି ଏମାନଙ୍କର ଶୋଭା ଦେଖି ପାରିବେ ।

୭୨ ପଦ—ଅର୍ଥ—ସେହି କନ୍ୟାମାନଙ୍କୁ ଦେଖି ପଣ୍ଡିତମାନଙ୍କର ମନ ତୁଷ୍ଟ ହେଲା । ଉକ୍ତ କବି ଏହି ପ୍ରକାର ବାର ଅଧିକ ବିଂଶ ଅର୍ଥାତ୍ ବତିଶ ପଦରେ ଏ ଛାନ୍ଦଟିକୁ ଶେଷ କଲେ ।

———

ମୁଦ୍ରାକର—ଶ୍ରୀ ରତନ ନାଥ କର, ମାଳଚଣ୍ଡି ପ୍ରେସ—କଟକ-୨
୧୯୬୮

# ପ୍ରକାଶକଙ୍କ ନିବେଦନ

ଏଥିପୂର୍ବରୁ ଯେଉଁ ବୈଦେହୀଶବିଳାସ ପ୍ରକାଶିତ ହୋଇଅଛି ତଦ୍ଦ୍ୱାରା ସାଧାରଣଙ୍କର ଅଶେଷ ଉପକାର ହେଉଥିଲା କିନ୍ତୁ ତହିଁରୁ ଉତ୍କୃଷ୍ଟ ଜଣେ ସୁଲେଖକ, ପଣ୍ଡିତ ଓ ଅର୍ଥଜ୍ଞଙ୍କ ପାଣ୍ଡୁଲିପି ଦୈବଯୋଗେ ଆମ୍ଭମାନଙ୍କ ହସ୍ତଗତହେବାରୁ ଆମ୍ଭେ ସେହି ପୁସ୍ତକର କେତେକ ଅଂଶ ଦେଖି ପ୍ରକାଶ କରିବାର ନିଶ୍ଚୟ କଲୁ ପରେ ଏହି ପ୍ରଥମଭାଗ ଖଣ୍ଡିକ ଆଦ୍ୟପ୍ରାନ୍ତ ସଂଶୋଧନ କରି ଓ ଅନେକ ପରିଶ୍ରମ ସହକାରେ ଅବୋଧ ସ୍ଥାନମାନଙ୍କରେ ଯେତେଦୂର ସମ୍ଭବ ସରଳାର୍ଥ ଦେଇ ପ୍ରକାଶକଲୁଁ । ଗ୍ରାହକମାନେ ଏହି ଭାଗକୁ ପଢ଼ି ଯେବେ କାହାର କିଛି ପ୍ରସ୍ତାବ କରିବାର ଥାଏ ଅନୁଗ୍ରହପୂର୍ବକ ଜଣାଇଦେଲେ ଆମ୍ଭେ ତହିଁ ପ୍ରତି ବିଚାର କରି କାର୍ଯ୍ୟ କରିବୁଁ ।

୧।୧୨।୧୮୭୭

ପ୍ରକାଶଥାଉକି ଏହାର ପ୍ରଥମ ଓ ଦ୍ୱିତୀୟ ସଂସ୍କରଣ ଛପା ହୋଇଥିଲା ବର୍ତ୍ତମାନ ଜନସାଧାରଣରେ ଆଦର ହେବା ଦେଖି ତୃତୀୟସଂସ୍କରଣ ପ୍ରକାଶ କଲୁଁ । ଇତି ।

କଟକ — ପ୍ରକାଶକ

ତା ୨।୧।୧୮୭୮

## କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ
## ଅନ୍ୟାନ୍ୟ ପୁସ୍ତକାବଳୀ

| | |
|---|---|
| ବୈଦେହୀଶବିଳାସ (ସମ୍ପୂର୍ଣ୍ଣ ଅର୍ଥ ସହ) ସେଟ୍ | ଟ ୧୨୧ |
| ଲାବଣ୍ୟବତୀ | ଟ ୪୧ |
| କୋଟିବ୍ରହ୍ମାଣ୍ଡସୁନ୍ଦରୀ | ଟ ୬୧ |
| ପ୍ରେମ ସୁଧାନିଧି | ଟ ୧.୧୫ |
| ରସିକ ହାରାବଳୀ | ଟ ୧.୦୦ |
| ରସଲେଖା | ଟ ୧ ୭୭ |
| କଳା କଉତୁକ | ଟ ୦.୭୫ |
| ଯମକରାଜ ଚଉତିଶା | ଟ ୧.୨୫ |
| ସୁବର୍ଣ୍ଣରେଖା | ଟ ୧.୨୫ |
| ଚିତ୍ରକାବ୍ୟ ବନ୍ଧୋଦୟ | ଟ ୪.୦୦ |
| ଅବନା ରସତରଙ୍ଗ | ଟ ୧.୫୦ |
| ଛାନ୍ଦ ଭୂଷଣ | ଟ ୧.୦୦ |
| ସୁଭଦ୍ରା ପରିଣୟ | ଟ ୧.୨୫ |
| ରସପଞ୍ଚକ | ଟ ୧.୭୫ |
| ବଜାରବୋଲି | ଟ ୦.୨୫ |
| ଷଣଚପଇ | ଟ ୧.୨୫ |

---

ପ୍ରାପ୍ତିସ୍ଥାନ
**ଓଡ଼ିଶା ଜଗନ୍ନାଥ କମ୍ପାନୀ**
ବାଲୁବଜାର, କଟକ-୨

# ନିମ୍ନଲିଖିତ ବହି ସୁବିଧା ଦରରେ ମିଳେ, ଶୀଘ୍ର କିଣନ୍ତୁ
## ଅରୁଣୋଦୟ ପ୍ରେସର ଖଡ଼ିରତ୍ନ ଓ ସାମନ୍ତ ପଞ୍ଜିକା ପାଇବେ

### ଉପନ୍ୟାସ

| | |
|---|---|
| ଲଭଲି ଲେଡ଼ି | ୩.୦୦ |
| ବାସର ଶେଯ | ୩.୦୦ |
| ଦେହ ଓ ଦାହ | ୫.୦୦ |
| ଶେଷ ପରଶ | ୨.୦୦ |
| ମାନସୀର ଶେଷ ଅଶ୍ରୁ | ୨.୦୦ |
| ଅଭିମାନ | ୧.୭୫ |
| ପ୍ରୀତିର ପୂଜାରିଣୀ | ୨.୦୦ |
| ନହୁଲି ଝିଅର ପହିଲି ଆଶା | ୨.୦୦ |
| ପାଷାଣ ଦେବତା | ୨.୫୦ |
| ଘୁଂଲଗର | ୨.୦୦ |
| ବନ କେତକୀ | ୨.୦୦ |
| ପତି ପରମ ଗୁରୁ | ୧.୭୫ |
| ଚୁମ୍ବନ ପିଆସି ପ୍ରିୟା | ୧.୫୦ |
| ମଧୁରାତି | ୧.୭୫ |
| ଅଙ୍ଗେ ଅଙ୍ଗେ ରଙ୍ଗ ଲାଗେ | ୨.୫୦ |

### ଡ଼ିଟେକ୍‌ଟିଭ

| | |
|---|---|
| ରଙ୍ଗ କୋଠିର ରହସ୍ୟ | ୧.୫୦ |
| ଡ଼କ୍ଟର ଏକ୍ସ | ୨.୦୦ |
| ଦସ୍ୟୁ ମାନସିଂହ | ୨.୦୦ |
| ମୌନି ପାହାଡ଼ର ବିଭୀଷିକା | ୧.୫୦ |
| ହାଇଦ୍ରାବାଦର ଷଡ଼ଯନ୍ତ୍ର | ୧.୨୫ |
| ମୃତ୍ୟୁ ଦୂତ | ୧.୭୫ |
| ସୁନ୍ଦରବନର ଦସ୍ୟୁ | ୧.୫୦ |
| ବ୍ଲଡ଼୍ ଆକ୍ଟର | ୨.୦୦ |
| ଦାନବୀ ମିସ୍ ମାଲ | ୨.୦୦ |
| ପାଷାଣ ପୁରୀର ପଥ | ୧.୭୫ |
| ଭଗ୍ନସ୍ତୂପର ଗୁପ୍ତକଥା | ୩.୦୦ |
| ରକ୍ତଲୋଭି ନିଶାଚର | ୧.୫୦ |
| ଦିଆସୀ ବାବା | ୨.୫୦ |
| ବହୁରୂପୀ | ୧.୫୦ |
| ବହ୍ନି ବଳୟ | ୨.୦୦ |

### ନାଟକ

| | |
|---|---|
| ଚଉଠି ରାତି | ୨.୦୦ |
| ତିମିର ବନ୍ୟା (ଡ଼ିଟେକଟିଭ) | ୩.୦୦ |
| ଦାନବୀର ହରିଶ୍ଚନ୍ଦ୍ର | ୨.୫୦ |
| ବୀର ଅଭିମନ୍ୟୁ | ୨.୫୦ |
| ଭୀଷ୍ମାର୍ଜ୍ଜୁନ | ୨.୫୦ |
| କର୍ଣ୍ଣାର୍ଜ୍ଜୁନ | ୨.୫୦ |

### ଅନ୍ୟାନ୍ୟ

| | |
|---|---|
| ଅଷ୍ଟାଦଶ ପୁରାଣ ସେଟ୍ | ୮୦.୦୦ |
| ଭାଗବତ (ରାଜକିଶୋର) | ୨୨.୫୦ |
| ବିବାହ ରହସ୍ୟ (ଯୌନ) | ୨.୫୦ |
| ଷୋଡ଼ଶ କୁମାର | ୨.୦୦ |
| ଷୋଡ଼ଶ କୁମାରୀ | ୨.୫୦ |
| ଗୋପାଳ କୃଷ୍ଣ ପଦ୍ୟାବଳୀ | ୫.୦୦ |
| ଲାବଣ୍ୟବତୀ | ୫.୦୦ |
| କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ | ୬.୦୦ |
| ପଣ୍ଡିତ ସର୍ବସ୍ୱ | ୧୨.୦୦ |
| ଶ୍ରୀଶ୍ରୀଚୈତନ୍ୟଚରିତାମୃତ | ୧୫.୦୦ |
| ନବଗ୍ରହ ଦଶା ଫଳ (ସେଟ୍) | ୫.୫୦ |
| ମରୁତୀର୍ଥ ହିଂଲାଜ (ଭ୍ରମଣ) | ୬.୫୦ |

**ଓଡ଼ିଶା ଜଗନ୍ନାଥ କମ୍ପାନୀ · ବାଲୁବଜାର - କଟକ-୨**

ପ୍ରଚ୍ଛଦପଟ ମୁଦ୍ରଣ : ମନମୋହନ ପ୍ରେସ କଟକ-୨